ଓଁ ନମୋ ଭଗବତେ ବାସୁଦେବାୟ



ବ୍ୟାସଶାସ୍ତ୍ରୋପବନତଃ ସୁମନାଂସି ବିଚିନ୍ୱିତା ।
କୃତା ବୈଂ ପ୍ରଭୁଦତ୍ତେନ ମାଲା 'ଭଗବତୀ କଥା' ॥

॥ ଶ୍ରୀ ହରି ॥

# ଭାଗବତ କଥା

## ଏକପଞ୍ଚାଶତ୍ ଖଣ୍ଡ

ଲେଖକ :
ପୂଜ୍ୟପାଦ ପ୍ରଭୁଦତ୍ତ ବ୍ରହ୍ମଚାରୀ

ଅନୁବାଦ ଓ ସମ୍ପାଦନା :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର

ପ୍ରକାଶକ :
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

# ଭାଗବତ କଥା

ପ୍ରକାଶକ :
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍
ବାଲୁବଜାର, କଟକ - ୭୫୩ ୦୦୨

ପ୍ରକାଶନ ଉପଦେଷ୍ଟା :
ନୃସିଂହ ପ୍ରସାଦ ମିଶ୍ର

ପ୍ରଥମ ସଂସ୍କରଣ : ୧୯୯୫

ମୁଦ୍ରଣ : ପ୍ରିଣ୍ଟୋଗ୍ରାଫିକ୍ସ

ଅକ୍ଷର : ଏସ୍. ବି. ଆଇ. ଏସ୍. ସି. ଏସ୍., କଟକ

ମୂଲ୍ୟ : ଟ.୩୦/- ମାତ୍ର

# BHAGABATA KATHA

**Publisher :**
Cuttack Students' Store
Balubazar, Cuttack - 753 002

**Publication Advisor :**
SRI N. P. MISHRA

1st Edition : 1995

**Printing :** Printographics

**Computer Support :** S.B.I.S.A.C.S., Cuttack - 2

Price : Rs. 30/- only



ଭାଗବତ କଥାର ପ୍ରକାଶକ ସ୍ୱର୍ଗତଃ ଅନନ୍ତ ମିଶ୍ର

# ସୂଚୀ

# ମୁନିମାନଙ୍କର ଶ୍ରୀକୃଷ୍ଣ ଦର୍ଶନ

**ଇତି ସମ୍ଭାଷମାଣାସୁ ସ୍ତ୍ରୀଭିଃ ସ୍ତ୍ରୀଷୁ ନୃଭିର୍ନୃଷୁ ।**
**ଆୟୟୁର୍ମୁନୟସ୍ତତ୍ର କୃଷ୍ଣରାମାଦିଦୃକ୍ଷୟା ।।☆**

(ଶ୍ରୀ ଭା. ୧୦ମ ସ୍କ. ୮୪ ଅ. ୨ୟ ଶ୍ଳୋ

ଏଠାକୁ
ତ ଭଗବାନ
କୃଷ୍ଣଙ୍କୁ ଏକାଠି
ଭଗବାନଙ୍କର
ର ସ୍ୱଷ୍ପ

**ଛପ୍ପୟ**

*ଇତ ବାହାର ହରି ଦରଶ ହେତୁ ମୁନିବର ବହୁ ଆୟେ ।*
*କରି ସ୍ୱାଗତ ସତକାର କନକ ଆସନନି ବିଠାୟେ ।।*
*ପୁନି ପୁନି କରୀ ପ୍ରନାମ ଜୋରି କର ବୋଲେ ଶ୍ରୀହରି ।*
*ଆଜ ଧନ୍ୟ ହମ ଭୟେ ଦୟେ ଶୁଭ ଦରଶ ଦୟା କରି ।।*
*ଜପ, ତପ, ତୀରଥ, ବ୍ରତ ସତତ, ସେବନ ତେଂ ପାବନ କରେଂ ।*
*କିନ୍ତୁ ସଂତ ଦରଶନ ନିହୀ, ତେଂ ସବ ଦୁଖ ଦାରିଦ ଟରେଂ ।।*

ଶରୀରରେ ସୁଗନ୍ଧିତ ତେଲ, ଅତର ଅଥବା ସୁବାସିତ ପୁଷ୍ପମାଳ ଲଗାଇ କେହି ବାହାରିଲେ, ସେ ଯେଉଁ ଯେଉଁ ଆଡ଼େ ଯାଉଥାଏ ସେହି ସେହି ଆଡ଼େ ସେଇ ସୁଗନ୍ଧର ମହକ ଚହଟୁଥାଏ । କେହି ଯଦି କଡ଼ା ବାସନାଯୁକ୍ତ, ଦୁର୍ଗନ୍ଧଯୁକ୍ତ କିଛି ଲଗାଇ ବାହାରେ, ତେବେ ତା ଆଖ ପାଖକୁ ଦୁର୍ଗନ୍ଧଯୁକ୍ତ କରିଦିଏ । ଏହା ହେଉଛି ବାହାରେ ସୁଗନ୍ଧ ବା ଦୁର୍ଗନ୍ଧ ଲଗାଇବାର ପ୍ରଭାବ । ଏଇ କଥା ଭିତରେ, ଉଦରରେ ବି ପ୍ରଯୋଜ୍ୟ ହୋଇଥାଏ । ଯାହାଙ୍କର ଉଦରରେ ଦୁର୍ଗନ୍ଧଯୁକ୍ତ ମଳ ପୂର୍ଣ୍ଣ ହୋଇ ରହିଥାଏ, ସେମାନଙ୍କର ଅପାନ ବାୟୁ ଅତି ଦୁର୍ଗନ୍ଧପୂର୍ଣ୍ଣ ହୋଇଥାଏ । ଆଖ-ପାଖର ଲୋକଙ୍କ ଚିତ୍ତକୁ ବିରକ୍ତ, ଉଦ୍‌ଭ୍ରାନ୍ତ କରିଦିଏ । ଭାବ ଓ ଚିନ୍ତା ବା ବିଚାର ସମ୍ବନ୍ଧରେ ବି ଠିକ୍ ଏହିପରି ଦଶା ହୋଇଥାଏ । ଯିଏ ସବୁବେଳେ ରାଗ, ଦ୍ୱେଷ,

---

☆ ଶୁଣ ସୁମନେ ଶୁଦ୍ଧଚେତା । କୃଷ୍ଣ ମଙ୍ଗଳ ଗୁଣଗାଥା ।।
କୃଷ୍ଣର ଅଷ୍ଟପାଟରାଣୀ । ତାହାଙ୍କ ମୁଖୁଁ ବାକ୍ୟ ଶୁଣି ।।
କୁନ୍ତୀ ଗାନ୍ଧାରୀ ଯାଜ୍ଞସେନୀ । ମାଧବୀ ସୁଭଦ୍ରା କାମିନୀ ।।
ଅପରେ ରାଜପତ୍ନୀ ଯେତେ । ବ୍ରଜକାମିନୀଗଣ ସାଥେ ।।
କୃଷ୍ଣ ମହିମା ଶୁଣି କର୍ଣ୍ଣେ । ଅପରେ ଯେତେ ବଧୂଜନେ ।।
ସୁଖ ସାଗରେ ନିମଜ୍ଜିଲେ । ଏମନ୍ତେ ବିପ୍ରେ ବିଜେକଲେ ।।

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୯୦ ଅ.)

ବୈର, ହିଂସା ତଥା ପାପ କଥା ଚିନ୍ତା କରୁଥାଏ, ସେପରି ଦୁର୍ଜନ, ଅଶାନ୍ତ ପୁରୁଷ ଯେଉଁ ଆଡ଼କୁ ଯାଏ, ସମସ୍ତଙ୍କୁ ଉଦ୍‌ବେଳିତ କରିଦିଏ । ସେପରି ଲୋକକୁ ଦେଖିବା କ୍ଷଣି ଭୟ, ଉଦ୍‌ବେଗ, ଆଶଙ୍କା, ଅବିଶ୍ୱାସ ତଥା ଆହୁରି ଅନେକ ପ୍ରକାର ଭାବ ସ୍ୱତଃ ଜାତ ହୁଏ । ଏହାର ବଦଳରେ ଯିଏ ସତ୍ୟ, ଅହିଂସା, ବ୍ରହ୍ମଚର୍ଯ୍ୟ, ଶମ, ଦମ ଆଦି ସଦ୍‌ଗୁଣାବଳୀ ...ରେ ଚିନ୍ତା କରୁଥାଏ, ବିଚାର କରୁଥାଏ, ସକଳ ପ୍ରକାର ସଦ୍‌ଗୁଣର ଏକମାତ୍ର ଆଧାର ...ଙ୍କୁ ଚିନ୍ତନ କରୁଥାଏ, ସେପରି ଲୋକ ପହଞ୍ଚିଯିବା କ୍ଷଣି ମନରେ, ହୃଦୟରେ ୧. ମୂଳି...ା, ଉତ୍ସାହ, ଆଉ ଶ୍ରଦ୍ଧା ଆଦି ସଦ୍‌ଗୁଣ ଉତ୍ପନ୍ନ ହୋଇଯାଏ । କାରଣ ସନ୍ଥ- ୨ ବସ୍ତ...ଆଡ଼େ ଯାଆନ୍ତି ନିଜର ଭାବକୁ ସାଙ୍ଗରେ ନେଇ ଥାଆନ୍ତି ।

୩. ମଂ

...ଏହ ଜଗତ ହେଉଛି ଭାବମୟ । ଦ୍ୟୁତ ସ୍ଥାନକୁ ଅଥବା ବେଶ୍ୟା ଘରକୁ ଗଲେ ଆମ ମନରେ ତତ୍ତୁଲ୍ୟ ଭାବ ଉତ୍ପନ୍ନ ହୋଇଥାଏ । କାରଣ ସେପରି ସ୍ଥାନକୁ ଯେଉଁମାନେ ଯାଆନ୍ତି ସେମାନଙ୍କର ଭାବଧାରା, ବିଚାରଧାରା ସେହିପରି ହୋଇଥାଏ । ସେମାନେ ସେମାନଙ୍କର ଭାବକୁ ସାଙ୍ଗରେ ଧରି ଯାଇଥାଆନ୍ତି; ଆଉ ତା'ର ଦୁର୍ଗନ୍ଧ ବାୟୁମଣ୍ଡଳରେ ବ୍ୟାପିଯାଏ । ଅପରପକ୍ଷେ, ଆମେ ଯଦି କୌଣସି ସାଧୁ, ସନ୍ଥଙ୍କ ଆଶ୍ରମକୁ ଯିବା, ମହାପୁରୁଷମାନେ ରହୁଥିବା ସ୍ଥାନକୁ ଯିବା, ପବିତ୍ର ନଦୀତଟ, ପ୍ରାଚୀନ ତୀର୍ଥ ସ୍ଥାନକୁ ଯିବା - ଆମ ମନ, ଚିତ୍ତ, ଏକ ପ୍ରକାର ଅବ୍ୟକ୍ତ ଜ୍ଞାନ ସ୍ୱତଃ ଅନୁଭବ କରିବାରେ ଲାଗେ । ସନ୍ଥ ଯେଉଁ ସ୍ଥାନରେ ରୁହନ୍ତି ତାହା ତୀର୍ଥ ହୋଇଯାଏ । ସନ୍ଥ ଯାହାଙ୍କୁ ସ୍ପର୍ଶ କରନ୍ତି ସେ ନିଷ୍ପାପ ହୋଇଯାଏ, ସନ୍ଥ ପରଶମଣି ସଦୃଶ - ଲୁହାକୁ ସୁନା କରିଦେବା ଭଳି । ମଣିଷ ତୀର୍ଥକୁ ଦୌଡ଼େ, ବ୍ରତ ଉପବାସ କରେ, ଏ ସମସ୍ତର ଏକମାତ୍ର ଫଳ ହେଉଛି ସନ୍ଥ ଦର୍ଶନ । ଏହି ସଂସାରରୂପୀ ଭବାର୍ଣ୍ଣବରେ ଇତସ୍ତତଃ ଘାଣ୍ଟି ହୋଉ ଜୀବକୁ ଯଦି କେଉଁଠାରେ, କେତେବେଳେ ସନ୍ଥ ଦର୍ଶନ ହୋଇଯାଏ ତେବେ ତା'ର ସଂସାର-ବନ୍ଧନ ଛିଡ଼ିଯିବା ଦିନ ପାଖେଇ ଆସିଛି ବୋଲି ଜାଣିବାକୁ ହେବ । ଭବସାଗରରେ ଆଉ ଅଧିକ ଦିନ ହିନସ୍ତା ହେବାକୁ ପଡ଼େନାହିଁ । ସନ୍ଥ ଓ ଭଗବତ୍-ଭକ୍ତଙ୍କ ମଧ୍ୟରେ କିଛି ଅନ୍ତର ନାହିଁ । ରାମଙ୍କଠାରୁ ରାମଙ୍କ ଦାସ ଅଧିକ ହୋଇଥାଏ । ସେଇଥି ଯୋଗୁଁ ହିଁ ସର୍ବାନ୍ତର୍ଯ୍ୟାମୀ ଶ୍ରୀହରି ସନ୍ଥମାନଙ୍କ ମହିମା ସ୍ୱୟଂ ନିଜ ଶ୍ରୀ ମୁଖରେ ଗାନ କରିଛନ୍ତି ।

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଏଣେ ଭିତରେ ଭିତରେ କୌରବଙ୍କ ସ୍ତ୍ରୀମାନେ ଆଉ ଯାଦବଙ୍କ ସ୍ତ୍ରୀମାନେ ନିଜ ନିଜ ମଧ୍ୟରେ ତ୍ରିଲୋକକୁ ପବିତ୍ର କରୁଥିବା ଶ୍ରୀକୃଷ୍ଣଚନ୍ଦ୍ରଙ୍କ ବିଷୟରେ କଥୋପକଥନ ହେଉଥାନ୍ତି, ଆଉ ତେଣେ ପ୍ରକାଶ୍ୟରେ ଭଗବାନ୍ ପାଣ୍ଡବ ତଥା ଅନ୍ୟାନ୍ୟ ରାଜାମାନଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିବାରେ ଲାଗିଥାନ୍ତି । ଏପରି ସମୟରେ ହଠାତ୍ ଅନେକ ଦୂରରୁ ଅସଂଖ୍ୟ ମୁନିଋଷି ଆସୁଥିବା ସେ ଦେଖିବାକୁ ପାଇଲେ । କଥା

ହେଉଛି, ଅନେକ କଳ୍ପଜୀବୀ ଋଷିମାନେ ବି ଗ୍ରହଣ-ସ୍ନାନ ନିମନ୍ତେ ଆସିଥିଲେ । ସେମାନଙ୍କ ଭିତରୁ କେତେକ ସ୍ଥୂଳ ଦେହରେ ପାଦରେ ଚାଲି ଚାଲି ଆସିଥିଲେ, କେତେକ ଆକାଶମାର୍ଗରେ ଉଡ଼ି ଉଡ଼ି ଆସିଥିଲେ, କେତେକ ସୂକ୍ଷ୍ମ ଶରୀରରେ ସଂକଳ୍ପ ମାଧ୍ୟମରେ ପ୍ରକଟ ହୋଇଯାଇ ଥିଲେ । ମୁନିଋଷିଙ୍କ ସମାଜ ଯେତେବେଳେ ସମବେତ - ଏକତ୍ରିତ ହେଲେ, ସେତେବେଳେ ସେମାନେ ସାକ୍ଷାତ୍ ପରମାତ୍ମା ପରଂବ୍ରହ୍ମ ନରରୂପ ଧାରଣକରି ଅବତୀର୍ଣ୍ଣ ହୋଇ ଏଠାକୁ ଆସିଥିବା କଥା ଚର୍ଚ୍ଚା କରିବାରେ ଲାଗିଲେ । ପୁଣି ଭଗବାନ ଶ୍ରୀକୃଷ୍ଣଙ୍କ ସହିତ ଭଗବାନ ସଙ୍କର୍ଷଣ ବଳରାମ ବି ଆସିଥବା ଜାଣି ସମସ୍ତେ ସମବେତ ଭାବରେ ରାମ କୃଷ୍ଣଙ୍କୁ ଏକାଠି ଦର୍ଶନ କରିବା ପାଇଁ, ଦର୍ଶନକରି ଜୀବନକୁ ସାର୍ଥକ କରିବା ପାଇଁ ଇଚ୍ଛା କଲେ । **ଭଗବାନଙ୍କର ଦର୍ଶନ ହୋଇଯିବା ଅର୍ଥ ତୀର୍ଥ ଫଳ ପ୍ରାପ୍ତି ହୋଇଯିବା** - ଏପରି କଥା ଉପରେ ସୁସ୍ପଷ୍ଟ ଆଲୋଚନା କରିବାପରେ, ସକଳ ମୁନିଋଷିମାନେ ରାମ-କୃଷ୍ଣଙ୍କୁ ଦର୍ଶନ କରିବାପାଇଁ ଏକତ୍ର ବାହାରି ପଡ଼ିଲେ । ମୁନିଋଷିଙ୍କର ସଂଖ୍ୟା ଥିଲା ଅନେକ; କିନ୍ତୁ ସେମାନଙ୍କ ମଧ୍ୟରେ ପ୍ରଧାନ ପ୍ରଧାନ ହେଉଛନ୍ତି :- ଭଗବାନ ବେଦବ୍ୟାସ, ଦେବର୍ଷି ନାରଦ, ଭରଦ୍ୱାଜ, ଗୌତମ, ଭଗବାନ ପରଶୁରାମ ଓ ତାଙ୍କର ଅକୃତବ୍ରଣ ଆଦି ବହୁତ ଶିଷ୍ୟ ; ବଶିଷ୍ଠ, ବୃହସ୍ପତି, ତ୍ରିତ, ଏକତ, ସନକ, ସନନ୍ଦନ, ସନାତନ, ସନତ୍କୁମାର, ଅଙ୍ଗିରା, ଅଗସ୍ତ୍ୟ, ଯାଜ୍ଞବଲ୍କ୍ୟ, ତଥା ବାମଦେବ ।

ଯାଦବଙ୍କର ସଭା ଚାଲିଥିଲା । ସେଇ ସଭାରେ ବସୁଦେବ,ଶ୍ରୀକୃଷ୍ଣଚନ୍ଦ୍ର, ବଳରାମ, ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ, ଏବଂ ଅନେକ ରାଜା ମହାରାଜା ବିରାଜମାନ କରୁଥିଲେ । ଅପ୍ରମିତ ସଂଖ୍ୟକ ଋଷି ସେ ଆଡ଼କୁ ଆସୁଥିବା ଦେଖି ସମସ୍ତେ ନିଜ ନିଜ ଆସନ ପାଖରେ ଠିଆ ହୋଇଗଲେ । ସମସ୍ତେ ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତିର ସହିତ ମୁନିମାନଙ୍କୁ ପ୍ରଣାମ କଲେ । ସମସ୍ତେ 'ସ୍ୱାଗତମ୍ ସ୍ୱାଗତମ୍, ମୁନିମାନଙ୍କର ଜୟ ହେଉ, ମୁନିମାନଙ୍କର ଜୟ ହେଉ; ନମୋ ନମଃ, ନମୋ ନମଃ, ଇତ୍ୟାଦି ଆନ୍ତରିକ ସମ୍ବର୍ଦ୍ଧନା ସୂଚକ ଜୟ ଜୟକାର କରିବାରେ ଲାଗିଲେ । ମୁନିମାନଙ୍କୁ ଦିବ୍ୟ ସୁନ୍ଦର ଆସନରେ ବସାଇଲେ । ପାଦ୍ୟ, ଅର୍ଘ୍ୟ, ପୁଷ୍ପମାଳା, ଚନ୍ଦନ ତିଳକ, ଦୀପ, ଧୂପ ଆଦି ସାମଗ୍ରୀରେ ସେମାନଙ୍କର ପୂଜା କଲେ । ଅନ୍ୟ ସମସ୍ତଙ୍କ ସହିତ ଶ୍ରୀକୃଷ୍ଣଚନ୍ଦ୍ର ଆଉ ବଳରାମ ବି ସେହି ବିଶ୍ୱବନ୍ଦିତ ମୁନିମାନଙ୍କର ପୂଜା କଲେ ।

''ପୂଜାପର୍ବ ସାରି ରାଜାଗଣ ନିଜ ନିଜ ଆସନରେ ବସିଗଲେ । ସେମାନେ ସମସ୍ତେ ନୀରବ, ଚୁପଚାପ, ସଭାସ୍ଥଳୀରେ ଅଖଣ୍ଡ ସ୍ତବ୍ଧତା ବିରାଜମାନ କଲା । ଏପରି ସ୍ତବ୍ଧତାକୁ ଭଙ୍ଗକରି ନରନାଗର ନଟବର ଶ୍ରୀକୃଷ୍ଣଚନ୍ଦ୍ର କହିଲେ, 'ଆଜି ଦିନଟି ପରମ ସୌଭାଗ୍ୟର

ଦିବସ । ଆମେ ଆଜି କୃତାର୍ଥ ହୋଇଗଲୁ । ଆମର ମନୁଷ୍ୟ ଜନ୍ମ ଗ୍ରହଣ କରିବା ସାର୍ଥକ ହୋଇଗଲା । ଆଜି ଆମକୁ ସକଳ ପୁଣ୍ୟକର୍ମର ଫଳ ମିଳିଗଲା, ଆମେ ଆଜି ଆପଣମାନଙ୍କର, ମହାନ୍ ମହାନ୍ ଯୋଗେଶ୍ୱରଙ୍କର ଦର୍ଶନ ଲାଭ କରି ପରମ ପବିତ୍ର ହୋଇଗଲୁ । ସାଧାରଣ ପୁଣ୍ୟାର୍ଜନ କରିବା ଲୋକମାନେ ଆପଣମାନଙ୍କର ଦର୍ଶନ ଲାଭ କରିବା ଅସମ୍ଭବ । ମନୁଷ୍ୟଙ୍କ କଥା ଛାଡ଼ନ୍ତୁ, ଦେବତାମାନେ ବି ଆପଣମାନଙ୍କ ଦର୍ଶନ ଲାଭ କରିପାରନ୍ତି ନାହିଁ । ଯେଉଁମାନେ ପାପ କରିନଥାନ୍ତି, ଯେଉଁମାନେ ତପସ୍ୟା ବି କରିଛନ୍ତି; କିନ୍ତୁ ସ୍ୱଳ୍ପ କରିଛନ୍ତି, ଯେଉଁମାନେ ଭଗବାନଙ୍କୁ ସର୍ବବ୍ୟାପକ ବୋଲି ନ ଜାଣି କେବଳ ପ୍ରତିମାରେ ତାଙ୍କୁ ସୀମିତ କରି ଆରାଧନା କରୁଥାଆନ୍ତି, ପ୍ରତିମା ବ୍ୟତୀତ ସେମାନେ ଅନ୍ୟଙ୍କଠାରେ, ଚଳମୂର୍ତ୍ତିରେ ଈଶ୍ୱର ଭାବ ରଖନ୍ତି ନାହିଁ-ସେପରି ପୁରୁଷମାନେ ବି ଆପଣମାନଙ୍କର ଦର୍ଶନ ଦେଇ ପାରନ୍ତି ନାହିଁ । ସେପରି ସ୍ଥଳରେ ମଙ୍ଗଳମୟ କଥୋପକଥନ, ଚରଣସ୍ପର୍ଶ, ପ୍ରଣାମ, ପଦପୂଜନ ଆଦିର ସୌଭାଗ୍ୟ ପାଇବା ତ ଅତି ଦୁର୍ଲ୍ଲଭ କଥା । ଆମେ ସମସ୍ତେ ଗତକାଲି ଗ୍ରହଣ ସ୍ନାନ କରିଛୁ । ହେଲେ ଆଜି ହିଁ ପ୍ରକୃତରେ ସକଳ ତୀର୍ଥର ଫଳ ଲାଭ କଲୁ ।''

ଏପରି ଅପୂର୍ବ ସୁନ୍ଦର କଥା ଶୁଣି ମୁନିଋଷିମାନଙ୍କ ଗହଣରେ ଥାଇ ଦେବର୍ଷି ନାରଦ କହିଲେ, '' ତାହାହେଲେ ହେ ଭଗବାନ୍ ! ଏଇ ସବୁ ଗଙ୍ଗାଦି ତୀର୍ଥ କ'ଣ ପ୍ରକୃତ ତୀର୍ଥ ନୁହନ୍ତି ? ମାଟିର ଏଇ ଯେଉଁ ସବୁ ଶିବଲିଙ୍ଗ ଲୋକମାନେ କରନ୍ତି, ଯେଉଁ ପାଷାଣ ପ୍ରତିମା ପୂଜା କରାଯାଏ, ଏମାନେ କେହି ଫଳପ୍ରଦାନ କରନ୍ତି ନାହିଁ ?''

ଶ୍ରୀ ଭଗବାନ କହିଲେ, '' ଗଙ୍ଗାଦି ନଦୀ, ପୁଷ୍କର, କୁରୁକ୍ଷେତ୍ର ଆଦି ତୀର୍ଥ ନୁହନ୍ତି ବୋଲି କହିବା ଠିକ୍ ନୁହେଁ । ମୃଣ୍ମୟ, ପାଷାଣ, କାଷ୍ଠ ବିଗ୍ରହ ଅଥବା ଧାତବ ପ୍ରତିମାରେ ପ୍ରାଣ ପ୍ରତିଷ୍ଠାକରି ଯିଏ ଦେବବୁଦ୍ଧିରେ ପୂଜାକରନ୍ତି, ତହିଁରେ ଦେବତ୍ୱ ନାହିଁ ବୋଲି କହିବା ଠିକ୍ ନୁହେଁ । ଏ ସବୁଥିରେ ଦେବତ୍ୱ ଅଛି । ତୀର୍ଥରେ, ସ୍ନାନ ଆଦିରେ, ଦେବତାଙ୍କର ପୂଜାର୍ଚ୍ଚନାରେ କିଛି ଫଳ ମିଳେ ନାହିଁ ବୋଲି କହିବା ଠିକ୍ ନୁହେଁ । ସେବା ପୂଜାରେ ଫଳ ଅଛି; ଅବଶ୍ୟ ମିଳେ, ତୀର୍ଥାଦି ତ ଚିରକାଳ ଫଳ ପ୍ରଦାନ କରିଥାନ୍ତି । କିନ୍ତୁ **ସନ୍ଥ-ଦର୍ଶନ ଏପରି ଉତ୍କୃଷ୍ଟ ତୀର୍ଥ ଯେ, ଦର୍ଶନ ହେବାମାତ୍ରେ ଫଳ ମିଳିଯାଏ ।** ଏଥିରେ ଉଧାର ବୋଲି ପ୍ରଶ୍ନ ନାହିଁ, ଦର୍ଶନ ହେବାମାତ୍ରେ ଫଳ ମିଳେ । ଏ ହାତରେ ଦିଅ, ସେ ହାତରେ ନିଅ । **ସେଇମାନେ ସାଧୁ ଦର୍ଶନ ପାଆନ୍ତି, ଯେଉଁମାନଙ୍କ ପାପ ଖଣ୍ଡନ ହେବାର ଦିନ ପାଖେଇ ଆସିଥାଏ ।** ସୂର୍ଯ୍ୟଙ୍କ ଦର୍ଶନମାତ୍ରେ ଯେପରି ଅନ୍ଧକାର ପଳାୟନ କରେ, ଯେପରି ଅଗ୍ନିର ଉତ୍ତାପ ହେବା ସଙ୍ଗେ ସଙ୍ଗେ ଶୀତ ପଳାୟନ କରେ, ଯେପରି ଜ୍ଞାନ ଉଦିତ ହେବାକ୍ଷଣି ଅଜ୍ଞାନ ବିଦୂରିତ

ହୋଇଯାଏ,ସେହିଭଳି **ସନ୍ଥ ଦର୍ଶନ ହେବା ମାତ୍ରେ ଦେହରୁ ସମସ୍ତ ପ୍ରକାର ଦୁରିତ, ପାପ, ଦୂର ହୋଇଯାଏ ।''**

ଦେବର୍ଷି ନାରଦ ପଚାରିଲେ, '' ଭଗବାନ୍ ! ବିଳମ୍ବରେ ହେଉ ଅଥବା ତତ୍କାଳ, ଦେବତା, ତୀର୍ଥ, ଆଉ ସନ୍ଥ ସମାନ କାର୍ଯ୍ୟ ତ କରିଥାନ୍ତି ନା ?''

ଶ୍ରୀ ଭଗବାନ କହିଲେ, '' ଦେବତାମାନେ ଯେ ଉପାସକଙ୍କ ପାପ ଦୂର କରିଦିଅନ୍ତି, ସେପରି କଥା ନୁହେଁ । ଯଜ୍ଞାଦି ବିଧିହୀନ ହେଲେ ଏହାର କର୍ତ୍ତା ତତ୍କାଳ ନଷ୍ଟ ହୋଇଯାଏ । ମନ୍ତ୍ର ଉଚ୍ଚାରଣରେ ଦୋଷ ହୋଇଗଲେ ଏହା ବିପରୀତ ଫଳ ଦେଇଥାଏ ।

'' ଆମେ ଅଗ୍ନିଙ୍କୁ ପୂଜା କରୁ ଅଥବା ସୂର୍ଯ୍ୟଙ୍କୁ, ଚନ୍ଦ୍ରଙ୍କୁ, ନାରାୟଣଙ୍କୁ - ପୃଥିବୀ, ଜଳ, ଆକାଶ, ବାୟୁ, ବାଣୀ ଅଥବା ମନର ଅଧିଷ୍ଠାତୃ ଦେବତାଙ୍କୁ ଉପାସନା କରୁ - କିନ୍ତୁ ଯଦି ଉପାସକର ବୁଦ୍ଧିରେ ଭେଦଭାବ ଥାଏ - ଭଗବାନ୍‌ଙ୍କୁ ଅସୀମ ନମସ୍କାର କରି ଅନ୍ୟଙ୍କୁ ସୀମିତ ନମସ୍କାର ପୂର୍ବକ ଦ୍ୱେଷକରେ, ତେବେ ତାକୁ, ସେହି ଦେବତାଙ୍କୁ କରିଥିବା ନମସ୍କାରର ସାମନ୍ୟମାତ୍ର ଫଳ ମିଳେ ନାହିଁ । ତା'ର ପାପ ଆଦୌ ନାଶ ହୁଏ ନାହିଁ । ତା'ର ଅଜ୍ଞାନ ପୂର୍ବଭଳି ରହିଥାଏ । **ପ୍ରକୃତ ସନ୍ଥଙ୍କର, ଅଥବା ଜ୍ଞାନୀ ମହାତ୍ମାଙ୍କର ସେବା ଯଦି ମୁହୂର୍ତ୍ତକ ପାଇଁ ବି କରାଯାଏ, ତେବେ ଅଜ୍ଞାନ ପୂର୍ଣ୍ଣମାତ୍ରାରେ ନାଶ ହେବାପାଇଁ ସମର୍ଥ ହୋଇଥାଏ ।''**

ଦେବର୍ଷି ନାରଦ ପଚାରିଲେ, '' ଭଗବନ୍ ! ଅଜ୍ଞାନୀଙ୍କର ଲକ୍ଷଣ କ'ଣ ? ଜ୍ଞାନୀ, ଅଜ୍ଞାନୀ ବୋଲି ଲୋକଙ୍କୁ ଚିହ୍ନିବ କିପରି ? ଅନେକ ଲୋକ ଦେବପୂଜନ କରୁଥିବା, ତୀର୍ଥକୁ ଯାଉଥିବା ଦେଖୁଛୁ । ସେମାନେ ସତ୍‌ସଙ୍ଗ ନ କରି ସୁଦ୍ଧା ତ ଶ୍ରେଷ୍ଠ ହୋଇଯାଉଛନ୍ତି ।''

ଶ୍ରୀଭଗବାନ୍ କହିଲେ, '' ସତ୍‌ସଙ୍ଗ ବିନା କେହି ବି ଭବସାଗର ପାରିହୋଇ ପାରନ୍ତି ନାହିଁ । ଅଜ୍ଞାନୀଙ୍କୁ ସହଜରେ ଚିହ୍ନି ହୁଏ । ଯିଏ ଅନିତ୍ୟ, ଦୁଃଖମୟ, ବାତ, ପିତ୍ତ, କଫ ପରିପୂର୍ଣ୍ଣ ଶବତୁଲ୍ୟ ଏହି ଶରୀରକୁ ସର୍ବସ୍ୱ ବୋଲି ମନେକରେ, ଯାହାର ଏହି ଶରୀର ପ୍ରତି ଆତ୍ମବୁଦ୍ଧି ଥାଏ, ଏହି କ୍ଷଣଭଙ୍ଗୁର ଶରୀର ପ୍ରତି ଯାହାର ଅହଂଭାବ ଥାଏ, - ମୁଁ ବଡ଼ ବିଦ୍ୱାନ୍, ମୁଁ ଖୁବ୍ ଧନୀ, ବୋଲି ଯେ ନିଜକୁ ଭାବେ; ଜନ, ସ୍ତ୍ରୀ, ପୁତ୍ର, କୁଟୁମ୍ବଙ୍କ ପ୍ରତି ଯିଏ ଅଧିକ ମମତା ରଖିଥାଏ, ଏ ସମସ୍ତଙ୍କୁ ଅତି ପ୍ରିୟ ବୋଲି ମନେକରି ଯିଏ ଅନ୍ୟଙ୍କ ସହିତ ଦ୍ୱେଷ କରେ, ଯେଉଁମାନଙ୍କର ଏହିପରି ବ୍ୟର୍ଥ ଅଭିମାନ ଥାଏ - ଯିଏ କେବଳ ପାଷାଣ ପ୍ରତିମାରେ ଦେବବୁଦ୍ଧି ରଖିଥାଏ, - ଆଉ ଭଗବାନଙ୍କର ଚଳନ୍ତି ବିଗ୍ରହ ଯେଉଁମାନେ, ଯଥା - ସନ୍ଥ, ମହାତ୍ମା, ବୈଷ୍ଣବ, ତ୍ୟାଗୀ, ବିରାଗୀ, ମହାପୁରୁଷ ଆଦିଙ୍କ ସହିତ ଦ୍ୱେଷ ଭାବ ରଖିଥାଏ ; ସେମାନଙ୍କ ସହିତ ଅସହିଷ୍ଣୁତା ପୂର୍ଣ୍ଣ ବ୍ୟବହାର କରେ ; - ଯିଏ କେବଳ ଦୂର ସ୍ଥାନରେ ଥିବା

କୂପ, ତଡ଼ାଗ, ପୁଷ୍କରିଣୀ, ନଦୀ ଆଦିକୁ ତୀର୍ଥ ବୋଲି ମନେକରି ବିପ୍ର ପଦଦୋକ ତଥା ସାଧୁସନ୍ଥଙ୍କ ଚରଣୋଦକକୁ ତିରସ୍କାର କରେ; ଆଉ ଜ୍ଞାନୀ ବିଜ୍ଞାନୀଙ୍କୁ ହେୟଜ୍ଞାନ କରି ସେମାନଙ୍କୁ ବୋଝ ବୋହୁଥିବା ବଳଦ ବୋଲି ମନେକରେ, ଗଧ ବୋଲି ଭାବେ-ସେଇମାନେ ହିଁ ସଂସାରର ବଡ଼ ବଡ଼ ଅଜ୍ଞାନୀ ।''

'' ଏଣୁ ହେ ମୁନିଗଣ ! ଆପଣଙ୍କ ଦର୍ଶନ ମାତ୍ରକେ ଆମର ସକଳ ପ୍ରକାର ତୀର୍ଥବ୍ରତ ପୂରଣ ହୋଇଗଲା । ଆପଣମାନେ ଆପଣମାନଙ୍କର ଦେବଦୁର୍ଲ୍ଲଭ ଦର୍ଶନ ଦେଇ ଆମକୁ କୃତାର୍ଥ କରିଦେଇଛନ୍ତି । ଆମେ ଆଉ ଆମର ଅପୂର୍ବ ସୌଭାଗ୍ୟର କଥା କେଉଁ ଭାଷାରେ କହି ପାରିବୁ ।''

ମହର୍ଷି ସୂତ କହିଲେ, '' ହେ ମୁନିଗଣ ! ଭଗବାନଙ୍କର ଶ୍ରୀମୁଖରୁ ନିଜର ଏପରି ଭୂୟସୀ ପ୍ରଶଂସା ଶୁଣି ମୁନିମାନେ ଅତି ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ପ୍ରଥମେ ପ୍ରଥମେ ସେମାନେ ତ ଡରି ଯାଇଥିଲେ, ଯେ କାଳେ ସେମାନଙ୍କର ସ୍ତୁତିରେ ଭଗବାନ ଅପ୍ରସନ୍ନ ହୋଇଯାଇଥିବେ । କିନ୍ତୁ ପରବର୍ତ୍ତୀ କାଳରେ ସେମାନେ ଭଗବାନଙ୍କର ମହାନତା ଆଉ ଭଗବନ୍ତାକୁ ଚିନ୍ତା କରିବାରେ ଲାଗିଲେ । ଅନେକ ସମୟ ଚିନ୍ତା କରିବା ପରେ ସେମାନେ ସ୍ଥିର ରୂପେ ଜାଣିଗଲେ ଯେ, ଭଗବାନ ଆମକୁ ହସରେ କାହିଁକି ଉଡ଼ାଇଦେବେ, ଆମକୁ ହାସ୍ୟସ୍ପନ୍ଦିତ କରିବେ କାହିଁକି ? ଆମକୁ ତ ସେ କଦାପି ତିରସ୍କାର କରିବା ଦରକାର ବି ନାହିଁ । ତାଙ୍କର ଅଭୀଷ୍ଟ ନିଶ୍ଚିତ ରୂପେ ଆମକୁ ତିରସ୍କାର କରିବା ନୁହେଁ । ତେବେ ସେ ନିଜେ ଭଗବାନ ହୋଇ ଆମର ଏତେ ଅତ୍ୟୁକ୍ତି ପୂର୍ଣ୍ଣ ପ୍ରଶଂସା କାହିଁକି କରୁଛନ୍ତି ? ସମ୍ଭବତଃ ସେ ଲୋକସଂଗ୍ରହ ପାଇଁ ଏପରି କରୁଛନ୍ତି । ଏହି ମହାନ୍ କଥାକୁ ଭଗବଦ୍ ବାକ୍ୟ, ଭଗବଦ୍ ଆଜ୍ଞା ଜାଣି ସର୍ବସାଧାରଣ ଲୋକ ସାଧୁ ସନ୍ଥଙ୍କୁ ଆଦର କରନ୍ତୁ, ସେମାନଙ୍କଠାରେ ଭଗବଦ୍ ବୁଦ୍ଧି ବଢ଼ାନ୍ତୁ, ସେମାନଙ୍କ ପାଖକୁ ଯାଇ ଦର୍ଶନ, ପାଦ ସ୍ପର୍ଶ ପୂର୍ବକ ଶିକ୍ଷା ଗ୍ରହଣ କରନ୍ତୁ - ଏପରି ଉଦ୍ଦେଶ୍ୟ ନିଶ୍ଚୟ ହେଇଥିବ ।''

ମୁନିମାନେ ଏହିପରି ସିଦ୍ଧାନ୍ତରେ ଉପନୀତ ହୋଇ ହସି ହସି ଭଗବାନଙ୍କୁ କହିଲେ, ''ହଁ ପ୍ରଭୁ ! ଆପଣ ତ ବ୍ରାହ୍ମଣ୍ୟଦେବ ! ଆପଣ ଲୋକଶିକ୍ଷକ, ଆପଣ ଜଗଦ୍ ଗୁରୁ । ଆପଣ ଏପରି ଶିକ୍ଷା ନଦେଲେ, ଆପଣ ନିଜ ଦ୍ୱାରା ନିର୍ମିତ ମର୍ଯ୍ୟାଦାକୁ ସ୍ୱୟଂ ପାଳନ ନକଲେ, ଧର୍ମ ରକ୍ଷା କିପରି ହୋଇପାରନ୍ତା ? ସାଧାରଣ ଲୋକମାନେ କାହାଠାରୁ ଶିକ୍ଷାପ୍ରାପ୍ତ ହୁଅନ୍ତେ ? ଭଗବାନ୍ ! ଆପଣ ହେଉଛନ୍ତି ସର୍ବାତ୍ମା, ସମସ୍ତଙ୍କର ଜ୍ଞାନଦାତା, ସମସ୍ତଙ୍କର ଉତ୍ପାଦକ ଓ ସଂହାରକ । ଆପଣ ପ୍ରକୃତିର ଊର୍ଦ୍ଧ୍ୱରେ, ଆପଣ ପୁରାଣ ପୁରୁଷ, ସାଧୁମାନଙ୍କର ପରିତ୍ରାଣ ଓ ପାପୀମାନଙ୍କର ବିନାଶ ନିମନ୍ତେ ଆପଣ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଅବତାର

ଧାରଣ କରି ବିଚିତ୍ର ବିଚିତ୍ର ଲୀଳା କରିଥାନ୍ତି । ଆମେ ସମସ୍ତେ ଆପଣଙ୍କ ପଦାରବିନ୍ଦକୁ ବାରମ୍ବାର ନମସ୍କାର କରୁଛୁ । ଆପଣ ଆମ ଉପରେ କୃପା ଦୃଷ୍ଟି ରଖିଥାନ୍ତୁ । ଯେପରି ଆପଣଙ୍କ ପାଦପଦ୍ମର ଅହେତୁକୀ ଭକ୍ତି ଆମେ ପ୍ରାପ୍ତ ହେଉଥିବୁ ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଏହିଭଳି ସେହି ମୁନି ଋଷିମାନେ ଭଗବାନଙ୍କର ଅତି ସୁନ୍ଦର ତତ୍ତ୍ୱଜ୍ଞାନପୂର୍ଣ୍ଣ ସ୍ତୁତି କଲେ । ସେମାନଙ୍କର ସେହି ଦିବ୍ୟ ସ୍ତୁତି ପ୍ରସଙ୍ଗ ମୁଁ 'ସ୍ତୁତି ପ୍ରକରଣ'ରେ କରିବି ।''

ମୁନିଋଷିଙ୍କ ମୁହଁରୁ ନିଜର ଏପରି ଦିବ୍ୟ ସ୍ତୁତି ଶୁଣି ଭଗବାନ୍ ଲଜ୍ଜିତ ହୋଇଗଲେ । ମୁନିଋଷିମାନେ କୌଣସି କାମ ପାଇଁ ତ ଆସିନଥିଲେ, କେବଳ ଭଗବାନଙ୍କର ଦର୍ଶନ ଓ ସ୍ତୁତି କରିବା ପାଇଁ ସେମାନେ ଆସିଥିଲେ । ଦର୍ଶନ ହୋଇଗଲା, ସ୍ତୁତି ବି କଲେ, ସେମାନେ ଭଗବାନଙ୍କୁ ଆଉ ଅଧିକ ସଂକୋଚରେ ପକାଇବାକୁ ଉଚିତ ମନେକଲେ ନାହିଁ । ଏଣୁ ସିଂହାସନରେ ବସିଥିବା ଅନ୍ଧ ଧୃତରାଷ୍ଟ୍ରଙ୍କୁ ତଥା ଧର୍ମରାଜ ଯୁଧିଷ୍ଠିରଙ୍କୁ ସେମାନେ କହିଲେ, ''ରାଜନ୍ ! ଏଥର ଆମେ ଆମ ନିଜ ନିଜ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କରିବୁ । ଆପଣ ଆପଣଙ୍କ କୃତ୍ୟ କରନ୍ତୁ ।''

ଏହାଶୁଣି ଧର୍ମରାଜ ଯୁଧିଷ୍ଠିର କହିଲେ, '' ହେ ମହର୍ଷିଗଣ ! ଆପଣମାନଙ୍କୁ ଯିବା ପାଇଁ ମୁଁ ଅନୁମତି ଦେଇପାରିବି ? ଆପଣମାନେ ତ ସର୍ବଜ୍ଞ । ଆମ ହୃଦୟର ଭାବ ଆପଣମାନେ ବେଶ୍ ଜାଣନ୍ତି ।''

ଧର୍ମରାଜ ଯୁଧିଷ୍ଠିର ଏତିକି କହି ନୀରବ ହୋଇଗଲେ । ମୁନିଋଷିମାନେ ନିଜ ନିଜର ଦଣ୍ଡ କମଣ୍ଡଳୁ ତଳୁ ଉଠାଇବାରେ ଲାଗିଲେ; କେତେକ ତ ଯିବା ପାଇଁ ଠିଆ ବି ହୋଇ ଯାଇଥିଲେ । ମୁନିଋଷିମାନେ ଚାଲିଯିବାକୁ ବାହାରୁଛନ୍ତି ଏହି ସମୟରେ ଭଗବାନ ଶ୍ରୀକୃଷ୍ଣଙ୍କର ପିତା ତେଜସ୍ୱୀ ବସୁଦେବ ଉଠିପଡ଼ିଲେ । ସେ ମୁନିମାନଙ୍କ ସମ୍ମୁଖକୁ ଯାଇ ପ୍ରଣାମ କଲେ ଓ କିଛି ଅନୁରୋଧ କରିବା ପାଇଁ ଅନୁମତି ଭିକ୍ଷା କଲେ । ତେଜସ୍ୱୀ ବସୁଦେବଙ୍କର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେହି ମୁନିଋଷିମାନେ ପୁଣିଥରେ ବସିପଡ଼ିଲେ । ଏବେ ବସୁଦେବ ଯାହା ଯାହା ପ୍ରଶ୍ନ କଲେ, ଋଷିମାନେ ଯେପରି ଉତ୍ତର ଦେଲେ ସେ ପ୍ରସଙ୍ଗ କହୁଛି, ଶୁଣନ୍ତୁ ।''

**ଛପ୍ପୟ**

*ସୁନୀ ଶ୍ୟାମ କୀ ବିନୟ ଭୟେ ବିସ୍ମିତ ସବ ଋଷିଗନ ।*
*ସମୁଝି ଲୋକବ୍ୟବହାର କରେୟା ପୁନି ସବନେ ଥିର ମନ ॥*

*କହେଁ ଦେବ ! କରି ଦରଶ ଦୁରିତ ଦୁଖ ଟରେ ହମାରେ ।*
*ପ୍ରଭୁ ତୁମ ଅଶରନ ଶରନ ଚରନ ଲଖି ଭୟେ ସୁଖାରେ ।।*
*ହୃଦୟ କମଲ ମହଁ ଯୋଗିଜନ, କରହିଁ ଧ୍ୟାନ ଜିନକୋ ସତତ ।*
*ତିନ ପଦ ପଦୁମନି ଧ୍ୟାନ ମହଁ, ରହହିଁ ସଦା ହମ ସବ ନିରତ ।।*



# ବସୁଦେବ ଓ ମୁନିମାନଙ୍କ ପ୍ରଶ୍ନୋତ୍ତର

**ନମୋ ବଃ ସର୍ବଦେବେଭ୍ୟ ଋଷୟଃ ଶ୍ରୋତୁମର୍ହଥ ।**
**କର୍ମଣା କର୍ମ ନିର୍ହାରୋ ଯଥା ସ୍ୟାନ୍ନସ୍ତଦୁଚ୍ୟତାମ୍ ।।☆**

(ଶ୍ରୀ ଭା. ୧୦. ସ୍କ. ୮୪ ଅ. ୨୯ ଶ୍ଳୋକ)

### ଛପ୍ପୟ

*ୟୋଂ କରି ବହୁ ବିଧି ବିନୟ ଚଲନ ଲାଗେ ଋଷି ମୁନି ଜବ ।*
*ତୁରତ ଜାଇ ବସୁଦେବ ଚରନ ସିର ଧରି ବୋଲେ ତବ ।।*
*କରମ ବନ୍ଧ କେ ହେତୁ କରମ ବିନୁ ନହୀଂ ନ ସାବେଂ ।*
*କୌନ କରମ କରି ହୋହି ମୁକ୍ତି ସୋ ଯୁକ୍ତି ବତାବେଂ ।।*
*ମୁନି ହଂସି ବୋଲେ କୃଷପିତୁ, ହ୍ୱେଁକେଁ ହୂ ଶଂକା କରେଂ ।*
*ବସହିଂ ଗଙ୍ଗ କେ ନିକଟ ନର, ପୟ ନ ପିୟେଂ ପ୍ୟାସେ ମରେଂ ।।*

ବୃକ୍ଷକୁ ଦେଖି ବୀଜ ସଂପର୍କରେ ଅନୁମାନ କରାଯାଇ ପାରେ । ବୃକ୍ଷଟିଏ ଉଠିଥିଲେ ତାହା ନିଶ୍ଚୟ କୌଣସି ନା କୌଣସି ମଞ୍ଜିରୁ ହିଁ ଉତ୍ପନ୍ନ ହୋଇଥାଏ । ମୃତ୍ୟୁକୁ ଦେଖି ଜନ୍ମ ହୋଇଥିବା ଅନୁମାନ କରାହୁଏ । ଯିଏ ମରି ଥାଏ ସେ ନିଶ୍ଚୟ ଦିନେ ନା ଦିନେ ଜନ୍ମ ହୋଇଥାଏ । ଠିକ୍ ସେହିଭଳି ବାସନାକୁ ଦେଖି କୁହାଯାଇ ପାରେ ଯେ, ପୂର୍ବଜନ୍ମରେ ସେହି

---

☆ ରାମ ଗୋବିନ୍ଦଙ୍କ ସମ୍ମୁଖେ । ଥିଲା ଯେ ବସୁଦେବ ସୁଖେ ।।
ଅନୁଗମନ ପ୍ରଶ୍ନ ଆଶେ । ମିଳିଲା ମୁନିଙ୍କର ପାଶେ ।।
ପ୍ରଣାମ କରି ତାଙ୍କ ପାୟେ । ସାନନ୍ଦ ଚିତ୍ତେ ବାକ୍ୟ କହେ ।।
ନମସ୍ତେ ସର୍ବ ମୁନିବର । ଶୁଣିବା ବଚନ ମୋହର ।।
କି କର୍ମ କର୍ମଫଳ ନାଶେ । ନିର୍ମଳ ଜ୍ଞାନ ସୁପ୍ରକାଶେ ।।
(ଭାଗବତ : ଜଗନ୍ନାଥ ଦାସ : ୧୦ମ. ସ୍କ. ୯୦ ଅ.)

ଜୀବ ସେପରି ବିଷୟ ଭୋଗ କରି ଆସିଛି । ପିଲାଟିଏ ଜନ୍ମ ହେବାକ୍ଷଣି ମା'ର ସ୍ତନକୁ ଖୋଜେ । ସେହି ସ୍ତନରେ ସଦ୍ୟଜାତର ମୁହଁ ଲଗାଇ ଦେଲେ ସେ ଚୁଁ ଚୁଁ କରି କ୍ଷୀର ଚୁଚୁମି ପିଏ । ତାକୁ ଦୁଧ ପିଆ କିଏ ଶିଖାଇଲା ? ଆମେ ଜାଣିଯିବା ଉଚିତ ଯେ ପୂର୍ବଜନ୍ମରେ ତା'ର ଏପରି ପ୍ରକୃତି ଥିଲା, ତା'ର ସ୍ୱଭାବ ହିଁ ଏପରି ଥିଲା । ପୂର୍ବଜନ୍ମରେ ସେ ମାତାର ଦୁଧ ଚୁଚୁମି ପିଇଥିଲା । ଏପରି, ଅଥବା ଏହାର ପ୍ରବଳ ସଂସ୍କାର ବର୍ତ୍ତମାନ ପର୍ଯ୍ୟନ୍ତ ସତେଜ ରହିଛି । ଯେଉଁ ପୁରୁଷ ଜାତ ହୁଅନ୍ତି ସେମାନଙ୍କର ତିନୋଟି ଇଚ୍ଛା ପ୍ରାୟ ବଳବତ୍ତର ରହିଥାଏ । ପ୍ରଥମ ଇଚ୍ଛା ହେଉଛି- ମୁଁ ଧନ ସଂଗ୍ରହ କରିବି । ଦ୍ୱିତୀୟ ଇଚ୍ଛା ହେଉଛି - ମୁଁ ବିବାହ କରି ସନ୍ତାନ ଉତ୍ପନ୍ନ କରିବି । ଆଉ ତୃତୀୟ ଇଚ୍ଛା ହେଉଛି -ମୁଁ ଉତ୍ତମ ପଦ ପ୍ରତିଷ୍ଠା ପ୍ରାପ୍ତ ହେବି । ଯେ ପର୍ଯ୍ୟନ୍ତ ପୁରୁଷଙ୍କର ଏପରି ଇଚ୍ଛା ବଳବତ୍ତର ରହିଥାଏ, ସେ ପର୍ଯ୍ୟନ୍ତ ତାକୁ ବାରମ୍ବାର ବିଭିନ୍ନ ଯୋନିରେ ଜନ୍ମ ନେବାକୁ ହୋଇଥାଏ । ଅନ୍ୟ ଯୋନିରେ ଜୀବ କର୍ମ କରିବା ନିମନ୍ତେ ସ୍ୱତନ୍ତ୍ର ନୁହେଁ । ସଂସାର ବନ୍ଧନରୁ ମୁକ୍ତ ହେବା ଉଦ୍ଦେଶ୍ୟରେ ସାଧନ କରିବା ପାଇଁ ସମର୍ଥ ନ'ଥାନ୍ତି । କେବଳ ମଣିଷ ଜନ୍ମ ଏପରି ଗୋଟିଏ ଜନ୍ମ, ଯେତେବେଳେ ମଣିଷ ବିବିଧ ପ୍ରକାର ସାଧନ କରି ଏହି ଇଚ୍ଛା ଗୁଡ଼ିକର ସମାପ୍ତି କରି ପାରନ୍ତି,ଓ ଜନ୍ମ-ମୃତ୍ୟୁର ଚକ୍ରରୁ ନିବୃତ୍ତ ହୋଇ ପାରନ୍ତି । ଏଥିପାଇଁ ହିଁ ମଣିଷର ଦ୍ୱିତୀୟ ନାମ ହେଉଛି 'ସାଧକ' । ଯଦି ସେ ବିଷୟ ସମୂହର ଉପଭୋଗ ପଶୁମାନଙ୍କ ଭଳି କେବଳ ଇନ୍ଦ୍ରିୟ ସୌଖ୍ୟ, ଇନ୍ଦ୍ରିୟ ତୃପ୍ତି ନିମନ୍ତେ କରୁଥାଏ, ସେ ସମସ୍ତକୁ ରାଗପୂର୍ବକ ଗ୍ରହଣ କରୁଥାଏ ତେବେ ସେ ସାଧକପଣରୁ ଚ୍ୟୁତ ହୋଇଯାଏ । ଆଉ ଯଦି ସେ ସମସ୍ତର ଉପଭୋଗ ଶାସ୍ତ୍ରାନୁମୋଦିତ ବିଧିରେ, ସଂଯମ ପୂର୍ବକ କରୁଥାଏ ତେବେ ଚିରକାଳ ପାଇଁ ବାସନା ସମୂହରୁ ମୁକ୍ତ ହୋଇଯାଏ । ବିଷକୁ ସେବନ ଯେମିତି ବି କରାଗଲେ ତାହା ମୃତ୍ୟୁର କାରଣ ହିଁ ହୋଇଥାଏ । ଯଦି ତାହାକୁ ନିୟମ ପୂର୍ବକ ଶୋଧନ କରି, ବୈଦ୍ୟଙ୍କ ସମ୍ମତିରେ ମାତ୍ରା ଓ ଅନୁପାନର ସହିତ ସେବନ କରାଯାଏ ତେବେ ତାହା ରୋଗକୁ ନାଶକରି ଆରୋଗ୍ୟ ପ୍ରଦାନ କରିଥାଏ । ବିଷର ସ୍ୱଭାବତ ହେଉଛି ଯେମିତି ହେଲେ ମାରିବା । କିନ୍ତୁ ସଂଯମ ଓ ବିଧି ଶୃଙ୍ଖଳାର ସହିତ ସେବନ କଲେ ତାହା ଜୀବନଦାତା ହୋଇଯାଏ । ଠିକ୍ ଏହିଭଳି, କର୍ମର ସ୍ୱଭାବ ହେଉଛି ବନ୍ଧନ । ଯିଏ କର୍ମ କରିବ ସେ ବନ୍ଧନରେ ପଡ଼ିବ । କିନ୍ତୁ ସେହି କର୍ମ ସଂଯମପୂର୍ବକ କର୍ମସମୂହର ନାଶ ନିମନ୍ତେ ଇଚ୍ଛାକରି ପ୍ରଭୁଙ୍କ ପ୍ରୀତ୍ୟର୍ଥ ଯଦି କରାଯାଏ, ତେବେ ତାହା ମୁକ୍ତିର କାରଣ ବି ହୋଇଯାଏ । ସେପରି କର୍ମ କିପରି କରାଯାଏ ଏହାକୁ କେବଳ ତତ୍ତ୍ୱଜ୍ଞାନୀ ଋଷି-ମହର୍ଷିମାନେ କହିପାରନ୍ତି । ସଦ୍ଗୁରୂପୀ ବୈଦ୍ୟ ହିଁ କେବଳ ଏ ସମସ୍ତକୁ ଶୋଧନ, ଅନୁପାନ, ମାତ୍ରା ଆଉ ବିଧିର ଉତ୍ତମ ଜ୍ଞାତା ହୋଇଥାନ୍ତି । ଏଣୁ ସେମାନଙ୍କ ଶରଣ ଗ୍ରହଣ କରି, ସେମାନଙ୍କୁ ପ୍ରଣାମ, ନମସ୍କାର, ସେବା ଆଦିରେ ସନ୍ତୁଷ୍ଟ କରି ପ୍ରଶ୍ନ କରିବା ଉଚିତ । ଏପରି ପ୍ରଶ୍ନ ଶୁଣିବା ପରେ ସେହି ତତ୍ତ୍ୱଦର୍ଶୀ ଋଷି-ମହର୍ଷିମାନେ ଯୋଗ୍ୟ ଅଧିକାରୀ ବୋଲି ଜାଣି ଯଥାର୍ଥ ଉପଦେଶ ଦେଇଥାଆନ୍ତି ।

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ବ୍ୟାସାଦି ମହର୍ଷିମାନେ ଭଗବାନଙ୍କୁ ନମସ୍କାର କରି ଚାଲିଯିବାକୁ ବାହାରୁଥିବା ବେଳେ ବସୁଦେବଙ୍କର ବିନୀତ ପ୍ରଶ୍ନ ଶୁଣି ସେମାନେ ପୁଣି ନିଜ ନିଜ ଆସନରେ ବସିଗଲେ । ସେତେବେଳେ ବସୁଦେବ ସେମାନଙ୍କୁ ଯୋଡ଼ହସ୍ତରେ ପଚାରିଲେ, 'ହେ ଋଷିଗଣ ! ଆପଣମାନେ ଜ୍ଞାନୀ । ସବୁ ଶାସ୍ତ୍ରରେ ପାରଙ୍ଗମ । ସମସ୍ତ ଦେବତା ଆପଣମାନଙ୍କ ଶରୀରରେ ଅବସ୍ଥାନ କରୁଛନ୍ତି । ଏଣୁ ଆପଣ ସର୍ବଦେବମୟ । ପ୍ରଥମେ ଆପଣମାନଙ୍କ ପବିତ୍ର ପାଦପଦ୍ମରେ ପ୍ରଣାମ କରୁଛି । ଏହାପରେ ମୁଁ ଆପଣଙ୍କୁ କିଛି ପଚାରିବା ପାଇଁ ଅନୁମତି ନିବେଦନ କରୁଛି । ଆପଣମାନେ କୃପାକରି ମୋତେ ଏଥିପାଇଁ ଅନୁମତି ଦେବା ହୁଅନ୍ତୁ ।''

ମହର୍ଷି ବ୍ୟାସଦେବ କହିଲେ, '' ହଁ ମହାଭାଗ ! ଆପଣଙ୍କର ଯାହା ଇଚ୍ଛା ହେଉଛି ଆପଣ ପ୍ରସନ୍ନତାପୂର୍ବକ ପ୍ରଶ୍ନ କରନ୍ତୁ । ଆମେ ଆପଣଙ୍କ ପ୍ରଶ୍ନର ଯଥାଯୋଗ୍ୟ ଉତ୍ତର ଦେବୁ ।''

ଏପରି କଥା ଶୁଣି ବସୁଦେବ କହିଲେ, '' ହେ ମୁନିଗଣ ! ମୁଁ ଆପଣମାନଙ୍କୁ ପଚାରିବାକୁ ଚାହୁଁଛି ଯେ - ଯେତେସବୁ କର୍ମ ଅଛି, ସେ ସମସ୍ତ ଦୋଷଯୁକ୍ତ । କର୍ମ କର୍ମକୁ ହିଁ ଉତ୍ପନ୍ନ କରିଥାଏ । ବୀଜ ତା ଭଳି ଅନ୍ୟ ଅନେକ ବୀଜ ଉତ୍ପନ୍ନ କରେ । କର୍ମ ଶୁଭ ହେଉ ଅଥବା ଅଶୁଭ ହେଉ, ପାପ ହୋଇଥାଉ ଅଥବା ପୁଣ୍ୟ, ସବୁ ସଂସାର ବନ୍ଧନକୁ ହିଁ ବଢ଼ାଇଥାନ୍ତି । ଏହି ଜୀବ କୌଣସି ପ୍ରକାର କର୍ମ ନକରି ରହିପାରେ ନାହିଁ । ଇଏ ହୁଏତ ପୁଣ୍ୟ କରେ ଅଥବା ପାପ । ପାପ କରିବା ଦ୍ୱାରା ନର୍କଭୋଗ ଓ ନୀଚଯୋନିରେ ଜନ୍ମ ଗ୍ରହଣ କରେ, ଆଉ ପୁଣ୍ୟରେ ସ୍ୱର୍ଗ ଭୋଗ ଓ ଉଚ୍ଚ ଯୋନୀ ପ୍ରାପ୍ତି । ଆପଣମାନେ ଏପରି କୌଣସି କର୍ମ ବିଷୟରେ କୁହନ୍ତୁ ଯାହାଦ୍ୱାରା ମୋକ୍ଷ ମାର୍ଗର ପ୍ରତିବନ୍ଧକକୁ ପରିହାର କରାଯାଇ ପାରିବ । ଅର୍ଥାତ୍, 'ସେହି କର୍ମରାଶି ବନ୍ଧନର କାରଣ ନହୋଇ ମୋକ୍ଷ ପ୍ରଦାନକାରୀ ହେବ ।''

ଶ୍ରୀ ଭଗବାନଙ୍କର ପୂଜ୍ୟ ପିତା ତେଜସ୍ୱୀ ବସୁଦେବଙ୍କ ଶ୍ରୀମୁଖରୁ ଏପରି ସୁନ୍ଦର ପ୍ରଶ୍ନ ଶୁଣି ସକଳ ମୁନିଋଷି ହସିବାରେ ଲାଗିଲେ । ସେମାନେ ନିଜ ନିଜ ଭିତରେ ମୃଦୁ ସ୍ୱରରେ କଥାବାର୍ତ୍ତା ହେବାରେ ଲାଗିଲେ- 'ଦେଖ, କି ପ୍ରକାର ଆଶ୍ଚର୍ଯ୍ୟ କଥା, ଯାହାଙ୍କର ଘରେ ସାରା ସଂସାରକୁ ମୁକ୍ତି ପ୍ରଦାନ କରୁଥିବା ସାକ୍ଷାତ୍ ସଚ୍ଚିଦାନନ୍ଦ ଘନ ଶ୍ରୀହରି ବିଦ୍ୟମାନ, ସେ ମୁକ୍ତି ନିମନ୍ତେ ଆମକୁ ପ୍ରଶ୍ନ ପଚାରୁଛନ୍ତି !'

ଋଷିମାନେ ଆଶ୍ଚର୍ଯ୍ୟ-ଚକିତ ହୋଇଯାଇଥିବା ଦେଖି ଦେବର୍ଷି ନାରଦ ସେମାନଙ୍କୁ କହିଲେ, '' ହେ ମହର୍ଷିଗଣ ! ଆପଣମାନେ ଏହି ପ୍ରଶ୍ନ ଶୁଣି ଏପରି ଆଶ୍ଚର୍ଯ୍ୟ କାହିଁକି ହେଉଛନ୍ତି ? ଏଥିରେ ଆଶ୍ଚର୍ଯ୍ୟ ହେବାର ତ କିଛି ନାହିଁ ।''

ଋଷିମାନେ କହିଲେ, '' ହେ ମୁନିପୁଙ୍ଗବ ! ଯାହାଙ୍କର ବୈଦ୍ୟପୁତ୍ର ହଜାର ହଜାରଙ୍କୁ ଔଷଧ ପ୍ରଦାନକରି ଭଲ କରୁଥାନ୍ତି, ସେପରି ଲୋକ ନିଜର ଚିକିତ୍ସା ପାଇଁ ଜଣେ ସାଧାରଣ ବୈଦ୍ୟଙ୍କ ପାଖକୁ ଯଦି ଯାଏ, ତେବେ ତା ଠାରୁ ବଳି ଆଶ୍ଚର୍ଯ୍ୟର କଥା ଆଉ କିଛି ଥାଇପାରେ କି ? ମୁକ୍ତିଦାତା ଶ୍ରୀ ଭଗବାନ ଦିନ ରାତି ପାଖରେ ରହୁଥିଲେ ବି ବସୁଦେବ ମୁକ୍ତି ଦେଇପାରୁଥିବା କର୍ମ ସଂକ୍ରାନ୍ତରେ ଆମକୁ ପ୍ରଶ୍ନ କରୁଛନ୍ତି ?''

ଦେବର୍ଷି ନାରଦ କହିଲେ, ''ହେ ମୁନିଗଣ ! କାହାଘରେ ଅମୃତ ଥିଲେ, ଯଦି ସେ ତାହା ପାନ ନ କରେ ତେବେ ସେ ଅମର ହୋଇପାରିବ କିପରି ? ମୁକ୍ତିଦାତା ଶ୍ରୀଭଗବାନ ତାଙ୍କ ଘରେ ଅଛନ୍ତି, କିନ୍ତୁ ସେ ତ ତାଙ୍କୁ ନିଜ ପୁଅ ବୋଲି ଜାଣିଛନ୍ତି, ଧରିନେଇଛନ୍ତି । ଓଲଟା ସେ ସ୍ୱୟଂ ତାଙ୍କୁ ଶିଖାଇବାରେ ଲାଗିଛନ୍ତି । ତାଙ୍କୁ ପୋଷ୍ୟ ବୋଲି ଜାଣିଛନ୍ତି । ତାଙ୍କୁ ସେ କିପରି ପ୍ରଶ୍ନ କରିପାରନ୍ତେ ଯେ ?''

ଏପରି କଥା ଶୁଣି ମୁନିମାନେ କହିଲେ, '' ହଉ, ଠିକ୍ ଅଛି, ଇଏ ତାଙ୍କୁ ପୁଅ ବୋଲି ଜାଣିଛନ୍ତି, ହେଲେ ଶ୍ରୀ ଭଗବାନତ ସର୍ବଜ୍ଞ । ସେ ତ ସକଳ ଘଟର ଜ୍ଞାତା । ସେ ହିଁ ନିଜେ ପିତାଙ୍କ ଅନ୍ତଃକରଣରେ ପ୍ରବେଶ କରି ପ୍ରଶ୍ନର ଉତ୍ତର କାହିଁକି ଦେଉ ନାହାନ୍ତି ?''

ଦେବର୍ଷି ନାରଦ କହିଲେ, '' ଶ୍ରୀ ଭଗବାନ ତାଙ୍କର (ବସୁଦେବଙ୍କର) ଅନ୍ତଃକରଣରେ ପ୍ରବେଶ କରି ସନ୍ଦେହ ମୋଚନ ନକରିବାର ଅନେକ କାରଣ ଅଛି ।

''ପ୍ରଥମତଃ, ଭଗବାନଙ୍କର ପ୍ରତିଜ୍ଞା ହେଉଛି, 'ଯିଏ ମୋତେ ଯେପରି ଗ୍ରହଣକରେ, ଯେପରି ଭାବରେ ଭଜନ କରେ ମୁଁ ତାକୁ ତଦନୁରୂପ ଫଳ ପ୍ରଦାନକରେ ।' ଯିଏ ଭଗବାନଙ୍କୁ ପୁଅ ରୂପେ ଗ୍ରହଣ କରେ ତା' ପାଖରେ ସେ ସର୍ବଥା ପୁଅହିଁ ହୋଇଥାନ୍ତି । ପିଲାଙ୍କ ଭଳି ବ୍ୟବହାର କରନ୍ତି । ଚେଷ୍ଟା ବି ପିଲାଙ୍କ ଭଳି କରନ୍ତି । ଯିଏ ତାଙ୍କୁ ମିତ୍ର ବୋଲି ଗ୍ରହଣ କରେ ତା ପାଖରେ ସେ ମିତ୍ର ହିଁ ହୋଇଥାନ୍ତି । ଯିଏ ତାଙ୍କୁ ପତିରୂପେ ଗ୍ରହଣ କରେ ତାଙ୍କ ପାଖରେ ସେ ତଦନୁରୂପ ଚେଷ୍ଟା ପରିପ୍ରକାଶ କରିବାରେ ଲାଗନ୍ତି । ଯାହାକଲେ କର୍ତ୍ତାଙ୍କୁ ସୁଖ ମିଳିବ, ସନ୍ତୋଷ ମିଳିବ ଭଗବାନ୍ ତା ପାଖରେ ସେହିପରି ବିନୋଦମୟୀ ଲୀଳା କରନ୍ତି, ରାସବିଳାସର କ୍ରିୟା କରିଥାନ୍ତି । ବସୁଦେବ ଭଗବାନଙ୍କୁ ପୁତ୍ର ରୂପେ ଗ୍ରହଣ କରିଛନ୍ତି ଆଉ ପୁତ୍ରଠାରୁ ପିତା ତ ଉପଦେଶ ଗ୍ରହଣ କରିବା କଥା ନୁହେଁ । କି ପୁତ୍ର ବି ପିତାଙ୍କୁ ଉପଦେଶ ଦେବା ଠିକ୍ କଥା ନୁହେଁ । ତେଣୁ ସେ ପିତାଙ୍କୁ ଉପଦେଶ ଦେଇ ନାହାନ୍ତି ।

''ଦ୍ୱିତୀୟ କଥା ହେଉଛି- ଅତି ପରିଚୟରେ ଅବଜ୍ଞା ହୋଇଯିବାର ସମ୍ଭାବନା ଯଥେଷ୍ଟ ଅଛି । କେହି ଯେତେବଡ଼ ସିଦ୍ଧ ମହାତ୍ମା ହୋଇଥାଉ ପଛେ, ଅଷ୍ଟପ୍ରହର ଯାକ ଆମେ ତା

ପାଖରେ ରହିଥିଲେ ତା ଉପରେ ଆମର ବିଶ୍ୱାସ ସେତେ ସୁଦୃଢ଼ ହୁଏନାହିଁ । କେହି ଅଜଣା ବହୁରୂପୀ ନକଲୀ ସାଧୁ ଆସିଗଲେ, ଆମେ ତାଙ୍କୁ ଅତି ସହଜରେ ବିଶ୍ୱାସ କରିନେଉ । କଥାରେ ଅଛି, '' ଗାଁ ଝିଅ ଶିଂଘାଣୀ ନାକି' । ଆପଣମାନେ ପ୍ରତ୍ୟେକ୍ଷରେ ଦେଖନ୍ତୁ । ଗଙ୍ଗା କେଡେ ପବିତ୍ର । ପୁରାଣ, ଶାସ୍ତ୍ରମାନଙ୍କରେ ଗଙ୍ଗାଙ୍କ ପ୍ରଶସ୍ତି କେତେ ନା କେତେ ଅଛି । ଦୂରଦୂରାନ୍ତରରୁ ଗଙ୍ଗା ସ୍ନାନ ନିମନ୍ତେ କେତେ ହା କେତେ ଲୋକ ଆସନ୍ତି । କେହି କୌଣସି ପାପ କରିଥିଲେ ପଣ୍ଡିତମାନେ ଗଙ୍ଗା ସ୍ନାନ ନିମନ୍ତେ ପରାମର୍ଶ ଦିଅନ୍ତି । କିନ୍ତୁ ଯିଏ ସବୁବେଳେ ଗଙ୍ଗା କୂଳରେ ରହୁଥାଏ, ସେମାନଙ୍କ ଭିତରୁ ଅଧିକାଂଶ ଗଙ୍ଗାସ୍ନାନ ନିମନ୍ତେ ଯାଆନ୍ତି ନାହିଁ, କୂଅରେ ଅଥବା କଳପାଣିରେ ସ୍ନାନ କରନ୍ତି । ନିଜର ଯଦି କିଛି ପାପ ହୋଇଯାଏ ତେବେ ପ୍ରାୟଶ୍ଚିତ ନିମନ୍ତେ ଅନ୍ୟତ୍ର ଦୂର ସ୍ଥାନକୁ ଯାଆନ୍ତି, କାରଣ ଗଙ୍ଗାଙ୍କ କୂଳରେ ରହି ଆସିଥିବାରୁ ଗଙ୍ଗାଙ୍କ ମାହାତ୍ମ୍ୟ ପ୍ରତି ଅବିଶ୍ୱାସ ହୋଇଯାଇ ଥାଏ ।

''କେହି ଜଣେ ମହାନ୍ ସନ୍ଥ ଅଛନ୍ତି । ପ୍ରତିଦିନ ସେ ଆମ ସହିତ ହସଖୁସୀ କରୁଛନ୍ତି । ପିଲାଙ୍କ ଭଳି ଆମ ସହିତ ଖେଳ ଖେଳନ୍ତି । ସେ ହୁଏତ ଆମର ପିତାଙ୍କ ବୟସର ହୋଇ ଥିଲେ ବି ଆମେ ତାଙ୍କୁ ଖେଳରେ ବେଳେ ବେଳେ ଗାଳି ଫଜିତ୍ କଲେ ସେ କିଛି ଖରାପ ନ ଭାବି ହସନ୍ତି - ସେପରି ସ୍ଥଳରେ ତାଙ୍କ ପ୍ରତି ଆମର ସେତେ ଆଦର ଭାବ ରହେ ନାହିଁ । ଆମେ ତାଙ୍କୁ ଆମ ଭଳି ସାଧାରଣ ଲୋକ ବୋଲି ଭାବିଥାଉ । ସେହିଭଳି, ଯଦିଓ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ହେଉଛନ୍ତି ଜ୍ଞାନ ସ୍ୱରୂପ, ତାଙ୍କର ଜ୍ଞାନ ତ୍ରିକାଳବାଧିତ, ଇଏ ଜଗତର ଉତ୍ପତ୍ତି - ସ୍ଥିତି - ସଂହାରର ଏକମାତ୍ର କାରଣ, ଏହାଙ୍କ ଜ୍ଞାନ ଅନ୍ୟର ସଂଗରେ ହେଉ ଅଥବା ସ୍ୱତଃ କଦାପି କ୍ଷୀଣ ହୁଏ ନାହିଁ । ଇଏ ରାଗଦ୍ୱେଷାଦି କ୍ଲେଶ, ଶୁଭ - ଅଶୁଭ କର୍ମ, ସୁଖ-ଦୁଃଖାଦି କର୍ମଫଳ ତଥା ସତ୍ତ୍ୱ, ରଜ ଆଉ ତମ - ଏହି ଗୁଣ ଦ୍ୱାରା ସଦା ଅଖଣ୍ଡିତ ଏବଂ ଏକରସ ଅଟନ୍ତି, ଏହାଙ୍କ ଉପରେ ଏ ସମସ୍ତର କୌଣସି ପ୍ରଭାବ ପଡ଼େ ନାହିଁ; ତେବେ ବି ଇଏ ନରରୂପ ଧାରଣ କରି ନିଜର ଭଗବତ୍ତାକୁ କିଛି ଆବୃତ୍ତ କରିଛନ୍ତି । ସୂର୍ଯ୍ୟ ମେଘ ଦ୍ୱାରା ଢାଙ୍କି ହୋଇ ଗଲେ ଅଜ୍ଞାନୀ ଲୋକମାନେ ସୂର୍ଯ୍ୟ ନାହାନ୍ତି ବୋଲି ଯେପରି ଭାବନ୍ତି, ବାସ୍ତବରେ ସୂର୍ଯ୍ୟ ତ କେଉଁଆଡ଼େ ଚାଲିଯାଇ ନ' ଥାନ୍ତି, କିନ୍ତୁ ମେଘର ଆବରଣରେ ସେ ଦେଖା ଯାଆନ୍ତି ନାହିଁ - ଠିକ୍ ସେହିଭଳି, ମଣିଷ ରୂପରେ ଲୁଚି ରହିବା ହେତୁ ଲୋକମାନେ ତାଙ୍କୁ (ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ) ଇନ୍ଦ୍ରିୟାଦିଙ୍କ ଦ୍ୱାରା ଆଚ୍ଛାଦିତ ବୋଲି ମନେ କରନ୍ତି ।

''ତୃତୀୟତଃ, ଭଗବାନ ତ ସବୁ ପ୍ରକାର ନରନାଟ୍ୟ କରୁଛନ୍ତି ନା ! ଏବେ ଏହି ସମସ୍ତ ରାଜାଙ୍କୁ ପ୍ରବୃତ୍ତି ମାର୍ଗର ଉପଦେଶ ବି ଇଏ ଦେଉଛନ୍ତି, ଆଉ ବାଣୀରେ ଶକ୍ତି ମଧ୍ୟ ଇଏ ପ୍ରଦାନ କରୁଛନ୍ତି । ଏହି ଯଦୁବଂଶ - ବିଭୂଷଣ ହିଁ ସମସ୍ତଙ୍କ ହୃଦୟର ପ୍ରେରଣା ପ୍ରଦାନକାରୀ

ଅଟନ୍ତି । ବସୁଦେବଙ୍କ ହୃଦୟରେ ପ୍ରଶ୍ନର ପ୍ରେରଣା ମଧ୍ୟ ଇଏ ପ୍ରଦାନ କରିଛନ୍ତି । ଏବଂ ଆପଣମାନଙ୍କ ଦ୍ୱାରା ଇଏ ହିଁ ଉତ୍ତର ପ୍ରଦାନ କରିବେ । ଫଳରେ ଜଗତର ଅଶେଷ ମଙ୍ଗଳ ହୋଇପାରିବ । ଲୋକମାନଙ୍କୁ ଭବସାଗର ପାରି ହେବା ପାଇଁ ସୁଗମ ମାର୍ଗ ବିଦିତ ହୋଇଯିବ ।

''ଚତୁର୍ଥ କାରଣ ହେଉଛି, ଭଗବାନ ନିଜେ ଅତି ସରଳ ହୋଇ ଯେଉଁଭଳି ଭାବରେ ବନ୍ଧା ହୋଇଯାଆନ୍ତି, ଗୋପିକା ଓ ଗୋପାଳଙ୍କ ହାତରେ ପରାସ୍ତ ହୋଇଯାଆନ୍ତି, କ୍ଷୀର ପାଇଁ କାନ୍ଦନ୍ତି, ଲବଣି ଚୋରି ଆଦି ପ୍ରାକୃତ ଲୀଳା କରନ୍ତି, ବାସ୍ତବ କ୍ଷେତ୍ରରେ ଦେଖିଲେ ତାଙ୍କର ଏ ସବୁରେ କି ଆବଶ୍ୟକ ଅଛି ? **ଯିଏ ପୂର୍ଣ୍ଣକାମ ତାଙ୍କର ପୁଣି ସ୍ପୃହା କେଉଁଥିରେ ?** କିନ୍ତୁ ମନୋରଞ୍ଜନ ନିମନ୍ତେ ଆଉ ଭକ୍ତଙ୍କୁ ସୁଖ ଦାନ କରିବାକୁ ଯାଇ ସେ ଏପରି ଲୀଳା କରିଥାନ୍ତି । ଯଦିଓ ତାଙ୍କର କୌଣସି ପ୍ରକାର ଆଶଙ୍କା ନଥାଏ, ତେବେ ବି ଏପରି ପ୍ରଶ୍ନ କରି କିଛି ସମୟ ପାଇଁ ସତ୍‌ସଙ୍ଗ ଲାଭ କରିବା, କରାଇବା ହେଉଛି ତାଙ୍କର ଉଦ୍ଦେଶ୍ୟ । କାରଣ **ସତ୍‌ସଙ୍ଗର ଆନନ୍ଦ ହେଉଛି ଅପୂର୍ବ ।** ଲୋକଙ୍କୁ ପୁଣି କିଛି ଶିକ୍ଷା ମିଳିବ, ଲୋକମାନେ କିଛି ଜାଣିବେ, ଆଉ ଏଇଥିପାଇଁ ହିଁ ଏପରି ପ୍ରଶ୍ନ ଅନ୍ତଃକରଣରେ ଉଠେ । ଯାହା ବି ହେଉ, ଯେପରି ବି ହେଉ, ଆପଣମାନେ ତେଜସ୍ୱୀ ବସୁଦେବଙ୍କ ପ୍ରଶ୍ନର ଉତ୍ତର ଦିଅନ୍ତୁ ।''

ଦେବର୍ଷି ନାରଦଙ୍କ ଠାରୁ ଏପରି କଥା ଶୁଣି ଉପସ୍ଥିତ ସେହି ମହର୍ଷିମାନେ ବସୁଦେବଙ୍କ ପ୍ରଶ୍ନକୁ ଅଭିନନ୍ଦନ କଲେ । ଆଉ ତାଙ୍କୁ ସମ୍ବୋଧିତ କରି ଶ୍ରୀ ବଳରାମ ଓ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ଶୁଣାଇ ଶୁଣାଇ ପ୍ରଶ୍ନ ଉତ୍ତର ଦେବା ଆରମ୍ଭ କଲେ । ଉପସ୍ଥିତ ସମସ୍ତେ ତ ଆଉ ଉତ୍ତର ଦିଅନ୍ତେ ନାହିଁ, ସେମାନଙ୍କ ଭିତରୁ, ଆଉ ସମସ୍ତଙ୍କ ପାଇଁ, ଉତ୍ତର ଦେବାକୁ ଯାଇ ଭଗବାନ ବ୍ୟାସଦେବ କହିଲେ, '' ହେ ମହାଭାଗ ବସୁଦେବ ! କର୍ମ-ସମୂହ ଦ୍ୱାରା କର୍ମ-ସମୂହକୁ ପରିହାର କରିବା ନିମନ୍ତେ ବିଦ୍ୱାନ୍‌ମାନେ ସର୍ବଶ୍ରେଷ୍ଠ, ପରମ ସୁଗମ, ସର୍ବୋପଯୋଗୀ, ତଥା ଅବ୍ୟର୍ଥ ଉପାୟ ବତାଇବାକୁ ଯାଇ ଦ୍ରବ୍ୟଯଜ୍ଞ, ତପୋଯଜ୍ଞ, ଯୋଗଯଜ୍ଞ, ସ୍ୱାଧ୍ୟାୟଯଜ୍ଞ ଅଥବା ଜ୍ଞାନ ଦ୍ୱାରା ସର୍ବ-ଯଜ୍ଞ-ପତି ଭଗବାନ ଶ୍ରୀକୃଷ୍ଣଙ୍କୁ ପୂଜା କରିବା ପାଇଁ କହିଛନ୍ତି । କର୍ମ ଯେଉଁଭଳି ହୋଇଛି ହୋଇଥାଉ ପଛେ, ତାହା ଯଜ୍ଞ ପୂର୍ତ୍ତି ନିମନ୍ତେ ହୋଇଥିବା ଦରକାର । **ଯଜ୍ଞ ଅତିରିକ୍ତ ଯେଉଁ ସବୁ କାର୍ଯ୍ୟ କରାଯାଏ, ସେ ସମସ୍ତ ବନ୍ଧନର ହେତୁ ହୋଇଥାଏ ।** ଉଦାହରଣ ସ୍ୱରୂପ, ଆମେ ସ୍ନାନ କରୁଛେ । ଏହି ସ୍ନାନ କରିବା ଦ୍ୱାରା ଆମକୁ ସ୍ୱର୍ଗପ୍ରାପ୍ତି ହେବ, ଏପରି ଭାବନାର ସହିତ ଆମେ ସ୍ନାନ କରିବା ଉଚିତ ନୁହେଁ । ଅପରପକ୍ଷରେ ସ୍ନାନ କରିବା ଦ୍ୱାରା ଆମେ ଉତ୍ତମ ରୂପେ ବିଷ୍ଣୁ ପୂଜନ କରିପାରିବା, ଭଗବାନଙ୍କର ଅନ୍ତରଙ୍ଗ ସେବାର ଅଧିକାରୀ ହୋଇ ପାରିବା - ଏପରି ଭାବନା ସତତ ଧାରଣ କରିଥିବା ଉଚିତ ।

ଫୁଲ ତୋଳିଲେ ତାହା ଭଗବାନଙ୍କ ପାଇଁ, କୃଷି କଲେ ତାହା ଭଗବାନଙ୍କ ଭୋଗ ନିମନ୍ତେ, ହବନ ନିମନ୍ତେ କରୁଛେ ବୋଲି ଭାବନା ରଖିଥିବା ଦରକାର । ସାରାଂଶ ହେଉଛି, **ଆମେ ଯାହା ବି କରିବା, କରୁଥିବା ତାହା ପ୍ରଭୁ ପ୍ରୀତ୍ୟର୍ଥେ କରୁଥିବା ।** ଭଗବାନଙ୍କର ସେବା ସମ୍ବନ୍ଧରେ କରୁଥିବା । ଆଉ, ଇନ୍ଦ୍ରିୟ ତୃପ୍ତି ନିମନ୍ତେ କୌଣସି କର୍ମ କରୁ ନଥିବା । ମହାନ୍ ମହାନ୍ ବିଦ୍ୱାନ୍ ମାନେ ଶାସ୍ତ୍ର ଦୃଷ୍ଟିରେ ଏହାକୁ ହିଁ ଚିତ୍ତ ଶାନ୍ତିର ପରମ ସୁଗମ ଉପାୟ, ମୁକ୍ତି ସାଧନର ଓ ମନ ପ୍ରସାଦର ସର୍ବୋତ୍ତମ ଉପାୟ ବୋଲି କହିଛନ୍ତି ।

ତେଜସ୍ୱୀ ବସୁଦେବ ପଚାରିଲେ, '' ମହାରାଜ୍ ! ମୁଁ ତ ତ୍ୟାଗୀ ନୁହେଁ କି ବିରାଗୀ ନୁହେଁ, ମୁଁ ଗୃହତ୍ୟାଗୀ ବି ନୁହେଁ, ସନ୍ନ୍ୟାସୀ ବି ନୁହେଁ । ମୁଁ ଗୃହସ୍ଥ । ତେଣୁ ଗୃହସ୍ଥ-ଉପଯୋଗୀ କିଛି ଉପାୟ କହିବା ହୁଅନ୍ତୁ ।''

ଭଗବାନ ବ୍ୟାସଦେବ କହିଲେ, '' ରାଜନ୍ ! ନିଜର ନ୍ୟାୟାର୍ଜିତ ଧନରେ ଶ୍ରଦ୍ଧାର ସହିତ ଭଗବାନ ପୁରୁଷୋତ୍ତମଙ୍କ ପୂଜା କରିବା ହେଉଛି ସଦ୍‌ଗୃହସ୍ଥୀଙ୍କ ନିମନ୍ତେ ମୁକ୍ତିର ଶ୍ରେଷ୍ଠ ଉପାୟ । ଏହା ବ୍ୟତୀତ ତାଙ୍କର ଅର୍ଚ୍ଚନା ବିଗ୍ରହକୁ ଷୋଡ଼ଶୋପଚାରରେ ପ୍ରେମ ପୂର୍ବକ ପୂଜା କରିବା ଉଚିତ, ଅଥବା ଅଗ୍ନିକୁ ତାଙ୍କର ଅଂଶ ଭୂତ ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରଭୁଙ୍କ ପ୍ରୀତ୍ୟର୍ଥେ ହବନ କରିବା ଉଚିତ । ଅଥବା ବ୍ରାହ୍ମଣ, ଗୁରୁଙ୍କ ଠାରେ, ଅତିଥିଙ୍କଠାରେ ଅଥବା ସକଳ ଭୂତରେ ତାଙ୍କୁ ଭାବନାକରି ପୂଜା କରିବା ଉଚିତ । ପ୍ରତ୍ୟେକ କର୍ମକୁ ନିଷ୍କାମ ଭାବରେ କରୁଥିବା ଉଚିତ ।

''ସମସ୍ତଙ୍କ ଠାରେ ବିତ୍ତୈଷଣା, ପୁତ୍ରୈଷଣା, ଆଉ ଲୋକୈଷଣା - ଏପରି ତିନୋଟି ଏଷଣା (=ଅଭିଳାଷ) ବଳବତ୍ତର ଥାଏ । ତେଣୁ ଏପରି କର୍ମ କରୁଥିବା ଉଚିତ ଯାହା କରିବା ଦ୍ୱାରା ଏହି ଏଷଣାଗୁଡ଼ିକ ଶାନ୍ତ ହୋଇଯିବେ । ଏହି ଏଷଣାଗୁଡ଼ିକୁ ସାଙ୍ଗରେ ଧରି ଯିଏ ଘରଛାଡ଼ି ସନ୍ନ୍ୟାସୀ ହୁଏ, ସେପରି ଲୋକର ପତନ ଅନିବାର୍ଯ୍ୟ । ଏଣୁ ଗୃହରେ ରହି ଏହି ଏଷଣାଗୁଡ଼ିକୁ ସ୍ୱଇଚ୍ଛାରେ ତ୍ୟାଗ କରିବାକୁ ଅଭ୍ୟାସ କରୁଥିବା ଉଚିତ । ସମସ୍ତ ଏଷଣା ଶାନ୍ତ ହୋଇଯିବା ପରେ ଘର ଛାଡ଼ି ବଣକୁ ଯିବାପାଇଁ ମନ କରିବା ଉଚିତ ।''

ବସୁଦେବ ପଚାରିଲେ, '' ବ୍ରହ୍ମନ୍ ! ଏହି ଏଷଣାଗୁଡ଼ିକୁ କେଉଁ ଉପାୟ ଅବଲମ୍ବନରେ ତ୍ୟାଗ କରାଯାଇ ହୁଏ ତାହା ସ୍ପଷ୍ଟରୂପେ କୁହନ୍ତୁ ।''

ମହର୍ଷି ବ୍ୟାସଦେବ କହିଲେ, ''ରାଜନ୍ ! ଧନ ଉପାର୍ଜନ କରିବାର ଉପାୟକୁ, ଇଚ୍ଛାକୁ ବିତ୍ତୈଷଣା କୁହାଯାଏ । ଏଣୁ ଧନ ତ ଉପାର୍ଜନ କରିବାକୁ ପଡ଼େ, ତେବେ ନ୍ୟାୟରେ ଉପାର୍ଜନ କରୁଥିବା ଉଚିତ । ଧନ ଧର୍ମପୂର୍ବକ ରୋଜଗାର କରିବା ଉଚିତ । ଅନ୍ୟାୟରେ,

ଅଧର୍ମରେ କଦାପି ଧନ ରୋଜଗାର କରିବା ଉଚିତ ନୁହେଁ; ଆଉ ଯଦି ଧର୍ମପୂର୍ବକ ଧନ ନ ମିଳେ ତେବେ ବରଂ ଉପାସ ରହିଯିବା ଶ୍ରେୟସ୍କର, କିନ୍ତୁ ଅଧର୍ମପୂର୍ବକ, ଅନ୍ୟାୟରେ ଯଦି କୋଟି କୋଟି ଟଙ୍କା ବି ମିଳିଯାଏ ତେବେ ତାହା ପ୍ରତ୍ୟାଖ୍ୟାନ କରିଦେବା ଆବଶ୍ୟକ । ନ୍ୟାୟରେ, ଧର୍ମରେ ଯେତିକି ଧନ ମିଳେ ତାହାକୁ ଯଜ୍ଞ ଦାନାଦିରେ ବ୍ୟୟ କରିଦେଉଥିବା ଉଚିତ । ଦାନ ଧର୍ମ କରୁଥିବା ବେଳେ ତାହା ପ୍ରଭୁ ପ୍ରୀତ୍ୟର୍ଥେ କରୁଥିବା ଉଚିତ । ଏହିଭଳି ନ୍ୟାୟ ପୂର୍ବକ ଧନ ଉପାର୍ଜନ କରି ତାହାକୁ ଧର୍ମ କାର୍ଯ୍ୟରେ ନିୟୋଜିତ କଲେ ବିତ୍ତୈଷଣା ଶାନ୍ତ ହୋଇଯାଏ । ଦାନ ଯଜ୍ଞାଦି କରି ମଣିଷ ଦେବତାଙ୍କ ଋଣରୁ ମୁକ୍ତ ହୋଇଯାଏ ।

''ସ୍ତ୍ରୀଙ୍କ ମାଧ୍ୟମରେ ପୁତ୍ର ଉତ୍ପନ୍ନ କରିବାକୁ ପୁତ୍ରୈଷଣା କୁହାଯାଏ । ଏହି ଇଚ୍ଛାପୂର୍ତ୍ତି ନିମନ୍ତେ ବିବାହ କରାଯାଏ । ତେଣୁ ନିଜର ବିବାହିତା ପତ୍ନୀଙ୍କ ଠାରେ ପରିତୃପ୍ତ ରହିଥିବା ଉଚିତ । ପର ସ୍ତ୍ରୀଙ୍କୁ ଆଡ଼ ଆଖିରେ ବି ଚାହିଁବା ଉଚିତ ନୁହେଁ । ନିଜର ପତ୍ନୀଙ୍କଠାରେ ଋତୁକାଳ ବିଧି ଅନୁସାରେ ସନ୍ତାନ ଉତ୍ପନ୍ନ କରୁଥିବା ଉଚିତ । ଆମର ଏହି ଶରୀର ଆମ ପୂର୍ବଜଙ୍କର ନ୍ୟାୟଭୂତ ଶରୀର ଅଟେ । ଏଣୁ ପୁତ୍ର ଉତ୍ପନ୍ନ କରି ପୁତ୍ରୈଷଣାକୁ ତ୍ୟାଗ କରିଦେବା ଉଚିତ । ଆଉ ପିତୃପୁରୁଷଙ୍କ ଋଣମୁକ୍ତ ବି ହୋଇଯିବା ଉଚିତ ।

''ସଂସାରରେ ପ୍ରତିଷ୍ଠା ପାଇବା ପାଇଁ ଇଚ୍ଛା, ଅଥବା ସ୍ୱର୍ଗାଦି ଲୋକ ଉପରେ ବିଜୟ ଲାଭ କରିବାର ଇଚ୍ଛାକୁ ଲୋକୈଷଣା କୁହାଯାଏ । ଏହି ଲୋକୈଷଣା ଉତ୍ତମ ଚିନ୍ତା-ବିଚାର-ବିମର୍ଷ ଦ୍ୱାରା; ବୈରାଗ୍ୟ, ଜପ, ତପ ଦ୍ୱାରା ଶାନ୍ତ ହୁଏ । ସାଂସାରିକ ସକଳ ପଦାର୍ଥ ଯେଉଁଭଳି ନାଶବାନ ଠିକ୍ ସେହିଭଳି କାଳର ଗତି ଅନୁସାରେ ସ୍ୱର୍ଗାଦି ଲୋକ-ଭୋଗ ବି ଚାଲିଯାଏ - ଏପରି ଭାବନା ଅନବରତ ମନରେ ଧାରଣା ଜାଗ୍ରତକରି ରଖିଲେ ଲୋକୈଷଣା ନାଶ ହୁଏ ।

'' ରାଜନ୍ ! ଏହି ତିନି ଏଷଣା ଯେତେବେଳେ ଏହିଭଳି ଉପାୟ ଅବଲମ୍ବନ କରି ଶାନ୍ତ ହୋଇଯାଏ ସେତେବେଳେ ଧୀର ପୁରୁଷ ଆଉ ଗୃହ ମଧ୍ୟରେ ଲୁଚି ରହିବା ଉଚିତ ନୁହେଁ । ସେ ସମସ୍ତଙ୍କୁ ତ୍ୟାଗକରି ବଣକୁ ଯାଇ ତପସ୍ୟା କରିବା ଉଚିତ । ଏହାହିଁ ହେଉଛି ବିଦ୍ୱାନ୍ ଗୃହସ୍ଥମାନଙ୍କର ମୁକ୍ତିର କ୍ରମ ମାର୍ଗ । ଦ୍ୱିଜାତି ବାଳକ ଯେତେବେଳେ ଜନମ ନିଏ ସେତେବେଳେ ତା ମୁଣ୍ଡ ଉପରେ ଦେବଋଣ, ଋଷିଋଣ ଆଉ ପିତୃଋଣ ଲଦି ହୋଇଯାଏ । ଯଜ୍ଞାଦି କରିବା ଦ୍ୱାରା ଦେବଋଣ ଶୁଝି ହୋଇଯାଏ । ବେଦାଦି ଅଧ୍ୟୟନ ଦ୍ୱାରା ଋଷିଋଣ ଚାଲିଯାଏ । ଆଉ ପୁତ୍ର ସନ୍ତାନ ଜନ୍ମ ହୋଇଯିବା ପରେ ପିତୃଋଣରୁ ସ୍ୱତଃ ମୁକ୍ତି ମିଳିଥାଏ । ଯେଉଁ ଲୋକମାନେ ଏହି ତିନିଋଣକୁ ନ ଶୁଝି ବାବାଜୀ ହୋଇଯାଆନ୍ତି, ସଂସାର ତ୍ୟାଗକରି ବିରାଗୀ ହୋଇଯାଆନ୍ତି, ସେମାନଙ୍କର ପ୍ରାୟତଃ ପତନ ହୋଇଥାଏ ।''

ବସୁଦେବ ପଚାରିଲେ, ''ତେବେ ହେ ମହାରାଜ ! ମୋ' କର୍ତ୍ତବ୍ୟ କ'ଣ ? ମୁଁ କ'ଣ କରିବା ଉଚିତ ? ''

ମହର୍ଷି ବ୍ୟାସଦେବ ହସି ହସି କହିଲେ,'' ରାଜନ୍ ! ଆପଣଙ୍କୁ ଆମେ କି କର୍ତ୍ତବ୍ୟ କଥା କହିବୁ, ଆପଣ ତ ସକଳ ପ୍ରକାର କର୍ତ୍ତବ୍ୟରୁ ବିମୁକ୍ତ ହୋଇଯାଇଛନ୍ତି । ହେ ମହାଭାଗ ! ଆପଣ ତ କୃତକୃତ୍ୟ ହୋଇଯାଇଛନ୍ତି । ଆପଣ ନିଶ୍ଚୟ ପୂର୍ବଜନ୍ମରେ ଅତି ଭକ୍ତିଭାବରେ ଜଗତପତି ଭଗବାନ କୃଷ୍ଣଙ୍କ ପୂଜା କରିଛନ୍ତି । ଏବଂ ତା'ର ପରିଣାମ ସ୍ୱରୂପ ସାକ୍ଷାତ୍ ସଚିଦାନନ୍ଦଘନ ବିଗ୍ରହ ଶ୍ରୀହରି ଆପଣଙ୍କର ପୁତ୍ର ରୂପେ ପ୍ରକଟ ହେଇଛନ୍ତି । ଆପଣ ଓ ଭଗବତୀ ଦେବକୀ ନିଶ୍ଚୟ ପରମ ଭାଗ୍ୟବାନ୍ । ଆପଣ ଦୁହେଁ ଜଗତପତିଙ୍କୁ ପୁତ୍ରରୂପରେ ପାଇଛନ୍ତି । ଆପଣଙ୍କ ପାଇଁ କୌଣସି କର୍ତ୍ତବ୍ୟ ତ ଆଉ ବାକି ରହି ନାହିଁ । ତେବେ ବି ଲୋକାଚାର ଦୃଷ୍ଟିରେ ଆପଣ କିଛି କରିବା ପାଇଁ ଚାହୁଁଛନ୍ତି । ସେଥିପାଇଁ ଆମେ କିଛି କହୁଛୁ ଶୁଣନ୍ତୁ । ବେଦାଧ୍ୟୟନ କରି ଆପଣ ଋଷିଋଣ ପରିଶୋଧ କରିସାରିଛନ୍ତି । ଶ୍ରୀକୃଷ୍ଣ ଓ ବଳରାମଙ୍କୁ ପୁତ୍ର ରୂପେ ପାଇ ଆପଣ ଯଥାର୍ଥ ଭାବରେ ପିତୃଋଣ ମଧ୍ୟ ପରିଶୋଧ କରିସାରିଛନ୍ତି । ଆଉ ରହିଲା ଦେବଋଣ, ଏଥି ନିମନ୍ତେ ଆପଣ ପ୍ରତ୍ୟହ ଅଗ୍ନିହୋମ, ପଞ୍ଚଯଜ୍ଞାଦି ତ କରୁଛନ୍ତି । ଆପଣ ସାମର୍ଥ୍ୟବାନ୍, ଆପଣ ଗୋଟିଏ ବିରାଟ ଯଜ୍ଞାନୁଷ୍ଠାନ କରି ଲୌକିକ ରୀତିରେ ଦେବଋଣରୁ ସର୍ବୋତମ ଭାବରେ ବିମୁକ୍ତ ହୋଇଯାଆନ୍ତୁ ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଏହା ଶୁଣି ବସୁଦେବ ଅତି ପ୍ରସନ୍ନ ହୋଇଗଲେ । ସେ କହିଲେ, ' ହେ ମହର୍ଷିଗଣ ! ଆପଣମାନେ ମୋ ମନର କଥାକୁ ବ୍ୟକ୍ତ କରିଦେଇଛନ୍ତି । କାହିଁକି କରିବେ ନାହିଁ, ଆପଣମାନେ ତ ତ୍ରିକାଳଜ୍ଞ । ଏହି ପୁଣ୍ୟଭୂମି କୁରୁକ୍ଷେତ୍ରରେ ଗୋଟିଏ ମହାନ୍ ଯଜ୍ଞ କରିବାପାଇଁ ମୋର ଇଚ୍ଛା ହେଉଥିଲା । ଏପରି ଏକ ବିଶିଷ୍ଟ ଯଜ୍ଞ ନିମନ୍ତେ ସୁଯୋଗ୍ୟ ଋତ୍ୱିଜ, ସଦସ୍ୟ, ହୋତା, ଉଦ୍‌ଗାତା ତଥା ସଭାସଦ୍‌ମାନଙ୍କୁ କେଉଁଠାରୁ ସଂଗ୍ରହ କରିବି ବୋଲି ମୋ ମନରେ ଚିନ୍ତା ଥିଲା । ଭଗବାନ ମୋ ମନ କଥା ଶୁଣିଛନ୍ତି । ଆପଣମାନେ ସ୍ୱତଃ ପ୍ରବୃତ୍ତ ଏଠାରେ ଉପସ୍ଥିତ ହୋଇଛନ୍ତି । ଏବେ ମୁଁ ଆପଣଙ୍କ ପାଦପଦ୍ମରେ ବାରମ୍ବାର ପ୍ରାର୍ଥନା କରି ନିବେଦନ କରୁଛି ଯେ ଆପଣମାନେ ସମସ୍ତେ ମୋ ନିମନ୍ତ୍ରଣ ରକ୍ଷାକରି, ପ୍ରସ୍ତାବ କରିଥିବା ଯଜ୍ଞର ଋତ୍ୱିଜ ହୁଅନ୍ତୁ ।''

ମହର୍ଷିମାନଙ୍କ ସମ୍ମୁଖରେ ମହାମନା ବସୁଦେବ ଯୋଡ଼ ହସ୍ତରେ ତଥା ଅବନତ ମସ୍ତକରେ ଯେତେବେଳେ ଏପରି ସୁନ୍ଦର ପ୍ରାର୍ଥନା ନିବେଦନ କଲେ, ସେତେବେଳେ ଭଗବାନ୍ ବ୍ୟାସଦେବ କହିଲେ, '' ରାଜନ୍ ! ଆମମାନଙ୍କ ମଧ୍ୟରେ ଏପରି ଅସଂଖ୍ୟ ମହର୍ଷି ଅଛନ୍ତି ଯେଉଁମାନେ ଯାଗଯଜ୍ଞାଦି ଆଦୌ ବରଣ କରନ୍ତି ନାହିଁ । ତେବେ ଅନବରତ ଭଗବାନଙ୍କର

ଦର୍ଶନ ପାଇବାର ସୁଯୋଗ ଥିବାରୁ ଆମେ ସମସ୍ତେ ଆପଣଙ୍କ ପ୍ରସ୍ତାବିତ ଯଜ୍ଞର ଋତ୍ୱିଜ ହେଲୁ । ଆପଣ ଆମମାନଙ୍କୁ ବିଧିବତ୍ ବରଣ କରନ୍ତୁ ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ମହର୍ଷିମାନେ ଋତ୍ୱିଜ ହେବାପାଇଁ ସମ୍ମତି ଦେଇ ଦେବା କ୍ଷଣି ବସୁଦେବ ଉତ୍‌ଫୁଲ୍ଲିତ ହୋଇଗଲେ । ସେ ଅତି ଶୀଘ୍ର ଯଜ୍ଞ ସମ୍ବନ୍ଧୀୟ ସମସ୍ତ ସାମଗ୍ରୀ ଠିକ କଲେ । ଏକ ସୁବିଶାଳ ଯଜ୍ଞ ମଣ୍ଡପ ନିର୍ମାଣ କରାଗଲା । ଧ୍ୱଜ, ପତାକା, ତୋରଣ, ମାଳଆଦିରେ ତାହାକୁ ସୁସଜ୍ଜିତ କରାଗଲା । ତେଜସ୍ୱୀ ବସୁଦେବ ବିଧିବତ୍ ଯଜ୍ଞ ନିମନ୍ତେ ଦୀକ୍ଷା ନେଲେ । ସେହି ପରମ ପବିତ୍ର କୁରୁକ୍ଷେତ୍ରରେ ଯଜ୍ଞ ନିମନ୍ତେ ଜଗତ ପ୍ରସିଦ୍ଧ ମହର୍ଷିମାନଙ୍କୁ ଋତ୍ୱିଜ ରୂପରେ ବରଣ କଲେ । ଏବେ ବସୁଦେବଙ୍କ ଯଜ୍ଞ ମହୋତ୍ସବ ଯେପରି ହେବ ତାହା ମୁଁ ବର୍ଣ୍ଣନା କରିବି । ଆପଣମାନେ ଏହି ମଙ୍ଗଳମୟ ପ୍ରସଙ୍ଗକୁ ଆନନ୍ଦ ଉଲ୍ଲାସର ସହିତ ଶ୍ରବଣ କରନ୍ତୁ ।''

## ଛପ୍‌ପୟ

*ନାରଦ ବୋଲେ ମୁନିଗଣ ! ଜାମେଂ ଅଚରଜ ନାହୀଂ ।*
*ରହେ ସଂଗ ନିତ ହୋହି ନ ଶ୍ରଦ୍ଧା ତାକେ ମାହୀଂ ॥*
*ସୁନି ମୁନି ବୋଲେ - '' ପ୍ରଭୁପ୍ରସାଦ ହିତ କର୍ମ କରେଂ ଜେ ।*
*ହୋହି ନ ତିନକୁଁ ଦୋଷ ବନ୍ଧ ଜଗ ନହୀଂ ପରେଂ ତେ ॥*
*ସୁରରିନ, ଋଷିରିନ, ପିତୃରିନ, ରହେଂ ସବନି ପୈ ତୀନ ରିନ ।*
*ଯଜ୍ଞ ଔର ଅଧ୍ୟୟନ ସୁତ, କରି ହୋବେଂ ସବ ଦ୍ୱିଜ ଉରିନ ॥*



# ମହାନ୍ ଯଜ୍ଞ-ମହୋତ୍ସବ

**ତାଭିର୍ଦୁକୂଲବଲୟୈର୍ହାରନୂପୁରକୁଣ୍ଡଲୈଃ ।**
**ସ୍ୱଲଂକୃତାଭିର୍ବିବଭୌ ଦୀକ୍ଷିତୋଽଜିନସଂବୃତଃ ॥☆**

(ଶ୍ରୀ ଭା. ୧୦ସ୍କ. ୮୪ ଅ. ୪୮ ଶ୍ଳୋକ)

## ଛପ୍ପୟ

*ସୂତ ସର୍ବେଶ୍ୱର କରେ କର୍‌ୟୋ ଅଧ୍ୱେନ ଯଥାମତି ।*
*କରୟୋ ନ ମଖ, ଅବ କରୌ, ଶୂରସୁତ ମୁନି ହରଷେ ଅତି ॥*
*ମଖ କରବାବୌ ମୋହି ମୁନିନି ତେଂ ବିନତୀ କୀହ୍ନୀ ।*
*ସବ ଋଷି ଋତ୍ୱିଜ କରେ ଯଜ୍ଞ କୀ ଦୀକ୍ଷା ଲୀହ୍ନୀ ॥*
*ସଜ ବଜି ନରନାରୀ ଫିରହିଂ, ମଖ ହିତ ଲାବାହିଂ ଫୂଲ ଫଲ ।*
*ହରି ଦରଶନ କେ ଲୋଭ ବଶ, ରହେ ତହାଁ ଋଷି ମୁନି ସକଲ ॥*

ତୀର୍ଥକୁ ଯିବା ଫଳରେ ଘର କରଣା କାମ ତ ନଥାଏ, ଅନେକ ସମୟ ମିଳେ, ସେହି ସମୟକୁ ଯିଏ ଏଣୁ ତେଣୁ କଥାବାର୍ତ୍ତାରେ ଅତିବାହିତ କରିଦିଏ ତାକୁ ତୀର୍ଥର ପୁଣ୍ୟଫଳ ମିଳେ ନାହିଁ । ତୀର୍ଥରେ ରହିଥିବା ସମୟରେ ସମୟର ସଦୁପଯୋଗ ପୁଣ୍ୟସ୍ଥାନ ଦର୍ଶନରେ, ସାଧୁ ସନ୍ଥଙ୍କ ସତ୍‌ସଙ୍ଗରେ, ଆଉ ଯଜ୍ଞାଦି ଧାର୍ମିକ ମହୋତ୍ସବରେ ଅତିବାହିତ କଲେ ପୁଣ୍ୟର ପ୍ରଭାବ ବୃଦ୍ଧି ହୋଇଥାଏ । ତୀର୍ଥରେ ସାଧୁସନ୍ଥଙ୍କ ସନ୍ନିଧିରେ ଯେଉଁ ମହୋତ୍ସବ ହୁଏ ସେଥିରେ ସମସ୍ତେ ସଂଶ୍ଲିଷ୍ଟ ହୋଇଯାଆନ୍ତି, ସମସ୍ତେ ବ୍ୟସ୍ତ ରୁହନ୍ତି । ସମସ୍ତଙ୍କ ହୃଦୟରେ ଉତ୍ସାହ ଭରପୂର ରହିଥାଏ । ଯଜ୍ଞ ତଥା ଉତ୍ସବ ନିମନ୍ତେ ଦ୍ରବ୍ୟ ସଂଗ୍ରହ ଓ ଅନ୍ୟାନ୍ୟ କାର୍ଯ୍ୟରେ ତନ୍ମୟ ରହି ସମୟ କିପରି ଚାଲିଯାଏ ଜଣାପଡ଼େ ନାହିଁ । ଏପରି ସୁଖଦ ସମୟ ତ ଅତିବାହିତ ହୋଇଯାଏ, ଅନନ୍ତ ଗର୍ଭରେ ଲୀନ ହୋଇଯାଏ, ହେଲେ ହୃଦୟ ପଟଳରେ ଏକ ଅଭୁଲା ମିଠା ସ୍ମୃତି ସବୁଦିନ ପାଇଁ ରହିଯାଏ । ଅନ୍ୟ ସମୟରେ ଯେତେବେଳେ ସେହି ଉତ୍ସବ କଥା ମନେପଡ଼େ ହୃଦୟ ଉତ୍‌ଫୁଲ୍ଲିତ ହୋଇଉଠେ ।

---

☆ ଦୀକ୍ଷିତ ହୋଇ ବୃଷ୍ଣିବୀର । ଭୂଷିତ ନାନା ଅଳଙ୍କାର ॥
ନକ୍ଷତ୍ର ମଧ୍ୟେ ଯେହ୍ନେ ଶଶୀ । ତେମନ୍ତ ବସୁଦେବ ଦିଶି ॥
ବସୁଦେବର ନାରୀଗଣେ । ନାନା ଭୂଷଣ ଆଭରଣେ ॥
ଦିଶନ୍ତି ରୂପ ଅନୁପମ । ଆବୃତ କୃଷ୍ଣମୃଗ ଚର୍ମ ॥
ସଭାଜନଙ୍କ ମଧ୍ୟେ ଥାଇ । କିବା ଉପମା ଦେବି ମୁହିଁ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୯୦ ଅ.)

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ମହାମନା ବସୁଦେବ ମହର୍ଷିମାନଙ୍କ ଅନୁମତି କ୍ରମେ ଯଜ୍ଞ ନିମିତ୍ତ ଦୀକ୍ଷା ନେଲେ । ଯାଦବଙ୍କ ଶିବିରରେ ଏକଥା ପ୍ରଚାର ହୋଇଯିବା କ୍ଷଣି ଆନନ୍ଦ ଉଲ୍ଲାସର ଢେଉ ଖେଳିଗଲା । ଯାଦବମାନେ ନୂତନ ସୁନ୍ଦର ବସ୍ତ୍ର ପରିଧାନ କରି, କମଳ ପୁଷ୍ପର ମାଳାରେ ବିମଣ୍ଡିତ ହୋଇ ଚାରିଆଡ଼େ ମନଖୋଲା ବିଚରଣ କରିବାରେ ଲାଗିଲେ । ସମସ୍ତେ ସୁବାସିତ ଜଳରେ ସ୍ନାନ କରି, ମୁଣ୍ଡ କୁଣ୍ଡାଇ, ତିଳକ ଧାରଣ କରି, ସୁନ୍ଦର ବସ୍ତ୍ର ପରିଧାନ କରି, କଣ୍ଠରେ ପଦ୍ମହାର ଲମ୍ୱାଇ ଅତି ପ୍ରସନ୍ନତାର ସହିତ ଯଜ୍ଞ କାର୍ଯ୍ୟରେ ଲାଗିଗଲେ । ଅନ୍ୟାନ୍ୟ ରାଜା ମହାରାଜାମାନେ ବହୁମୂଲ୍ୟ ବସ୍ତ୍ର ଆଭୂଷଣରେ ବିଭୂଷିତ ହୋଇ ଯଜ୍ଞସ୍ଥଳୀର ଶୋଭା ବର୍ଦ୍ଧନ କରିବାରେ ଲାଗିଲେ । ବସୁଦେବଙ୍କ ପତ୍ନୀମାନଙ୍କ ଶୋଭା ତ ଥିଲା ଅନୁପମ । ସେମାନେ ଅଙ୍ଗରାଗ ଚନ୍ଦନାଦି ଲଗାଇ ସୁବର୍ଣ୍ଣ ପଦକ ଆଦି ଆଭୂଷଣରେ ବିଭୂଷିତା ହୋଇ ନିଜ ନିଜର ପଦ୍ମଭୂଷଣ କୋମଳ ହସ୍ତରେ ଯଜ୍ଞ ସମ୍ୱନ୍ଧୀୟ ଦ୍ରବ୍ୟ ନିଁଆ ଅଣା କରିବାର ଲାଗିଲେ । ସମସ୍ତଙ୍କ ହୃଦୟରେ ଅପୂର୍ବ ଆନନ୍ଦ ଭରପୂର ହୋଇଯାଇ ଥିଲା । ଚତୁର୍ଦ୍ଦିଗରେ ମଙ୍ଗଳ ଗୀତିକା ଗୁଞ୍ଜରୀ ଉଠୁଥିଲା । ବେଦ ମନ୍ତ୍ରର ଧ୍ୱନୀରେ ଗଗନ ପବନ ପ୍ରତିଧ୍ୱନିତ ହେବାରେ ଲାଗିଥିଲା । ନାନା ପ୍ରକାର ବାଦ୍ୟର ଝଙ୍କାରରେ ପରିବେଶ ଝଙ୍କୃତ ହେଉଥିଲା । ମୃଦଙ୍ଗ, ପଟହ, ଶଙ୍ଖ, ଭେରୀ ଆଉ ଆନକ ଆଦି ବାଦ୍ୟ ନିଜସ୍ୱ ବିଭିନ୍ନ ଧ୍ୱନୀକୁ ଏକ ତାନ ଲୟରେ ବିଚିତ୍ର ସ୍ୱର ଲହରୀ ସୃଜନ କରୁଥିଲା । ଅପ୍‌ସରାଗଣ ନୃତ୍ୟ କରିବାରେ ଲାଗିଥିଲେ । ବାଦ୍ୟକାରଗଣ ବାଦ୍ୟ ବଜାଇବାରେ ଲାଗିଥିଲେ, ସଙ୍ଗୀତଜ୍ଞମାନେ ଗୀତ ବୋଲିବାରେ ଲାଗିଥିଲେ, ସ୍ତୁତିକାରମାନେ ସ୍ତୁତି କରିବାରେ ଲାଗିଥିଲେ ।

ମହାମନା ବସୁଦେବ ତାଙ୍କର ତ୍ରୟୋଦଶ ପତ୍ନୀଙ୍କ ଗହଣରେ ଏପରି ଶୋଭନୀୟ ଦେଖାଯାଉଥିଲେ ଯେ, ସତେ ଯେପରି ସପ୍ତବିଂଶତି ନକ୍ଷତ୍ରରେ ବିମଣ୍ଡିତ ଚନ୍ଦ୍ର ରାଜସୂୟ ଯଜ୍ଞରେ ବସିଛନ୍ତି । ବସୁଦେବଙ୍କ ସ୍ତ୍ରୀମାନେ ବିଧିପୂର୍ବକ ସଜେଇ ହୋଇ ଷୋଡ଼ଶ ଶୃଙ୍ଗାରରେ ବସିଥିଲେ । ସେମାନେ ତୈଳ ହଳଦୀ ଆଦି ଲଗାଇ ସ୍ନାନ କରିଥିଲେ, ଆଉ ଅଙ୍ଗରାଗ ଆଦିରେ ଅଙ୍ଗକୁ ସୁଶୋଭିତ କରିଥିଲେ । ବସୁଦେବ ତାଙ୍କ ପତ୍ନୀମାନଙ୍କ ସହିତ ବସ୍ତ୍ରାଭୂଷଣ ପରିଧାନ କରି ଯେଉଁଭଳି ସୁଶୋଭିତ ଦେଖାଯାଉଥିଲେ, ସେଭଳି ସେମାନେ ଯଜ୍ଞରେ ବରଣ କରି ସମସ୍ତ ଋତ୍ୱିଜ ଆଉ ସଦସ୍ୟମାନଙ୍କୁ ବି ରତ୍ନ ଜଟିତ ଆଭୂଷଣ ତଥା ରେଶମ ବସ୍ତ୍ର ଧାରଣକରି ସମ୍ମାନିତ କଲେ । ବହୁମୂଲ୍ୟ ବସ୍ତ୍ରାଭୂଷଣ ପରିଧାନକରି ଋତ୍ୱିଜମାନେ ଓ ସଦସ୍ୟମାନେ ଏପରି ଦେଖାଯାଉଥିଲେ, ଯେପରି ଦେବରାଜ ଇନ୍ଦ୍ରଙ୍କ ଯଜ୍ଞରେ ଦିବ୍ୟ ବିପ୍ରଗଣ ବିରାଜମାନ କରିଛନ୍ତି । ଭଗବାନ ଶ୍ରୀକୃଷ୍ଣ ଓ ଶ୍ରୀବଳରାମ ବି ନିଜ ନିଜ ପତ୍ନୀମାନଙ୍କ ସହିତ

ତଥା ସନ୍ତାନମାନଙ୍କ ସହିତ ସେହି ଯଜ୍ଞର ଶୋଭାବର୍ଦ୍ଧନ କରୁଥିଲେ । ସେତେବେଳେ ଜଣା ପଡୁଥିଲା, ସତେ ଯେପରି ଜୀବ ଆଉ ଈଶ ଏକାଠି ବସିଛନ୍ତି ।

ଶ୍ରୀବସୁଦେବ ବ୍ରାହ୍ମଣମାନଙ୍କ ଦ୍ୱାରା ବିଧିପୂର୍ବକ ପ୍ରାକୃତ ତଥା ବୈକୃତ ଯଜ୍ଞ କଲେ । ପ୍ରାକୃତ ଯଜ୍ଞ ଯଥା ଜ୍ୟୋତିଷ୍ଟୋମ, ଦର୍ଶ, ତଥା ପୌର୍ଣ୍ଣମାସ ଯଜ୍ଞ; ଆଉ ବୈକୃତି ଯଜ୍ଞ ବସୁଦେବ କଲେ । ଯଜ୍ଞ କାର୍ଯ୍ୟ ଖୁବ୍ ଧୁମଧାମରେ ପ୍ରଚାରିତ ହୋଇଥିଲା । ଲକ୍ଷ ଲକ୍ଷ ଲୋକ ଏହି ଯଜ୍ଞ ଦେଖିବାପାଇଁ ଆସିଥିଲେ । ପ୍ରତ୍ୟେକ ଦର୍ଶନାର୍ଥୀ ଆଗନ୍ତୁକଙ୍କୁ ଯଥାବିଧି ସ୍ୱାଗତ ସତ୍କାର ମଧ୍ୟ କରାଗଲା । ନାନା ପ୍ରକାର ଷଡ଼ରସ ବ୍ୟଞ୍ଜନ ଆଦି ସହିତ ସେବକମାନେ ଅନବରତ ବୁଲିବୁଲି ଦର୍ଶକମାନଙ୍କୁ ଅତି ଆଗ୍ରହର ସହିତ ଭୋଜନ ପରିବେଷଣ କରିବାରେ ଲାଗିଥିଲେ । ଏପରି ଜଣେ ବୋଲି ଯାଚକ ଯଜ୍ଞସ୍ଥଳୀରୁ ଫେରି ନଥିଲେ ଯିଏ ସେମାନଙ୍କର ଇଚ୍ଛିତ ବସ୍ତୁ ପାଇନଥିଲେ । ଯଜ୍ଞ ସମାପ୍ତ ହେବାପରେ ଶୂରନନ୍ଦନ ବସୁଦେବ ଋତ୍ୱିଜ ବିପ୍ରମାନଙ୍କୁ ଶାସ୍ତ୍ରାନୁସାରେ ସୁବର୍ଣ୍ଣ, ମଣି, ମାଣିକ୍ୟ ତଥା ଅନ୍ୟାନ୍ୟ ବହୁମୂଲ୍ୟ ଦକ୍ଷିଣା ପ୍ରଦାନ କରେ । ଅନେକ ବସ୍ତ୍ରାଯୁକ୍ତ ଦୁଧିଆଳୀ ଗାଈ, ଅନ୍ନ, ବସ୍ତ୍ର, ରୂପବତୀ, ଗୁଣବତୀ, ଶୀଳବତୀ ତଥା ସଦ୍‌କୁଳୋଦ୍‌ଭୂତା ଅନେକ ସୁନ୍ଦରୀ କନ୍ୟାଙ୍କୁ ଦକ୍ଷିଣାରୂପରେ ଦାନ ଦେଲେ ।

''ଏହାପରେ ମହର୍ଷିମାନେ ବସୁଦେବଙ୍କୁ ପତ୍ନୀସଂଯୋଜ କର୍ମ କରାଇଲେ ଓ ପରେ ପରେ ଯଜ୍ଞ ସମାପ୍ତରେ ହେଉଥିବା ଅବଭୃତ ସ୍ନାନ କଲେ । ମହର୍ଷିମାନେ ଯଜ୍ଞର ପ୍ରଧାନ ଯଜମାନ ବସୁଦେବଙ୍କୁ ସର୍ବାଗ୍ରରେ ରଖି ବିବିଧ ପ୍ରକାର ବାଦ୍ୟ ସହିତ, ଖୁବ୍ ଉତ୍ସାହର ସହିତ ପର୍ଶୁରାମଙ୍କ ଦ୍ୱାରା ରଚିତ ହୋଇଥିବା କୁଣ୍ଡରେ ସ୍ନାନ କଲେ । ଏହି ସ୍ନାନ ସମୟର ଦୃଶ୍ୟ ଥିଲା ବଡ଼ ଅଲୌକିକ । ଯଜ୍ଞୀୟ ଘଟକୁ ମସ୍ତକରେ ଧାରଣ କରି ଶ୍ରୀବସୁଦେବ ତାଙ୍କର ଗୃହିଣୀମାନଙ୍କ ସହିତ ଯାଉଥିଲେ । ସହସ୍ର ସହସ୍ର ରାଜା ତାଙ୍କୁ ଅନୁସରଣ କରୁଥିଲେ । ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଆଉ ଶ୍ରୀ ବଳରାମ ତାଙ୍କ ପଛେ ପଛେ ଚାଲିଥିଲେ । ସୂତ, ମାଗଧ, ବନ୍ଦୀମାନେ ଏମାନଙ୍କ ପ୍ରଶସ୍ତି ଗାନ କରିକରି ଚାଲିଥିଲେ । ଯଦୁବଂଶୀୟଙ୍କ ମଧ୍ୟରେ ସହସ୍ରାର୍ଜୁନ, ମଧୁ, ବୃଷ୍ଣି, ଭୋଜ, ଶୂରସେନ, କୁକୁର, ଦଶାର୍ହ ତଥା ଅନ୍ୟାନ୍ୟ ପ୍ରସିଦ୍ଧ ପ୍ରସିଦ୍ଧ ଭୂପତି ଥିଲେ । ସେମାନଙ୍କ ପ୍ରଶସ୍ତି ଗାନ କରି କରି, ସେମାନଙ୍କ ପବିତ୍ରକୀର୍ତ୍ତି ଗାନ କରି କରି ଭାଟ ମାଗଧ ମାନେ ଚାଲିଥିଲେ । ସ୍ନାନ ସମାପନ କରିବା ପରେ ପ୍ରସନ୍ନତାର ସହିତ ଶ୍ରୀ ବସୁଦେବ ସେହି ସ୍ତୁତିଜୀବି ସୂତ, ମାଗଧ, ଆଉ ବନ୍ଦୀଜନଙ୍କୁ ବସ୍ତ୍ର, ଅଳଙ୍କାର ତଥା ସୁବର୍ଣ୍ଣ ମୁଦ୍ରା ପ୍ରଚୁର ଦାନ କଲେ । ସେହି ଯଜ୍ଞକୁ ଆସିଥିବା ପ୍ରତ୍ୟେକ ବର୍ଣ୍ଣ, ପ୍ରତ୍ୟେକ ଜାତିର ପଶୁ ଯଥୋଚିତ ସମ୍ମାନିତ ତଥା ସରୋକ ପ୍ରାପ୍ତ ହୋଇ ବସ୍ତୁତଃ ସମସ୍ତେ ସନ୍ତୁଷ୍ଟ ହୋଇଥିଲେ । ଏପରି ଶ୍ୱାନ ସୂକରଙ୍କୁ ମଧ୍ୟ ସନ୍ତୁଷ୍ଟ କରାହୋଇଥିଲା ।

ଏହିଭଳି ଭାବରେ ଯଜ୍ଞରୂପୀ ମହାସମୁଦ୍ରକୁ ଶ୍ରୀକୃଷ୍ଣଚନ୍ଦ୍ରଙ୍କ କୃପାଲାଭକରି ଶ୍ରୀ ବସୁଦେବ ନିର୍ବିଘ୍ନରେ ପାରି ହୋଇଯାଇ ଥିଲେ । ଶ୍ରୀ ବସୁଦେବ ସେହି ଯଜ୍ଞରେ ତାଙ୍କର ପ୍ରତ୍ୟେକ ଭଗ୍ନୀଙ୍କୁ ଏବଂ ପୌତ୍ରାଦିଙ୍କୁ, ପରିବାରବର୍ଗଙ୍କୁ ଓ ସମ୍ବନ୍ଧୀୟଙ୍କୁ ନିମନ୍ତ୍ରଣ କରିଥିଲେ । ଯଜ୍ଞ ସମାପ୍ତ ହେବା ଭିତରେ ଯେତେ ଲୋକ ଆସିଥିଲେ ସମସ୍ତଙ୍କୁ ଯଜ୍ଞ ସମାପ୍ତ ହେବା ପରେ ଉପଯୁକ୍ତ ଓ ଯଥାଯୋଗ୍ୟ ସମ୍ମାନର ସହିତ ବିଦାକି ପ୍ରଦାନପୂର୍ବକ ମେଲାଣି ଦିଆ ହୋଇଥିଲା । ମାନ୍ୟଗଣ୍ୟ ଭଗ୍ନୀ ଓ ତଦ୍‌ସଂପର୍କୀୟଙ୍କୁ ରେଶମ ବସ୍ତ୍ର ଉତ୍ତରୀୟ ପ୍ରଦାନ କରାଯାଇଥିଲା । ଏହିଭଳି ନିଜର ବନ୍ଧୁ ବାନ୍ଧବ ତଥା ଆତ୍ମୀୟ ସ୍ୱଜନଙ୍କୁ, ସେମାନଙ୍କ ସ୍ତ୍ରୀ ତଥା ସନ୍ତାନମାନଙ୍କୁ ଯଥାଯୋଗ୍ୟ ବସ୍ତୁ ଅତ୍ୟଧିକ ସ୍ନେହର ସହିତ ପ୍ରଦାନ କରି ପ୍ରୀତିପୂର୍ଣ୍ଣ ମେଲାଣି ଦିଆ ହୋଇଥିଲା । ଯଜ୍ଞରେ ଯେଉଁ ଋତ୍ୱିକ ଆଉ ସଦସ୍ୟମାନେ କାମ କରିଥିଲେ ସେମାନେ ବିପୁଳ ଦକ୍ଷିଣା ପାଇ ସନ୍ତୁଷ୍ଟ ହୋଇଥିଲେ । ଦେବତାମାନେ ନିଜ ନିଜର ଭୋଗ ପାଇ, ମନୁଷ୍ୟମାନେ ଭୋଜନ, ଧନାଦି ଦ୍ରବ୍ୟ ପାଇ, ଭୂତଗଣ ବଳି ପ୍ରାପ୍ତ ହୋଇ, ପିତରମାନେ ଶ୍ରାଦ୍ଧାନ୍ନ ଓ ତର୍ପଣ ଜଳ ପାଇ, ତଥା ଚାରଣମାନେ ସମ୍ମାନ ଆଉ ପାରିତୋଷିକ ପାଇ ଅତି ସନ୍ତୁଷ୍ଟ ହେଲେ । ଏମାନେ ସମସ୍ତେ ଯଜ୍ଞ ସମାପ୍ତ ହୋଇଯିବାପରେ ଭଗବାନଙ୍କ ଅନୁମତିକ୍ରମେ ସ୍ୱ ସ୍ୱ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ । ସେମାନେ ଯାଉଥିବା ବେଳେ ମାର୍ଗରେ ଯଜ୍ଞର ପ୍ରଶଂସା କଥୋପକଥନ କରି ଯାଉଥିଲେ । କିଏ କହୁଥାଏ - 'ଏପରି ଯଜ୍ଞ ତ ଆମେ ପୂର୍ବରୁ କେବେ ଦେଖିନଥିଲେ ।' ଆଉ କେହି କହୁଥିଲେ, 'କାହିଁକି ହେବନାହିଁ ଯେ ? ଯେଉଁଠାରେ ସ୍ୱୟଂ ଲକ୍ଷ୍ମୀନାରାୟଣ ବିରାଜମାନ କରୁଥାନ୍ତି ସେଠାରେ କୌଣସି କଥାର ଅଭାବ ରହିପାରେ କି ? ଭଗବାନ ତ ହେଉଛନ୍ତି ଏହି ସଚରାଚର ଜଗତର ଏକମାତ୍ର ସ୍ୱାମୀ । ଋଷିମାନେ, ସିଦ୍ଧମାନେ ସମସ୍ତେ ଯୋଡ଼ହସ୍ତରେ ତ ଅନବରତ ସେବା ନିମନ୍ତେ ତତ୍ପର ରହିଥିବା ସ୍ୱାଭାବିକ୍ କଥା ।'

ସମସ୍ତେ ଚାଲିଯିବା ପରେ କୌରବ ବଂଶୀୟ ରାଜାମାନେ ଶ୍ରୀ ଭଗବାନଙ୍କର ଅନୁମତି ପ୍ରାର୍ଥୀ ହେଲେ । ଯାହାଙ୍କର ଯେତେ ଅଧିକ ଘନିଷ୍ଠତା ଥିଲା ତାଙ୍କୁ ସେତେ ବିଳମ୍ବରେ ବିଦା କରାଗଲା । ଅନ୍ୟମାନେ ଚାଲିଯିବା ପରେ ଧୃତରାଷ୍ଟ୍ର, ଧର୍ମରାଜ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ, ସହଦେବ, ଦ୍ରୋଣାଚାର୍ଯ୍ୟ, କୁନ୍ତୀ ତଥା ଅନ୍ୟାନ୍ୟ ଘନିଷ୍ଠ ସମ୍ବନ୍ଧୀମାନେ ଅଶ୍ରୁଳ ଭାବାବେଗରେ ମେଲାଣି ନେଲେ । ବିଦାୟ ସମୟରେ ସେମାନଙ୍କର ଗାଢ଼ ଆଲିଙ୍ଗନ ଦୃଶ୍ୟ ଥିଲା ହୃଦୟ ଓ ମର୍ମସ୍ପର୍ଶୀ ।

ଋଷିମାନଙ୍କ ମଧ୍ୟରେ ଭଗବାନ୍ ବ୍ୟାସଦେବ ଓ ଦେବର୍ଷି ନାରଦ ସମସ୍ତଙ୍କ ପରେ ବିଦାୟ ନେଲେ । ଭଗବାନଙ୍କ ଦର୍ଶନ ଲାଳସାରେ ସେମାନେ ଅଧିକ କିଛି ଦିନ ରହିଗଲେ ।

ପରିଶେଷରେ ସେମାନେ ବି ଭଗବାନଙ୍କର ଅନୁମତି ନେଇ, ତଥା ବିୟୋଗ ବ୍ୟଥାକୁ ବ୍ୟାକୁଳତାର ସହିତ ସହ୍ୟ କରି, ଭଗବାନଙ୍କୁ ହୃଦୟରେ ଧାରଣ କରି ବିଦାୟ ନେଲେ ।

ଉଗ୍ରସେନ, ବସୁଦେବ ତଥା ଅନ୍ୟ ଯାଦବ ମୁଖ୍ୟମାନେ ନନ୍ଦଙ୍କୁ ଅଭୂତ ପୂର୍ବ ସ୍ୱାଗତ ସମ୍ବର୍ଦ୍ଧନା ଦେଉଥିଲେ । ତାଙ୍କୁ ସମ୍ମାନ, ବସ୍ତ୍ର, ଆଭୂଷଣ ତଥା ବିବିଧ ପ୍ରକାରର ସୁନ୍ଦର ଓ ମୂଲ୍ୟବାନ ସାମଗ୍ରୀ ଉପହାର ଦେଇଥିଲେ । ଗୋପୀ-ଗୋପାଳଙ୍କୁ ଯଥୋଚିତ ସୁନ୍ଦର ସୁନ୍ଦର ବସ୍ତ୍ରାଭୂଷଣ ଦିଆ ହୋଇଥିଲା । ଯଜ୍ଞ ସମାପ୍ତ ହୋଇଯିବା ପରେ ରାଜାମାନେ ତଥା ଆଗନ୍ତୁକ ମାନେ ବିଦାୟ ହୋଇଯିବା ପରେ ଦିନେ ନନ୍ଦ ବସୁଦେବଙ୍କୁ କହିଲେ, ' ଭାଇ ! ବ୍ରଜରୁ ଆମେ ଆସିବାର ଅନେକ ଦିନ ହୋଇଗଲାଣି । ଆମକୁ ଯିବା ନିମନ୍ତେ ଅନୁମତି ମିଳିଯିବା ଉଚିତ ବୋଧେ ।'

ବସୁଦେବ କହିଲେ, '' ଭାଇ ! ଏତେ ବ୍ୟସ୍ତ କାହିଁକି ହେଉଛନ୍ତି ? ଆଉ କିଛି ଦିନ ରୁହନ୍ତୁ, ଯିବେ ।' ଏପରି କଥା ଶୁଣି ନନ୍ଦ ନୀରବ ହୋଇଗଲେ । କିଛି ଦିନ ପରେ ନନ୍ଦ ପୁନର୍ବାର ଅନୁମତି ମାଗିବାରୁ ତାହା ମଧ୍ୟ ବସୁଦେବ ଆଡ଼େଇ ଦେଲେ ।

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଆଜି ନାହିଁ କାଲି ଦେଖିବା, ଏପରି କହି କହି ବସୁଦେବ ନନ୍ଦଙ୍କୁ ସେଠାରେ ତିନିମାସ କାଳ ଅଟକାଇ ଦେଲେ । ପରିଶେଷରେ ସେମାନେ କିପରି ଅତି ଦୁଃସହ ଦୁଃଖର ସହିତ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଓ ଯାଦବଙ୍କଠାରୁ ପୃଥକ ହେଲେ ସେହି ପ୍ରସଙ୍ଗ କହୁଛି ଶୁଣନ୍ତୁ ।''

## ଛପ୍ପୟ

*ଅନୁପମ ଉତସବ ଭୟୋ ସବନି କୋ ସ୍ୱାଗତ କୀନ୍ହୋ ।*
*ବହୁତ ଧେନୁ ଧନ ଧାନ ଦାନ ବିପ୍ରନି କୂଁ ଦୀନ୍ହୋ ।।*
*ମଖ ମହଁ ସୁର ଋଷି ପୂଜି ଶୂର ସୁତ ଅତି ହରଷାୟେ ।*
*ପାଇ ମାନ ସୁର ବିପ୍ର ସକଲ ନିଜ ଧାମ ସିଧାୟେ ।।*
*ପୂଜିତ ହ୍ୱୈ କେଂ ନନ୍ଦଜୀ, ସବ ଈ ଗୋପୀ ଗୋପ ଗନ ।*
*ରହେ କଛୁକ ଦିନ ସଂଗ ତହଁ, ପୁନି କୀୟୋ ବ୍ରଜ କୂଁ ଗମନ ।।*



# ଗୋପୀ-ଗୋପାଳ ବିଦାୟ ନେଲେ

**ନନ୍ଦୋ ଗୋପାଶ୍ଚ ଗୋପ୍ୟଶ୍ଚ ଗୋବିନ୍ଦଚରଣାମ୍ବୁଜେ ।**
**ମନଃ କ୍ଷିପ୍ତଂ ପୁନର୍ହର୍ତ୍ତୁମନୀଶା ମଥୁରାଂ ଯୟୁଃ ।।☆**

(ଶ୍ରୀ ଭା. ୧୦ମ ସ୍କ. ୮୪ ଅ. ୬୯ ଶ୍ଳୋକ)

### ଛପ୍ପୟ

*ନିତ ପ୍ରତି ଛକରା ଜୋରି ଚଲହିଁ ଜବ ଗୋପ ନୟନ ଭରି ।*
*ଆଜୁ ନହୀଁ ଅବ କାଲ୍ହି ଜାଇଁ, ଯୋଁ କହି ରୋକେଂ ହରି ।।*
*ତୀନ ମାସ ୟୋଂ ରହେ ନିକଟ ଜବ ବରଷା ଆଈ ।*
*ଭୟେ ବିବଶ ବଲ ଶ୍ୟାମ କଷ୍ଟ ତେଂ କରୀ ବିଦାଈ ।।*
*ନନ୍ଦ ଯଶୋଦା ସୁତନି କୁଁ, ପୁନି ପୁନି ହିୟେ ଲଗାଇକେଂ ।*
*କଚ ଭିଗବତ ଚୂମତ ବଦନ, ନୟନନି ନୀର ବହାଇକେଂ ।।*

ବିୟୋଗ, ବିଚ୍ଛେଦ ନହେଲେ ସଂଯୋଗ ସୁଖର ପୂର୍ଣ୍ଣ ଅନୁଭୂତି ହୋଇପାରେ ନାହିଁ । ଏହି ସଂସାର ଦ୍ୱନ୍ଦ୍ୱ ଉପରେ ଅବସ୍ଥିତ । ଉତ୍ଥାନ-ପତନ, ସୁଖ-ଦୁଃଖ, ଜୀବନ-ମରଣ, ତଥା ଯଶ-ଅପଯଶ ଆଦି ଗୋଟିଏ ଅନ୍ୟକୁ ଅପେକ୍ଷା କରି ରହିଥାଏ । ଗୋଟିଏକୁ ଛାଡ଼ି ଅନ୍ୟଟିର ଅସ୍ତିତ୍ୱ ନାହିଁ କି ଅନୁଭୂତି ବି ନାହିଁ । ଏହା ହିଁ ସଂଯୋଗ-ବିୟୋଗ ନିମନ୍ତେ ପ୍ରଯୋଜ୍ୟ ହୋଇଥାଏ । ଯାହା ସହିତ ସଂଯୋଗ ହୋଇଥାଏ, ତା ଠାରୁ ବିୟୋଗ ନିଶ୍ଚୟ ହୋଇଥାଏ । ସଂଯୋଗ ଓ ବିୟୋଗ ଶୃଙ୍ଖଳାର ଦୁଇଟି ପାଖ, ଯାହା ପରସ୍ପରକୁ ଜାବୋଡ଼ି ଧରି ରଖିଥାଏ । ସଂଯୋଗରେ ଯେପରି ସୁଖ ହୁଏ, ବିୟୋଗରେ ସେହିପରି ଦୁଃଖ ବି ହୁଏ । ପୁନର୍ମିଳନର ଆଶା ଯଦି ନଥାନ୍ତା ତେବେ ବିୟୋଗଜନିତ ଦୁଃଖ ସହ୍ୟକରି କେହି ଜୀବିତ ରହି ପାରନ୍ତେ ନାହିଁ । ପ୍ରିୟ ବିୟୋଗର ସମ୍ଭାବନାରେ ହୃଦୟର କିପରି ଦଶା ହୋଇଥାଏ ତାହା ଅକଥନୀୟ । ଯଦି ସେହି ବିୟୋଗ ଅଥବା ବିଚ୍ଛେଦ ପ୍ରତ୍ୟକ୍ଷ ସାକ୍ଷାତ ରୂପରେ ସମ୍ମୁଖରେ ସମୁପସ୍ଥିତ ହୋଇଯାଏ ତେବେ ତାହା କହି ହୋଇପାରେ ନାହିଁ । ତେବେ ସୁଦ୍ଧା ପ୍ରିୟ ବିଚ୍ଛେଦରେ ବି

---

☆ ଯାଦବେ ସ୍ନେହଭରେ ଗଲେ । ପୁଣି ବାହୁଡ଼ାବିଜେ କଲେ ।।
ଗୋପୀ-ଗୋପାଳ ନନ୍ଦ ମନ । କୃଷ୍ଣ ଚରଣେ କରି ଲୀନ ।।
ସମ୍ଭାଳି ନ ପାରନ୍ତି ଭଲେ । ଗୋବିନ୍ଦ ଚରଣେ ନିଶ୍ଚଳେ ।।
ଏମନ୍ତେ ଗଲେ ଗୋପପୁର । ଶୁଣ ପରୀକ୍ଷ ନୃପବର ।।

(ଭାଗବତ : ଜଗନ୍ନାଥ ଦାସ:୧୦ମ ସ୍କ. ୯୦ ଅ.)

ଏପରି ଏକ ମିଠା-ମିଠା ସୁଖ ଲୁକ୍କାୟିତ ରହିଥାଏ ଯେ ସେହି ଦୁଃଖ ବି ଭଲ ଲାଗେ । ସେହି ଅଶ୍ରୁରେ ବି ଶୀତଳତା ହୁଏ, ଆଉ ସେହି ହୃଦୟର କମ୍ପନରେ ବି ପ୍ରିୟର ଅନନ୍ତ ସ୍ମୃତି ସନ୍ନିହିତ ରହିଥାଏ । ଏପରି ବିୟୋଗଜନିତ ଦୁଃଖ ଯେଉଁ ଭାଗ୍ୟବାନଙ୍କୁ ଜୁଟେ ସେମାନଙ୍କ ପବିତ୍ର ପାଦପଦ୍ମରେ ଆମର ପୁନଃ ପୁନଃ ପ୍ରଣାମ ।

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ବସୁଦେବଙ୍କର ଯଜ୍ଞମହୋତ୍ସବ ଅତି ଧୁମ୍‌ଧାମରେ ସମାପ୍ତ ହେଲା । ଧୀରେ ଧୀରେ ଆଗନ୍ତୁକ ଅତିଥିମାନେ ବିଦାୟ ନେଇଗଲେ । ସ୍ନେହବଶତଃ କିଛି ଦିନପାଇଁ ଗୋପ-ଗୋପୀକାଙ୍କୁ ଯାଦବମାନେ ରଖିଦେଲେ । ଶ୍ରୀକୃଷ୍ଣ ବଳରାମଙ୍କୁ ଛାଡ଼ି ଯିବାପାଇଁ ନନ୍ଦଙ୍କର ଯଦିଓ ଆଦୌ ଇଚ୍ଛା ହେଉନଥିଲା, ତେବେ ଅନେକଦିନ ହେବ ବ୍ରଜରୁ ଚାଲି ଆସିଥିବାରୁ ବୃନ୍ଦାବନ କଥା ସେମାନଙ୍କର ବାରମ୍ବାର ମନେପଡୁଥିଲା । କାଲି ଚାଲି ଯିବାପାଇଁ କହୁଥିଲେ । ପରଦିନ ଠିକ୍ ବାହାରିବା ବେଳେ ଶ୍ରୀକୃଷ୍ଣ ପହଞ୍ଚିଯାଇ କହୁଥାନ୍ତି, 'ବାବା ! ଆଜି ବୁଧବାରେ କିମିତି ବାହରିଛନ୍ତି, ରହିଯାଆନ୍ତୁ, ବୁଧରେ ବିଚ୍ଛେଦ ଭଲ ନୁହେଁ ।'

ନନ୍ଦ ଅବା ଆଉ କ'ଣ କହନ୍ତେ ! ସେ ରହି ଯାଆନ୍ତି, ଆଉ କୁହନ୍ତି, '' ହଉ, ଆଜିକ ରହି ଯାଉଛୁ । ହେଲେ, କାଲି ନିଶ୍ଚୟ ଯିବୁ ।''

ପରଦିନ ବାହାରିବା ବେଳକୁ ଯାଦବମାନଙ୍କ ସହିତ ବଳରାମ ଆସି କହନ୍ତି, '' ବାବା ! ଆଜିପରା ଅଗନ୍ତବ୍ୟ ଦିବସ ! ଅଗନ୍ତବ୍ୟ ଦିନରେ କେହି କେବେ ଯାତ୍ରା କରେ !'' ନନ୍ଦ ପୁଣି ରହିଯାଆନ୍ତି । ପରଦିନ ଯିବାପାଇଁ ପ୍ରସ୍ତୁତ ହୁଅନ୍ତି । ଭଗବାନ ଠିକ୍ ସମୟରେ ନାକରେ ଆଙ୍ଗୁଠି ଗେଞ୍ଜି ଛିଙ୍କି ଦିଅନ୍ତି । ଆଉ କୁହନ୍ତି, '' ଆରେ ବାବା ! ଛିଙ୍କ ହେଲାଣି, ଅପଶକୁନ ହେଲାଣି, ଆଜି ଯିବା ବି ଶୁଭ ହେବନାହିଁ ।'' ଏହିଭଳି କେଉଁଦିନ ଚନ୍ଦ୍ର ଭଲ ନାହିଁ, କେଉଁଦିନ ଲଗ୍ନ, ଯୋଗ, କରଣ, ବାର, ନକ୍ଷତ୍ର, ତିଥିର ଦୋଷ ଦେଖାଇ, ଆଜିକାଲି, ଆଜିକାଲି କରି ସେମାନଙ୍କୁ ତିନିମାସ କାଳ ରଖିଦେଲେ ।

ଯାଦବମାନେ ଗୋପଙ୍କର ଅପୂର୍ବ ପ୍ରେମ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଗୋପିକାଗଣଙ୍କର ଅନୁରାଗ ଦେଖି ଭଗବାନଙ୍କର ପତ୍ନୀମାନେ ନିଜ ନିଜର ପ୍ରେମକୁ ଧିକ୍କାର କରିବାରେ ଲାଗିଲେ । ସେମାନେ ଆଗରୁ ଶ୍ରୀରାଧାଙ୍କର ଅନେକ ପ୍ରଶଂସା ଶୁଣିଥିଲେ; କିନ୍ତୁ ଶ୍ରୀ ରାଧାଙ୍କ ପାଖରେ କି ପ୍ରକାର ବିଶେଷଗୁଣ ଥିଲା ତାହା ସେମାନେ ଜାଣି ନଥିଲେ । ଦିନେ ରୁକ୍ମିଣୀ ଆଦି ପାଟରାଣୀମାନେ ଶ୍ରୀରାଧାଙ୍କୁ ଗୋଟିଏ ଏକାନ୍ତ ସ୍ଥାନକୁ ଡାକି ଆଣିଲେ । ତାଙ୍କର ଅପୂର୍ବ ଆଦର ସତ୍କାର କଲେ । ଶ୍ରୀରାଧା ତ ନିପଟ ସରଳା, କଥାବାର୍ତ୍ତା

କରିବା ଢଙ୍ଗ ବି ସେ ଶିଖିନଥିଲେ । ରାଣୀମାନେ ଯେଉଁ ପ୍ରଶ୍ନ ପଚାରୁଥିଲେ ଅତି ସଂକ୍ଷେପରେ ତା'ର ଉତ୍ତର ଦେଇ ସେ ଚୁପ୍ ହୋଇଯାଉଥାନ୍ତି । ସିଏ କେଉଁ ଭାବରେ ତଲ୍ଲୀନ ଅଛନ୍ତି ତାହା ରାଣୀମାନେ ଅନୁମାନ ବି କରିପାରୁ ନ'ଥାନ୍ତି । ପରିଶେଷରେ ରୁକ୍ମିଣୀ କହିଲେ, '' ରାଧେ ! ଟିକିଏ କ୍ଷୀର ପିଅ ।''

ଶ୍ରୀ ରାଧା ମନାକଲେ । କିନ୍ତୁ ଅନ୍ୟ ରାଣୀମାନେ ବାଧ କରିବାରେ ଲାଗିଲେ । ରାଣୀମାନଙ୍କର ଆଗ୍ରହ ସେ କିପରି ବା ଏଡ଼ାଇ ପାରନ୍ତେ । ପିଇବା ପାଇଁ ସେ ରାଜି ହୋଇଗଲେ । ଦୁଧ ଟିକିଏ ବେଶୀ ଗରମ ଥିଲା । ସମ୍ଭବତଃ ରାଣୀମାନେ ଗରମ କ୍ଷୀର ପିଉଥିବେ, ତେଣୁ ସେମାନେ ଗରମ କ୍ଷୀର ପିଇବାକୁ ଦେଇଥିବେ । ସଂକୋଚର ସହିତ ସେପରି ଅଧିକ ଗରମ କ୍ଷୀରକୁ ସେ ପିଇଦେଲେ ପଛେ, କାହାକୁ କିଛି କହିଲେ ନାହିଁ ।

ରାତି ହେଲା । ରୁକ୍ମିଣୀ ଯେତେବେଳେ ପଦସେବା ନିମନ୍ତେ ଶ୍ରୀକୃଷ୍ଣଙ୍କ ପାଖକୁ ଗଲେ, ସେତେବେଳେ, ଭଗବାନଙ୍କ ପାଦରେ ଫୋଟକା ଦେଖି ଆଶ୍ଚର୍ଯ୍ୟ-ଚକିତ ହୋଇଗଲେ । ଏଡ଼େ ବଡ଼ ବଡ଼ ଫୋଟକା ହଠାତ୍ କିମିତି ହୋଇଗଲା - ଏପରି ଭାବି ସେ ଭଗବାନଙ୍କୁ ପଚାରିଲେ, ''ପ୍ରଭୁ ! ଆପଣ ଆଜି କୁଆଡ଼େ ବାହାରକୁ ତ ଯାଇ ନାହାନ୍ତି; ଆପଣଙ୍କ ପାଦରେ ଏଡ଼େ ଏଡ଼େ ଫୋଟକା ହେଲା କିପରି ?''

ଭଗବାନ କହିଲେ, '' ନାଇଁ ନାଇଁ । ସେ କିଛି ନୁହେଁ । ଏମିତି ଫୋଟକା ଗୁଡ଼ିଏ ହୋଇଯାଇଛି ।'' କିନ୍ତୁ ଏଥିରେ ରୁକ୍ମିଣୀ ସନ୍ତୁଷ୍ଟ ହେଲେ ନାହିଁ । ଏହାର କାରଣ ଜାଣିବା ପାଇଁ ସେ ଜିଦ୍ ଧରି ବସିଲେ । ସେତେବେଳେ ଶ୍ରୀ ଭଗବାନ ଅତି ଆଗ୍ରହ ସହକାରେ କହିଲେ, ''ତୁମେ ଯଦି ଏତେ ଇଚ୍ଛା କରୁଛ ତେବେ ଶୁଣ ! ଦେଖ, ଶ୍ରୀରାଧାଙ୍କ ହୃଦୟରେ ମୋ ପାଦ ସବୁବେଳେ ରହିଥାଏ । ସେ ମୋ ପାଦକୁ ସବୁସମୟରେ ହୃଦୟରେ ଧାରଣ କରି ରଖିଥାନ୍ତି । ତୁମେ ଆଜି ତାଙ୍କୁ ବାଧ କରି ଗରମ କ୍ଷୀର ପିଆଇଲ । ତାହା ଭିତରେ ପ୍ରବେଶ କରି ମୋ ପାଦ ସ୍ପର୍ଶକଲା, ଆଉ ଏପରି ଗୁଡ଼ିଏ ଫୋଟକା ହୋଇଗଲା ।

ରୁକ୍ମିଣୀଙ୍କୁ ଖୁବ୍ ଖରାପ ଲାଗିଲା । ଭଗବାନଙ୍କର ମୁହଁରୁ ଏପରି କଥା ଶୁଣି ରୁକ୍ମିଣୀ ଓ ଅନ୍ୟ ରାଣୀମାନେ ଶ୍ରୀରାଧାଙ୍କର ମହତ୍ତ୍ୱ ବୁଝିଗଲେ । ଶ୍ରୀରାଧା ଓ ଶ୍ରୀକୃଷ୍ଣ ଯେ ଏକ ଓ ଅଭିନ୍ନ ଏଥିରେ ସେମାନଙ୍କର ଆଉ ସାମାନ୍ୟମାତ୍ର ସନ୍ଦେହ ରହିଲା ନାହିଁ । **ଶ୍ରୀରାଧାଙ୍କ ହୃଦୟରେ ଶ୍ରୀ ଶ୍ୟାମସୁନ୍ଦର ସର୍ବଦା ବିରାଜମାନ କରୁଥାନ୍ତି, ଆଉ ଶ୍ରୀ ଶ୍ୟାମସୁନ୍ଦରଙ୍କ ହୃଦୟରେ ଶ୍ରୀରାଧା ସର୍ବଦା ବିରାଜମାନ କରୁଥାନ୍ତି ।** ସେହି ଦିନଠାରୁ ରାଣୀମାନେ ଶ୍ରୀରାଧାଙ୍କୁ ଅତ୍ୟଧିକ ଆଦର ସତ୍କାର କରିବାରେ ଲାଗିଲେ । ଏହି ଭକ୍ତି ସ୍ତ୍ରୀମାନେ ସ୍ୱାମୀମାନଙ୍କ

ସହିତ ଓ ପୁରୁଷମାନେ ପୁରୁଷମାନଙ୍କ ସହିତ ଅତି ଆତ୍ମୀୟତାରେ ମିଶିଗଲେ । କେହି କାହାକୁ ଛାଡ଼ିବାକୁ ଚାହିଁଲେ ନାହିଁ । କିନ୍ତୁ କର୍ତ୍ତବ୍ୟର ତାଡ଼ନାରେ ସେମାନେ ପୃଥକ୍ ହେବାକୁ ବାଧ ହୋଇଥିଲେ । ଏଣୁ ଯିବା ପାଇଁ ପ୍ରସ୍ତୁତ ହେବାରେ ଲାଗିଲେ ।

ନନ୍ଦ ଯିବାପାଇଁ ଯେତେବେଳେ ଅତି ଉତ୍କଣ୍ଠା ପ୍ରକାଶ କଲେ, ଦିନେ ଅଶ୍ରୁଳ ନୟନରେ ବସୁଦେବ ତାଙ୍କୁ କହିଲେ, '' ଭାଇ ନନ୍ଦ ! ତୁମେ ଯିବାପାଇଁ ମୋତେ ବାରମ୍ବାର କହୁଛ ସତ, ମାତ୍ର ତୁମକୁ ପାଖଛଡ଼ା କରିବାକୁ ମୋର ମନ ଆଦୌ ହେଉନାହିଁ । ତୁମଠାରୁ ପୃଥକ ହୋଇଯିବାର ଭାବନାରେ ମୋ ହୃଦୟ ଫାଟି ଯାଉଛି ।''

ଏପରି କଥା ଶୁଣି ନନ୍ଦ ଦ୍ରବିତ ହୋଇଗଲେ । ସେ ଗଦ୍‌ଗଦ୍ ସ୍ୱରରେ କହିଲେ, ''ଭାଇ ! ଦିନେ ନା ଦିନେ ତ ପୃଥକ୍ ହେବାକୁ ପଡ଼ିବ ନା ! ଏହି ମୋହ, ମମତାକୁ ଛାଡ଼ନ୍ତୁ ।''

ବସୁଦେବ କହିଲେ, '' ହେ ନନ୍ଦ ! ଆପଣ ଠିକ୍ କହୁଛନ୍ତି । **ସ୍ନେହର ଅନ୍ତିମ ପରିଣାମ ବିରହ ହିଁ ହୋଇଥାଏ ।** ସୁଖୀ ପ୍ରକୃତିର ଲୋକଙ୍କୁ ବିରହ-ଜନିତ ଦୁଃଖ ହିନସ୍ତା କରେ ନାହିଁ । ସେମାନଙ୍କୁ ବିରହ ହେଲେ ତାହା କ୍ଷଣକ ଭିତରେ ମିଳାଇ ଯାଏ । ଯେପରି ଶୁଖିଲା ବତୀ କ୍ଷଣକ ଭିତରେ ଜଳି ଭସ୍ମ ହୋଇଯାଏ । କିନ୍ତୁ ଯେଉଁ ବତୀରେ ସ୍ନେହରୂପୀ ତୈଳ ଘୃତାଦି ଲାଗିଥାଏ ତାହା ଧୀରେ ଧୀରେ ଦିନରାତି ଜଳିବାରେ ଲାଗେ । ସ୍ନେହୀର ହୃଦୟ ଦିନରାତି ଜଳେ । ବିଧାତା ନର-ନାରୀଙ୍କ ହୃଦୟରେ ସ୍ନେହରୂପୀ ଏପରି ପ୍ରଲେପ ଲଗେଇ ଦେଇଛନ୍ତି ଯେ ତାହା ଛାଡ଼ିବା ଅତି କଠିନ ହୋଇଯାଏ । ସାଧାରଣ ଲୋକଙ୍କ କଥା କ'ଣ କହିବା, ବଡ଼ ବଡ଼ ସାଧୁମାନେ ବି ତ ସ୍ନେହର ଫାନ୍ଦରେ ପଡ଼ିଯାଇଛନ୍ତି । ଘରଠାରୁ ଆରମ୍ଭ କରି ସ୍ତ୍ରୀ, ପୁତ୍ର, କୁଟୁମ୍ବ ପରିବାରର ମୋହ ଛାଡ଼ି ଚାଲିଆସନ୍ତି । ହେଲେ ପ୍ରେମ ପାଖରେ ବନ୍ଧନରେ ପଡ଼ିଯାଆନ୍ତି । ସଜ୍ଜନ ପୁରୁଷ ତ ନିଜର ସଜ୍ଜନତାରେ ଅନ୍ୟଙ୍କୁ ନିଜ ଆଡ଼କୁ ଆକର୍ଷିତ କରି ଆଣନ୍ତି । କିନ୍ତୁ ସେପରି ସଜ୍ଜନ ଯଦି କାହାର ମହାନ୍ ଉପକାର କରିଥାଏ, ତେବେ ସେ ଆମ ଭଳି କୃତଘ୍ନ ହେଉ ନା କାହିଁକି, ସେ ତାକୁ କଦାପି ଛାଡ଼ି ପାରେ ନାହିଁ, ତା ଆଗରେ ଆଖି ଉଠାଇ ଦେଖି ପାରେ ନାହିଁ । **ସଜ୍ଜନଙ୍କ ସ୍ୱଭାବ ତ ପରୋପକାର କରିବା ।** ସେମାନେ ଏପରି କଥାକୁ ଆଦୌ ମନେରଖନ୍ତି ନାହିଁ । କିନ୍ତୁ ଯିଏ ଅତି କୃତଘ୍ନ ହୋଇ ନଥାଏ, ସେ ତାଙ୍କର ଏହି ପରୋପକାରକୁ ଜୀବନର ଅନ୍ତିମ ଘଡ଼ି ପର୍ଯ୍ୟନ୍ତ ଭୁଲିପାରନ୍ତି ନାହିଁ ।

''ଆପଣ ସାଧୁଙ୍କ ମଧ୍ୟରେ ଅଗ୍ରଗଣ୍ୟ । ଆପଣ ଆମ ସହିତ ଅନୁପମ ମିତ୍ରତା ପ୍ରଦର୍ଶନ କରିଛନ୍ତି । ଆମେ ଯଦିଓ ଏହାର ସାମାନ୍ୟ ମାତ୍ର ପ୍ରତିଉପକାର କରିପାରି ନାହୁଁ, ତେବେ ବି ଆପଣ ଆମ ସହିତ ଅଧିକ ଦୃଢ଼ ସମ୍ବନ୍ଧ ରଖିଛନ୍ତି । ଆମର ସମ୍ବନ୍ଧ ଅତୁଟ, ତାହା କେବେ ବି ଅନ୍ୟଥା ହେବନାହିଁ ।''

ଆଖିରୁ ଲୁହ ପୋଛୁ ପୋଛୁ ଯଶସ୍ୱୀ ନନ୍ଦ କହିଲେ, ''ଭାଇ ! ପ୍ରତ୍ୟୁପକାରର ପ୍ରଶ୍ନ ପରଙ୍କଠାରେ ଉଠେ । ଘର ଭିତରେ ଭାଇମାନଙ୍କ ଭିତରେ ଉପକାର ଓ ପ୍ରତ୍ୟୁପକାର କ'ଣ ? ଜଣେ ଭାଇ ରୋଜଗାର କରେ, ଆଉ ଚାରିଜଣ ଭାଇ ଖାଆନ୍ତି । ରୋଜଗାର ଯେ କରେ ସେ ଯେ କିଛି ଉପକାର କଲା ତାହା ଧରାଯାଏ ନାହିଁ, କି ଯେଉଁମାନେ ଖାଇଲେ ସେମାନଙ୍କର ପ୍ରତ୍ୟୁପକାର ପ୍ରକାଶ କରିବାର ଆବଶ୍ୟକତା ରହେନାହିଁ । ଘରେ ସମସ୍ତେ ଯେ ଯାହାର କର୍ତ୍ତବ୍ୟ ପାଳନ କରିଥାନ୍ତି ।''

ବସୁଦେବ କହିଲେ, '' ମୁଁ ମୋ ନିଜ କର୍ତ୍ତବ୍ୟ ବି ପାଳନ କରିପାରି ନାହିଁ । ମୁଁ ଯେତେବେଳେ ବନ୍ଦୀ ଗୃହରେ ଥିଲି, ମୁଁ ସେତେବେଳେ ପରାଧୀନ ଥିଲି, କୌଣସି କର୍ତ୍ତବ୍ୟ ପାଳନ କରିବାକୁ ଅସମର୍ଥ ଥିଲି । କଂସ ମରିବା ପରେ କାରାଗାରରୁ ମୁକ୍ତ ହୋଇ ମୁଁ ସ୍ୱାଧୀନ ହେଲି ଏବଂ କିଛି କରିବା ପାଇଁ ସେତେବେଳେ ଯୋଗ୍ୟ ହେଲି । ଧନ-ବୈଭବଶାଳୀ ହେଲି । ଧନର ମଦରେ ଉନ୍ମତ୍ତ ରହିଲି । ଯାହାକୁ ଏହି ଧନ-ମଦ ହୋଇଯାଏ, ଆଖିରେ ପରଳ ପଡ଼ିଥିବା ଲୋକ ଯେପରି ତା ସମ୍ମୁଖରେ ଥିବା ଦ୍ରବ୍ୟକୁ ଦେଖିପାରେ ନାହିଁ ଠିକ୍ ସେହିଭଳି ତା ସମ୍ମୁଖରେ ଠିଆ ହୋଇଥିବା ପୁରୁଷଙ୍କୁ ଦେଖିପାରେ ନାହିଁ । ଧନ, ମଦ ଅତି ଖରାପ ଆଉ ଏଇଥିପାଇଁ ସକଳ ଶାସ୍ତ୍ର ନିର୍ଦ୍ଦେଶ ଦେଇ କହିଥାଏ, ଯେ କଦାପି ଧନ -ବୈଭବର ଲୋଭରେ ଫସିବା ଉଚିତ୍ ନୁହେଁ । ମୁଁ ମଧ୍ୟ ଭଗବାନଙ୍କ ପାଦପଦ୍ମରେ ପ୍ରାର୍ଥନା କରୁଛି ଯେ ତାଙ୍କର ଅନନ୍ୟ ଭକ୍ତଙ୍କୁ ସେ ରାଜଲକ୍ଷ୍ମୀଙ୍କ ଠାରୁ ଦୂରରେ ରଖନ୍ତୁ । କାରଣ ଲକ୍ଷ୍ମୀଙ୍କ ମଦରେ ଅନ୍ଧ ହୋଇଥିବା ପୁରୁଷ ନିଜର ଅନୁଗାମୀ, ଆତ୍ମୀୟ ସ୍ୱଜନ ତଥା ବନ୍ଧୁ ବାନ୍ଧବଙ୍କୁ ପାଖରେ ଦେଖି ସୁଦ୍ଧା ନ ଚିହ୍ନିଲା ଭଳି ହୋଇଥାନ୍ତି । ହେ ଭାଇ ! ଆମେ ଯେତେବେଳେ ଅସମର୍ଥ ଥିଲୁ, ବିବଶ ଥିଲୁ; ଆଉ ଯେତେବେଳେ ଧନ-ବୈଭବ ପ୍ରାପ୍ତ ହେଲୁ ଧନ-ମଦରେ ଅନ୍ଧ ହୋଇଗଲୁ ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ବସୁଦେବଙ୍କର ଏପରି କରୁଣାପୂର୍ଣ୍ଣ କଥା ଶୁଣି ନନ୍ଦ କାନ୍ଦି ପକାଇଲେ । ବସୁଦେବ ମଧ୍ୟ ନନ୍ଦଙ୍କର ସୌହାର୍ଦ୍ଦ୍ୟକୁ ସ୍ମରଣ କରି ଅତ୍ୟଧିକ ପ୍ରେମର ତାଡ଼ନାରେ, ଗଦ୍‌ଗଦ୍ ହୃଦୟରେ ଅଶ୍ରୁ ଝରାଇବାରେ ଲାଗିଲେ । ସେ ଦିନ ନନ୍ଦ ବାହାରିଥିଲେ, ମାତ୍ର ଯାତ୍ରା କଲେନାହିଁ । ଆଉ ଦୁଇ ଚାରି ଦିନ ରହିବା ପରେ ପରିଶେଷରେ ବିଦାୟ ନେବାର ଦିନ ଉପନୀତ ହୋଇଗଲା । ଚୈତ୍ର ମାସରୁ ଜ୍ୟେଷ୍ଠ ମାସ ପର୍ଯ୍ୟନ୍ତ ସମସ୍ତେ ସେଠାରେ ଏକାଠି ରହିଲେ । ବର୍ଷାଋତୁର ଆଗମନ ହୋଇଗଲା । ଏଥର ଯାଦବମାନେ ବି ପ୍ରତ୍ୟାବର୍ତ୍ତନ ନିମନ୍ତେ ଆଗ୍ରହୀ ହେଲେ । ତେଣୁ ଆସନ୍ତା କାଲି ବ୍ରଜବାସୀମାନେ ନିଶ୍ଚୟ ବ୍ରଜକୁ ଯାତ୍ରା କରିବେ ବୋଲି ସ୍ଥିରୀକୃତ ହେଲା । ଏହି ସମ୍ବାଦ ପ୍ରଚାରିତ ହୋଇଯିବା କ୍ଷଣି ବ୍ରଜବାସୀଙ୍କ ଶିବିରରେ ଉଦାସର ଛାୟା ଢାଙ୍କି ହୋଇଗଲା ।

ପରଦିନ ଗୋପମାନେ ଜିନିଷପତ୍ର ଶଗଡ଼ରେ ଲଦିବାରେ ଲାଗିଲେ । ବସୁଦେବ, ମହାରାଜ ଉଗ୍ରସେନ, ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର, ଉଦ୍ଧବ ତଥା ଅନ୍ୟ ଯାଦବମାନେ ନନ୍ଦ ଏବଂ ସମସ୍ତ ଗୋପୀ-ଗୋପାଳଙ୍କୁ ନାନା ପ୍ରକାର ବସ୍ତ୍ର, ଆଭୂଷଣ ତଥା ଅନ୍ୟାନ୍ୟ ଉତ୍ତମ ଭୋଗ ସାମଗ୍ରୀ ଉପହାର ଦେଲେ । ସମସ୍ତଙ୍କୁ ପ୍ରସନ୍ନ କରିବାକୁ ଯାଇ ନନ୍ଦ ସେ ସବୁକୁ ଗ୍ରହଣ କଲେ । ସେ ସମୟର ଦୃଶ୍ୟ ଥିଲା ଅତ୍ୟନ୍ତ କରୁଣାର୍ଦ୍ଧ । ଗୋପ-ଗୋପୀମାନେ କାନ୍ଦୁଥିଲେ । ନନ୍ଦ-ଯଶୋଦା ରାମ-କୃଷ୍ଣଙ୍କୁ ବାରମ୍ବାର, ଥରକୁଥର ପାଳି କରି କରି ଗାଢ଼ ଆଲିଙ୍ଗନ କରିବାରେ ଲାଗିଥିଲେ । ସେତେବେଳେ ନନ୍ଦ-ଯଶୋଦାଙ୍କ ନୟନ-ନିସୃତ-ଜଳରେ ରାମ କୃଷ୍ଣଙ୍କର ବକ୍ଷସ୍ଥଳ ଆର୍ଦ୍ର ହୋଇଯାଇଥିଲା । ବସ୍ତ୍ର ଓ କେଶ ମଧ୍ୟ ଲୋତକସିକ୍ତ ହୋଇଯାଇଥିଲା । ଶ୍ରୀକୃଷ୍ଣଙ୍କର ମନମୋହନ ମଧୁର ରୂପକୁ ଚାହିଁ ଚାହିଁ ଗୋପୀମାନେ ହେକା-ମାରିମାରି କାନ୍ଦିବାରେ, କେହି କେହି ସକେଇବାରେ ଓ ଆଉ କେହି କେହି ଉଚ୍ଚ ସ୍ୱରରେ ବିଳାପ କରିବାରେ ଲାଗିଥିଲେ । ଶ୍ୟାମସୁନ୍ଦର କମଳଲୋଚନଙ୍କ ଦଶା ମଧ୍ୟ ଥିଲା ଅନୁରୂପ । ସେହି ବ୍ରଜବାସୀ ନରନାରୀମାନେ ଯେନତେନ ପ୍ରକାରେଣ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ପାଖରେ ସେମାନଙ୍କର ମନକୁ ଛାଡ଼ି, କେବଳ ଶରୀରଗୁଡ଼ିକୁ ଧରି ବ୍ରଜ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରିଦେଲେ । ସେମାନେ କିଛି ଦିନ ପରେ ବୃନ୍ଦାବନରେ ପହଞ୍ଚିଗଲେ ।

ଏଣେ ଶ୍ରୀକୃଷ୍ଣଙ୍କୁ ସର୍ବସ୍ୱ ମନେକରୁଥିବା ଯାଦବମାନେ ସମସ୍ତ ବନ୍ଧୁବାନ୍ଧବଙ୍କଠାରୁ ବିଦାୟ ନେଇ, ବର୍ଷାଋତୁ ଆସିଯାଉଥିବାରୁ ଶୀଘ୍ର କୁରୁକ୍ଷେତ୍ରରୁ ଦ୍ୱାରକାପୁରୀକୁ ଯାତ୍ରା ଆରମ୍ଭ କରିଦେଲେ । ସେମାନେ କିଛିଦିନ ପରେ ଅନର୍ତ୍ତ ଦେଶର ରାଜଧାନୀ କୁଶସ୍ଥଳୀରେ ପହଞ୍ଚି ବନ୍ଧୁବାନ୍ଧବଙ୍କୁ ଭେଟି ଯଜ୍ଞର ସକଳ ସମାଚାର ଶୁଣାଇ ଆନନ୍ଦମୁଖର ହେଲେ ।

ମହର୍ଷି ସୂତ କହୁଛନ୍ତି, " ହେ ମୁନିଗଣ ! କୁରୁକ୍ଷେତ୍ରରେ ଶ୍ରୀ ଭଗବାନଙ୍କର ଏପରି ବୈଭବ ଦେଖି ତଥା ମୁନିଋଷିମାନଙ୍କର ଅପୂର୍ବ ସୁନ୍ଦର ସ୍ତୁତି ଶୁଣି ଯେଉଁଭଳି ବସୁଦେବ ଓ ଦେବକୀଙ୍କ ଭଗବତ୍ତା ସମ୍ବନ୍ଧରେ ମୋ ଗୁରୁଦେବ କହିଥିଲେ ସେ ପ୍ରସଙ୍ଗରେ ଏବେ କହୁଛି, ମନଦେଇ ଶୁଣନ୍ତୁ ।"

## ଛପ୍ପୟ

*ଗୋପୀ ଗୋପନି ହୃଦୟ ପ୍ରେମତେଂ ଅତି ଭରି ଆୟେ ।*
*ମନ ହରି ଚରନନି ଛୋରି ମଧୁପୁରୀ ତନତେଂ ଧାୟେ ।।*
*ଇତ ଯାଦବ ସଜି ସୈନ ଦ୍ୱାରକା ମହଁ ଆୟେ ଛବ ।*
*କହାଂ କଥା ଜୋ ଭଈ ମିଲେ ଜ୍ୟୋଂ ବ୍ରଜବାସୀ ସବ ।।*
*ମିଲେ ରହତ ବଲ୍ଲଭ ସଦା, ଗୋପିନି ହିୟ ମହଁ ବସହିଁ ନିତ ।*
*ମିଳନ ଭୟୋ କୁରୁକ୍ଷେତ୍ର ମହଁ, ଭୟୋ ନ ବ୍ରଜ ସମ ମନ ମୁଦିତ ।।*

# ବସୁଦେବଙ୍କ ଆତ୍ମ-ଜ୍ଞାନ

**କୃଷ୍ଣ କୃଷ୍ଣ ମହାଯୋଗିନ୍ ସଙ୍କର୍ଷଣ ସନାତନ ।**
**ଜାନେ ବାମସ୍ୟ ଯତ୍‌ସାକ୍ଷାତ୍‌ପ୍ରଧାନ ପୁରୁଷୌ ପରୌ ।।☆**

(ଶ୍ରୀ ଭା. ୧୦ମ ସ୍କ. ୮୫ ଅ. ୩ ଶ୍ଲୋକ)

**ଛପ୍‌ପୟ**

*ଏକ ଦିବସ ବଲ ଶ୍ୟାମ ଗୟେ ନିଜ ପିତୁ କେ ପାହୀଂ ।*
*ନିରଖି ଜ୍ଞାନ ଜିହ ଭୟୋ ପୁତ୍ର ମେରେ ୟେ ନାହୀଂ ।।*
*ଋଷି ମୁନି ଭାଷନ ବ୍ୟାସ ଇନ୍ହେଂ ସର୍ବେଶ ବତାବେଂ ।*
*ମାନି ମୋଇ ନିଜ ଜନକ ଆଇ ପଦ ଶୀଶ ନବାବେଂ ।।*
*ବୋଲେ-ତୁମ ଦୋନୋଂ ସକଲ, ୟା ଜଗକେ ଆଧାର ହୋ ।*
*ଅଜ, ଅଚ୍ୟୁତ, ଅକ୍ଷର, ଅଜିତ, ଅଖିଲେଶ୍ୱର ଅବତାର ହୋ ।।*

ଜୀବର ଯେତେବେଳେ ଭିନ୍ନ-ଜ୍ଞାନ, ଭେଦଭାବ ନଷ୍ଟ ହୋଇଯାଏ, ସେତେବେଳେ ତାକୁ ଶାଶ୍ୱତୀ ଶାନ୍ତି ମିଳେ । ସେତେବେଳେ ସେ ପ୍ରସନ୍ନ ହୋଇଯାଏ । ଭେଦଭାବ ବିନା ମାଧୁର୍ଯ୍ୟ ରସର ଆସ୍ୱାଦନ ହୋଇପାରେ ନାହିଁ । ଭେଦଭାବ ନଷ୍ଟ ହୋଇଯିବା ପରେ ହିଁ ସର୍ବତ୍ର ଏକ ତତ୍ତ୍ୱ ଦେଖାଯିବାରେ ଲାଗେ । ସବୁ ରୂପରେ ଆତ୍ମା ଏକଭଳି ଦେଖାଯାଏ । ଆଉ ନିଜଠାରେ ସର୍ବଭୂତ ଦେଖାଯାଏ । ସକଳ ଭୂତରେ କେବଳ ଭଗବାନ ଦେଖାଗଲେ, ଚରାଚର ଜଗତରେ ଭଗବଦ୍ ଦୃଷ୍ଟି ହୋଇଗଲେ, ସେତେବେଳେ ସକଳ ସମ୍ବନ୍ଧ ଛିନ୍ନ-ଭିନ୍ନ ହୋଇଯାଏ; ଅଥବା ସମସ୍ତ ସମ୍ବନ୍ଧର ସମାବେଶ ସର୍ବେଶ୍ୱରଙ୍କ ଠାରେ ହିଁ ହୋଇଯାଏ । ସେପରି ଦଶା ଯେତେବେଳେ ପ୍ରାପ୍ତ ହେଇଯାଏ, ସେତେବେଳେ ଶୋକ, ମୋହ, ଭ୍ରମ ତଥା ଭୟ ସମସ୍ତ ଦୂର ହୋଇଯାଏ ।

ମହର୍ଷି ସୂତ କହୁଛନ୍ତି,'' ହେ ମୁନିଗଣ ! ଭଗବାନ୍ ଦ୍ୱାରକାରେ ରହି ନର-ନାଟ୍ୟ କରୁଥିଲେ । ସବୁ ଦିନ ଭଳି ଦିନେ ଭଗବାନ୍ ତାଙ୍କର ବଡ଼ଭାଇ ସଙ୍କର୍ଷଣ-ଅବତାର ଶ୍ରୀ ବଳରାମଙ୍କ ସହିତ ପୂଜ୍ୟ ପିତା ବସୁଦେବଙ୍କ ପାଖକୁ ଗଲେ । ସେତେବେଳେ ବସୁଦେବ ଶୁଦ୍ଧତତ୍ତ୍ୱରେ ସ୍ଥିତ ହୋଇ ଜଗତ ବିଷୟରେ ଗଭୀର ଚିନ୍ତା କରୁଥିଲେ । ସେତିକିବେଳେ ରାମ

---

☆ ବୋଲଇ ଶଙ୍କିତ ବଚନେ । କୃଷ୍ଣ ମହିମା ଭାବି ମନେ ।।
ହେ କୃଷ୍ଣ କୃଷ୍ଣ ଭଗବାନ । ସଙ୍କରଷଣ ସନାତନ ।।
ଆନନ୍ଦ ମୁକୁନ୍ଦ ମୁରାରି । ଯା ନାମେ ମୁନିଜନେ ତରି ।।
ନିଶ୍ଚେ ଜାଣିଲି ଏବେ ମୁହିଁ । ସୃଷ୍ଟି କାରଣ ତୁମ୍ଭେ ଦୁଇ ।।
ପରମବ୍ରହ୍ମ ପରକାଶ । ତୁମ୍ଭେ ଯେ ପ୍ରଧାନପୁରୁଷ ।।

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୯୧ ଅ.)

ଓ ଶ୍ୟାମ ଆସି ପୂଜ୍ୟପାଦ ପିତୃଦେବଙ୍କ ପାଦପଦ୍ମରେ ପ୍ରଣାମ କଲେ । ଦୁହେଁ ପ୍ରଣାମ କରୁଥିବା ଦେଖି ବସୁଦେବ ଦୁହିଁଙ୍କୁ ପ୍ରସନ୍ନତାପୂର୍ବକ ଅଭିନନ୍ଦନ କଲେ, ଦୁହିଁଙ୍କୁ ତାଙ୍କର ଅତି ନିକଟରେ ଆଦର ପୂର୍ବକ ବସାଇଲେ ।

ରାମ-ଶ୍ୟାମ ତାଙ୍କ ପାଖରେ ବସିଯିବା ପରେ ବସୁଦେବଙ୍କର ମହର୍ଷିମାନେ ଭଗବାନଙ୍କ ସମ୍ବନ୍ଧରେ କହିଥିବା ସମସ୍ତ କଥା ମନେପଡ଼ିଗଲା । ମହାନ୍ କଳ୍ପଜୀବୀ, ଜ୍ଞାନୀ, ଋଷି, ମହର୍ଷିମାନେ ବ୍ରହ୍ମଭାବରେ ଭଗବାନଙ୍କୁ ସ୍ତୁତି କରିଥିଲେ । ବିଶ୍ୱାମିତ୍ର, ବଶିଷ୍ଠ, ପରଶୁରାମ, ନାରଦ ତଥା ଅନ୍ୟ ସମସ୍ତ ବ୍ରହ୍ମଜ୍ଞାନୀ ରାମ-କୃଷ୍ଣଙ୍କୁ ଅବତାର ରୂପେ ଗ୍ରହଣକରି ପ୍ରାର୍ଥନା କରିଥିଲେ, ପାଦପଦ୍ମରେ ପ୍ରଣାମ କରିଥିଲେ, ଓ ଏମାନଙ୍କ ଅଲୌକିକ ପରାକ୍ରମ କଥା ବ୍ୟକ୍ତ କରିଥିଲେ । ଏମାନେ ନିଶ୍ଚୟ ଈଶ୍ୱର, ଏମାନେ ନରରୂପ ଧାରଣକରି କ୍ରୀଡ଼ା କରୁଛନ୍ତି - ବସୁଦେବଙ୍କ ସନ୍ଦେହ ଦୂର ହୋଇଯିବା ପରେ ଏପରି ଦୃଢ଼ ଧାରଣା ହୋଇଯିବାରୁ ସେ ତାଙ୍କର ଦୁଇ ପୁଅଙ୍କୁ ସମ୍ବୋଧନ କରି କହିଲେ - ''ହେ ଜଗତର ଆକର୍ଷଣ କର୍ତ୍ତା କୃଷ୍ଣ ! ତୁମେ ସମସ୍ତ ଯୋଗୀଙ୍କର ଆରାଧ୍ୟ । ହେ ସଙ୍କର୍ଷଣ ! ତୁମେ ବି ସମସ୍ତଙ୍କୁ ତୁମ ଆଡ଼କୁ ଆକର୍ଷଣ କରୁଛ । ତୁମେ ବି ମହାନ୍ ବଳବାନ୍ । ଯୋଗୀମାନେ ତୁମଠାରେ ରମଣ କରୁଥିବାରୁ ତୁମେ 'ରାମ' ବୋଲି ପରିଚିତ । ମୁଁ ତୁମମାନଙ୍କୁ ଆଜି କିଛି କହିବାକୁ ଇଚ୍ଛା କରିଛି ।''

ଭଗବାନ କହିଲେ, '' ହେ ପିତୃଦେବ, କୁହନ୍ତୁ ! ଆପଣଙ୍କର ଯାହା ଇଚ୍ଛା ହେଉଛି ତାହା କୁହନ୍ତୁ । କହିବା ପାଇଁ ପିଲାଙ୍କଠାରୁ କ'ଣ ଅନୁମତି ଲୋଡ଼ାଯାଏ ।'' ବସୁଦେବ କହିଲେ, ''ଆପଣ ଦୁହେଁ ପିଲା ନୁହନ୍ତି । ଆପଣ ଦୁହେଁ ତ ସମସ୍ତଙ୍କର ପିତାମହ । ଏହି ଦୃଶ୍ୟ-ଜଗତର କାରଣ, ଅର୍ଥାତ୍ ଜନକ ତ ହେଉଛନ୍ତି ପ୍ରଧାନ ଆଉ ପୁରୁଷ । ପ୍ରଧାନପୁରୁଷଙ୍କ ଠାରୁ ଏହି ସଚରାଚର ଜଗତର ଉତ୍ପତ୍ତି ହୋଇଛି । ଆଉ ଆପଣ ତ ହେଉଛନ୍ତି ଏହାର ବି କାରଣ, ଜନକ । ସଂସାରରେ କର୍ତ୍ତା, କାରଣ, ସଂପ୍ରଦାନ, ଅପାଦାନ, ସମ୍ବନ୍ଧ ଆଉ ଅଧିକରଣ ଏହି ଛ'ଟି ହେଉଛି କାରକ । ଆପଣ ହେଉଛନ୍ତି ଏହି କାରକମାନଙ୍କର କାରକ । ଜଗତର ଯେଉଁଠାରେ , ଯାହାଦ୍ୱାରା, ଯେଉଁଥିରେ, ଯାହାର ଯାହା ପାଇଁ, ଯେଉଁ ସବୁ କାର୍ଯ୍ୟ ଯେଉଁ ଭଳି, ଯେଉଁ ଯେଉଁ ସ୍ଥାନରେ, ଯେଉଁ ଯେଉଁ ସମୟରେ ହେଉଥାଏ ସେ ସମସ୍ତ ପ୍ରଧାନ ଆଉ ପୁରୁଷର ସଂଯୋଗରେ ହିଁ ହୋଇଥାଏ । ଆପଣ ଏ ସମସ୍ତର ସ୍ୱାମୀ, ପ୍ରଭୁ ତଥା ସର୍ବସ୍ୱ ।''

ଶ୍ରୀ ବଳରାମ କହିଲେ, '' ହେ ପିତାଶ୍ରି ! ଆପଣ ଏମିତି କ'ଣ କହୁଛନ୍ତି ? ଜଗତରେ ଯେଉଁ ଚୈତନ୍ୟ ଦେଖାଯାଉଛି, ତାହା ଜୀବ ଆଉ ପ୍ରାଣ ଦ୍ୱାରା ହିଁ ହୋଇଥାଏ । ଜୀବଙ୍କର ଯେତେବେଳେ ପ୍ରାଣଶକ୍ତିର ସଂଚାର ହୁଏ ସେତେବେଳେ ତହିଁରେ ଜୀବନ ଆସିଯାଏ । ପ୍ରାଣ ବାହାରିଗଲେ ଶରୀର ନିର୍ଜୀବ ହୋଇଯାଏ ।

ବସୁଦେବ କହିଲେ, " ହେ ବଳରାମ ! ଆପଣ ମୋତେ ଭୁଲେଇବାକୁ ଚେଷ୍ଟା କରନ୍ତୁନାହିଁ । ଆଜି ପର୍ଯ୍ୟନ୍ତ ମୁଁ ଭ୍ରମରେ ଥିଲି, କିନ୍ତୁ ମହର୍ଷିମାନେ କୁରୁକ୍ଷେତ୍ରରେ ମୋର ଅଜ୍ଞାନାନ୍ଧକାର ଦୂର କରିଦେଇଛନ୍ତି । ସେମାନଙ୍କ କୃପା ଲାଭ କରି ଆଜି ମୁଁ ଆପଣ ଦୁହିଁଙ୍କର ଯଥାର୍ଥ ରୂପ ଜାଣି ସାରିଛି । ହେ ଅଧୋକ୍ଷଜ ! ଆପଣ ଏହି ଜଗତକୁ ସଂକଳ୍ପରେ ହିଁ ରଚନା କରିଛନ୍ତି । ଏହି ଚିତ୍ର-ବିଚିତ୍ର ସଂସାରକୁ ରଚନାକରି ଆପଣ ଚୈତନ୍ୟ ସ୍ୱରୂପରେ ସ୍ୱୟଂ ଏ ସବୁଥିରେ ପ୍ରବେଶ କରିଯାଇଛନ୍ତି । ଆପଣ କ୍ରିୟାଶକ୍ତିରେ ଏହି ଦୃଶ୍ୟ ଜଗତକୁ ଉତ୍ପନ୍ନ କରିଛନ୍ତି । ପ୍ରାଣୀଙ୍କ ଠାରେ ପ୍ରୀଣନ କରିବାର ଯେଉଁ ଶକ୍ତି ଅଛି ତାହାର ବି ଆପଣ ପରମକାରଣ ପରମାତ୍ମା ଅଟନ୍ତି । ଜଡ଼-ଜଗତ ଆପଣଙ୍କ ପ୍ରେରଣା ବିନା କିଛି ବୋଲି କିଛି କରିପାରନ୍ତି ନାହିଁ । ତାହା ପ୍ରକାଶିତ ବି ହୋଇପାରେ ନାହିଁ । ଆପଣ ହିଁ ଆଲୋକ ପ୍ରଦାନ କରିଥାନ୍ତି । ମନ, ପ୍ରାଣ ଆଦି ତ ଅଚେତନ । ଆପଣ ହେଉଛନ୍ତି ଚୈତନ୍ୟଘନ । ଆପଣ ହିଁ କୁହନ୍ତୁ, ଆପଣ ଅଚେତନ ହୋଇ ଚେତନ ସଦୃଶ ହୁଅନ୍ତି କିପରି ? ପ୍ରାଣ ତ ସ୍ୱତଃ ଅଚେତନ ! ପରମାତ୍ମା - ସ୍ୱରୂପରେ ଆପଣ ତହିଁରେ ପ୍ରେରଣା କରନ୍ତି, ତା ପରେ ଯାଇ ତାହା କିଛି କ୍ରିୟା କରିବା ପାଇଁ ସମର୍ଥ ହୋଇପାରନ୍ତି । ସେମାନଙ୍କର ଯେତେ ଉଦ୍ୟୋଗ ସେ ସବୁ କେବଳ ଉଦ୍ୟୋଗ ମାତ୍ର । ତହିଁରେ କାର୍ଯ୍ୟକରିବାର ଶକ୍ତି ହେଉଛନ୍ତି ଆପଣ ପରମେଶ୍ୱର ।"

ଶ୍ରୀ ବଳଦେବ କହିଲେ, " ହେ ପିତୃଦେବ ! ସବୁଥିରେ ଚୈତନ୍ୟ ହେଉଛି ପୃଥକ୍ ପୃଥକ୍ ?"

ବସୁଦେବ କହିଲେ, " ନା ! ତାହା ବାହ୍ୟ ଦୃଷ୍ଟିରେ ପୃଥକ୍ ଦେଖାଯାଏ । କାଠ ଲମ୍ବା, ଚୌଡ଼ା, ଗୋଲାକାର ଆଦି ଯେଉଁଭଳି ଆକାରର ହୋଇଥାଏ ଅଗ୍ନି ଠିକ୍ ସେହିଭଳି ଦେଖାଯାଏ । କିନ୍ତୁ ପ୍ରତ୍ୟେକରେ ଏକା ଭଳି ଅଗ୍ନି ଥାଏ । ଆପଣ ଯେତେବେଳେ ଚନ୍ଦ୍ରକୁ ଆଲୋକ ଦିଅନ୍ତି, ଜ୍ୟୋତ୍ସ୍ନା ରୂପରେ ତାହା ବିକୀରଣ କରେ । ଆପଣ ହିଁ ଅଗ୍ନିରେ ତେଜ ରୂପରେ ବିଦ୍ୟମାନ । ସୂର୍ଯ୍ୟଙ୍କ ରଶ୍ମି ତଥା ପ୍ରଭା ହେଉଛନ୍ତି ଆପଣ । ବିଜୁଳିରେ ଯେଉଁ ଝଲକ ଦେଖାଯାଏ, ଯେଉଁ ସ୍ଫୁରଣ ଦେଖାଯାଏ ତାହା ହେଉଛନ୍ତି ଆପଣ । ପର୍ବତର ଯେଉଁ ସ୍ଥିରତା, ତାହା ହେଉଛି ଆପଣଙ୍କର ଶକ୍ତି । ପୃଥିବୀର ଗନ୍ଧଗୁଣ ବି ଆପଣଙ୍କର ଦାନ । ଯାହା ଯାହା ଦିଆ ହେବା କଥା ଆପଣ ତଦ୍-ତଦ୍ ଶକ୍ତି ରୂପ ରଖି ସେ ସବୁଥିରେ ପ୍ରବିଷ୍ଟ ହୋଇଯାଇଛନ୍ତି ।"

ଶ୍ରୀ ବଳଦେବ କହିଲେ, " ସମସ୍ତେ ଭୂତରେ ବିଚିତ୍ର ଶକ୍ତି ଅଛି, ନାନା ପ୍ରକାର ଗୁଣ ଅଛି, ଆଉ ସେଇଥିଯୋଗୁଁ ତ ତାହା ଜଗତକୁ ସୃଷ୍ଟି କରିବାରେ ସମର୍ଥ ହୋଇଥାନ୍ତି ।

ଶ୍ରୀ ବସୁଦେବ କହିଲେ, " ସେମାନେ କେବେ ସମର୍ଥ ହେଲେ ? ସବୁଥିରେ ଆପଣ ହିଁ ଗୁଣ ଆଉ ଶକ୍ତି ଦେଇ ଥାଆନ୍ତି । ପୃଥିବୀର ଗନ୍ଧଗୁଣ ଆପଣ, ସେଥିରେ ଧାରଣ କରିବାର

ଯେଉଁ ଶକ୍ତି ଅଛି ତାହା ମଧ୍ୟ ଆପଣଙ୍କ ଠାରୁ ପ୍ରାପ୍ତ ହୋଇଥାଏ । ଜଳରେ ସରସତା, ମାଧୁର୍ଯ୍ୟ, ତୃପ୍ତ କରିବାର ଆଉ ପବିତ୍ର କରିବାର ଶକ୍ତି ହେଉଛନ୍ତି ଆପଣ । ଅଗ୍ନିରେ ଉଷ୍ଣତା, ଦାହକ ଶକ୍ତି, ବାୟୁରେ ପ୍ରବାହ ଶକ୍ତି, ସ୍ପର୍ଶ, ଗୁଣ, ତଥା ସହ, ବଳ ଆଉ ତେଜ ହେଉଛନ୍ତି ଆପଣ । ଦଶ ଦିଗରେ ଆପଣହିଁ ବ୍ୟାପ୍ତ ହୋଇଛନ୍ତି । ଆକାଶରେ ଶବ୍ଦ, ଗୁଣ ତଥା ଅବକାଶ ଦେବାର ଶକ୍ତି ବି ଆପଣ । ପରା, ପଶ୍ୟନ୍ତୀ, ମଧ୍ୟମା ଆଉ ବୈଶାଖୀ ବାଣୀ ରୂପରେ ଆପଣ ହିଁ ସବୁ କରିଥାନ୍ତି । ଦେଖିବା, ଶୁଙ୍ଘିବା, କହିବା, ସ୍ୱାଦ ଚାଖିବା, ଶୁଣିବା, ଛୁଇଁବା, ଉଠିବା, ଧରିବା, ଛାଡ଼ିବା, ଚାଲିବା, ବୁଲିବା, ସୁଖାନୁଭବ କରିବା, ମଳମୂତ୍ର ତ୍ୟାଗ କରିବା ତଥା ଇନ୍ଦ୍ରିୟଙ୍କର ଅନ୍ୟ ସମସ୍ତ ବିଷୟକୁ ପ୍ରକାଶିତ ଆପଣ ହିଁ କରିଥାନ୍ତି । ସୂର୍ଯ୍ୟ, ଅଗ୍ନି, ଅଶ୍ୱିନୀ କୁମାର, ବରୁଣ, ଦିଗ, ବାୟୁ, ଇନ୍ଦ୍ର, ବିଷ୍ଣୁ, ପ୍ରଜାପତି ତଥା ନିଶୃତି ଆଦି ଇନ୍ଦ୍ରିୟଙ୍କ ଅଧିଷ୍ଠାତୃ ଦେବ ବି ଆପଣ । ଯେଉଁ ଶକ୍ତିରେ ବୁଦ୍ଧି କର୍ତ୍ତବ୍ୟାକର୍ତ୍ତବ୍ୟକୁ ସ୍ଥିରୀକୃତ କରେ ସେହି ଶକ୍ତି ବି ଆପଣ । ଆପଣ ହିଁ ଏହି ଜଗତର କାରଣ । କାର୍ଯ୍ୟ ନଷ୍ଟ ହୋଇଯିବା ପରେ କାରଣର ନାଶ ହୁଏ ନାହିଁ, ତାର ଅସ୍ତିତ୍ୱ ପୂର୍ବଭଳି ରହିଥାଏ । ଯେପରି ଘଟ, ସକୋରା, ନାଦ, ହାଣ୍ଡି, ଡେକ୍‌ଚି ଯେ ପର୍ଯ୍ୟନ୍ତ ମୃତ୍ତିକାରେ ତିଆରି ହୋଇନଥାଏ, ସେତେବେଳେ ବି ମୃତ୍ତିକା ଥାଏ, ଏ ସମସ୍ତ ତିଆରି ହୋଇଯିବା ପରେ ବି ସେହି ସବୁ ମୃତ୍ତିକା ଭିତରେ ବାହାରେ ସର୍ବତ୍ର ବିଦ୍ୟମାନ ରହିଥାଏ । ସେ ଗୁଡ଼ିକ ନଷ୍ଟ ହୋଇଯିବା ପରେ ମୃତ୍ତିକା ନଷ୍ଟ ହୁଏ ନାହିଁ । ତାହା ପୂର୍ବପରି ରହିଥାଏ । ଆଉ ସମୟ ବ୍ୟବଧାନରେ ନିଜର ପୂର୍ବରୂପରେ ତନ୍ମୟ ହୋଇଯାଏ । କୁଣ୍ଡଳ, କଙ୍କଣ, କର୍ଣ୍ଣଭୂଷଣ ତଥା ମୁଦ୍ରିକା ଆଦି ଆଭୂଷଣର ପୂର୍ବେ ସୁନା ଥିଲା, ତିଆରି ହେବାପରେ ସୁନାର ବୋଲି କୁହାଗଲା, ଭାଙ୍ଗିଯିବା ପରେ ବି ସୁନା ରହିଲା । ସୁନା ତ ଭାଙ୍ଗେ ନାହିଁ ! ତାହା ପୂର୍ବେ ଯେପରି ଥାଏ, ପରେ ବି ସେହିପରି ରହିଥାଏ ।

''ଏହିଭଳି ନଶ୍ୱର ପଦାର୍ଥରେ ସେଗୁଡ଼ିକର କାରଣ ରୂପ ଆପଣ ଅବିନାଶୀ ଆଉ ନିତ୍ୟ ତତ୍ତ୍ୱ ଅଟନ୍ତି । ଏହି ଯେଉଁ ସତ୍ତ୍ୱ, ରଜ, ତମ ତିନି ଗୁଣ ଅଛି, ଆଉ ସେମାନଙ୍କର ସକଳ ବୃତ୍ତି ମହତତ୍ତ୍ୱାଦି ଯୋଗମାୟା ଠାରେ ଆପଣ, ମାୟେଶ ପରଂବ୍ରହ୍ମରେ କଳ୍ପିତ ଥାଏ । ବାସ୍ତବରେ ଏହି ଭାବ ଆପଣଙ୍କଠାରେ ତ ନଥାଏ । ଏ ସମସ୍ତର କେବଳ କଳ୍ପନା କରାଯାଇଛି । ଆପଣ ଏ ସମସ୍ତ ବିକାରରେ କାରଣ ରୂପରେ ଅନୁଗତ ପ୍ରତୀତ ହେଉଥାନ୍ତି ।

ସଂସାରରେ ଏହି ଗୁଣର ପ୍ରବାହ ଅନାଦି କାଳରୁ ଠିକ୍ ଏହିଭଳି ପ୍ରବାହିତ ହେବାରେ ଲାଗିଛି । ଆପଣଙ୍କର ସୂକ୍ଷ୍ମଗତିକୁ ଯେଉଁମାନେ ଜାଣି ନାହାନ୍ତି, ଆପଣଙ୍କ ସଂପର୍କରେ ଯେଉଁମାନେ ଅନଭିଜ୍ଞ, ସେମାନେ ନିଜ କର୍ମ ଅନୁସାରେ, କର୍ମ ସୂତ୍ରରେ ନିବଦ୍ଧ ହୋଇ, ଜନ୍ମ-ମରଣ ରୂପକ ସଂସାର ଚକ୍ରରେ ପଡ଼ି ପୁନଃ ପୁନଃ ଜନ୍ମ ହୁଅନ୍ତି, ପୁନଃ ପୁନଃ ମରିଥାନ୍ତି ।''

ଶ୍ରୀ ବଳରାମ କହିଲେ, '' ହେ ପିତୃଦେବ ! ଆପଣଙ୍କର କ'ଣ ହୋଇଯାଇଛି କେଜାଣି ? ଆପଣ ଆଜି ଏମିତି ସବୁ କ'ଣ କହୁଛନ୍ତି ! ଆମ ଭଳି ପିଲାଙ୍କ ପାଖରେ ଏପରି ଗୂଢ଼ ଜ୍ଞାନଯୁକ୍ତ କଥା ନ ପଚାରିଥିଲେ ବି କାହିଁକି ବଖାଣୁଛନ୍ତି ? ଆପଣ ତ ଆମର ପରମ ଗୁରୁଦେବ !''

ଶ୍ରୀ ବସୁଦେବ କହିଲେ, '' ପ୍ରଭୁ ! ଆପଣଙ୍କଠାରୁ ବଡ଼ କେହି ନାହାନ୍ତି । ଆପଣ ସମସ୍ତଙ୍କଠାରୁ ବଡ଼ । ସବୁଠାରୁ ସାନ ତ ମୁଁ । ମୋତେ ମୋର ପ୍ରାରବ୍ଧ ଅନୁସାରେ ସମସ୍ତ ଇନ୍ଦ୍ରିୟାଦି ସାମର୍ଥ୍ୟ ସମ୍ପନ୍ନ ସୁନ୍ଦର ନିରୋଗ ଶରୀର ପ୍ରାପ୍ତ ହୋଇଛି । ଏପରି ଶରୀର ପାଇ ମୁଁ ତା ସଦୁପଯୋଗ କରିପାରି ନାହିଁ । ବ୍ୟର୍ଥରେ ମୁଁ ତାହା ଅତିବାହିତ କରିଦେଇଛି । ବ୍ୟର୍ଥ କାମରେ ମୁଁ ତାହା ନଷ୍ଟ କରି ଦେଇଛି । ମାୟା ବଶୀଭୂତ ହୋଇ ମୁଁ ମୋ ନିଜର ବାସ୍ତବିକ ସ୍ୱାର୍ଥ ବିଷୟରେ ଅସାବଧାନ ରହିଆସିଛି । କାଳରୂପ ଆପଣ ତ ଅନବରତ ଅବ୍ୟାହତ ଗତିରେ ପ୍ରବାହିତ ହେଉଛନ୍ତି । ଆପଣ ରୁହନ୍ତି ନାହିଁ । ମୁଁ ବିଷୟରେ ଫସି ଯାଇଛି । ଏତେ ବର୍ଷ ମୁଁ ଅର୍ଥହୀନ ଭାବରେ କଟାଇ ଦେଇଛି । ଏହି ପଞ୍ଚଭୂତର ଶରୀରକୁ ମୁଁ ନିଜର ସର୍ବସ୍ୱ ବୋଲି ଭାବି ଆସିଥିଲି । ମୁଁ ଏହା, ମୁଁ ତାହା; ଏହି ତୁ-ମୁଁ ଚକ୍ରରେ ମୁଁ ପେଶି ହେବାରେ ଲାଗିଛି । ଏହା ମୋ ଘର, ଏମାନେ ମୋହର ପିଲା ଝିଲା, ଏମାନେ ମୋ ଆତ୍ମୀୟସ୍ୱଜନ, ଏ ପ୍ରକାର ଅଭିମାନରେ ଫସିଯାଇ ମୁଁ ନିଜର ପ୍ରକୃତ ହିତାହିତ ଜ୍ଞାନ ହରାଇ ପକାଇଛି । ଏଥିପାଇଁ କାହାକୁ ଦୋଷ ଦେବା ! ନିଜର ଅଭିମାନ ରୂପ ସ୍ନେହ ବନ୍ଧନରେ ଏହି ଚରାଚର ଜଗତ ତ ବନ୍ଧା ହୋଇଛି । ଆପଣଙ୍କର ଏହି ଦୁର୍ଲଙ୍ଘନୀୟ ଦୈବୀମାୟା ସମସ୍ତଙ୍କ ନାକରେ ଦୌଡିବାନ୍ଧି ନଚାଇବାରେ ଲାଗିଛି ।''

ଏପରି କଥା ଶୁଣି ଶ୍ୟାମସୁନ୍ଦର କହିଲେ, '' ହେ ପିତୃଦେବ ! ଆପଣ ଏପରି କ'ଣ କହୁଛନ୍ତି ? ଆମେ ତ ଆପଣଙ୍କର ପାଳିତ ! ଆମେ ତ ଆପଣଙ୍କର ସନ୍ତାନ ।''

ଶ୍ରୀ ବସୁଦେବ କହିଲେ, '' ହଁ, ଠିକ୍ କହିଛନ୍ତି । ଆପଣ ହେଉଛନ୍ତି ପିଲା ଆଉ ଆପଣ ହେଉଛନ୍ତି ବୃଦ୍ଧ । ସବୁ ହେଉଛନ୍ତି ଆପଣ । ଆପଣ ଅଜନ୍ମା । ତେବେ ବି ପୃଥିବୀର ଭାରଭୂତ ରାଜାଙ୍କୁ ନିପାତ କରିବା ନିମିତ୍ତ ଆପଣ ଅବତାର ଧାରଣ କରିଛନ୍ତି । ଆପଣ ମୋତେ ଭୁଲାନ୍ତୁ ନାହିଁ । ଆଜି ପର୍ଯ୍ୟନ୍ତ ମୁଁ ଭୁଲି ରହିଥିଲି । ଆପଣ ଆପଣଙ୍କର ଅବତାରର ପ୍ରୟୋଜନ ବି ମୋତେ କହିଥିଲେ, କିନ୍ତୁ ମୁଁ ଏପରି ଏକ ମୂଢ଼ ଯେ, ତାହା ପୂରା ଭୁଲି ଯାଇଥିଲି । ଏବେ ଆପଣଙ୍କ କୃପାରୁ ହିଁ ଆପଣଙ୍କ ବିଷୟରେ ଯଥାର୍ଥ ଜ୍ଞାନ ହୋଇଛି । ଏବେ ହେ କୃପାଳୁ ! ହେ ଅଶରଣ ଶରଣ ! ହେ ଦୀନବନ୍ଧୋ ! ଏପରି ଦୟାକରନ୍ତୁ ଯେ ମୋତେ ସଂସାର ଭୟରୁ ମୁକ୍ତି ଦେଇପାରୁଥିବା ଆପଣଙ୍କ ପଦାରବିନ୍ଦର ଆଶ୍ରୟ ସବୁବେଳେ ମିଳୁଥିବ । ମୁଁ ଆପଣଙ୍କ ଶରଣରେ ଅଛି । ଏହି ଇନ୍ଦ୍ରିୟମାନଙ୍କ ପଛେ ପଛେ ଗୋଡ଼ାଇ ଗୋଡ଼ାଇ ମୁଁ ସଂପୂର୍ଣ୍ଣ କ୍ଳାନ୍ତ

ହୋଇଯାଇଛି । ଏମାନଙ୍କର କେବେ ବି ତୃପ୍ତି ହେଉନାହିଁ । **ଇନ୍ଦ୍ରିୟ ବିଷୟରେ ମାତିଥିବା ପ୍ରାଣୀ ନିଜର ଯଥାର୍ଥ ଲକ୍ଷ୍ୟକୁ ଭୁଲିଯାଏ ।** ତେଣୁ ମୁଁ ଏହି ଅନିତ୍ୟ, କ୍ଷଣଭଙ୍ଗୁର, ନାଶବାନ୍, ମରଣଶୀଳ ଶରୀରରେ ଆତ୍ମବୁଦ୍ଧି କରିଦେଇଥିଲି । ମୋର ଦ୍ୱିତୀୟ ମହାନ୍ ପ୍ରମାଦ ଏହା ଯେ, ଆପଣ ଅଖିଳକୋଟି-ନାୟକ ପରବ୍ରହ୍ମଙ୍କଠାରେ ମୁଁ ପୁତ୍ର-ବୁଦ୍ଧି ପୋଷଣ କରି ଆସିଲି । ଜନ୍ମ ନେବାବେଳେ ଆପଣ ମୋତେ ଜଣାଇଥିଲେ ଯେ ଆପଣ ଅଜନ୍ମା ହୋଇ ବି ଆପଣ ତିନିଥର ଆମର ଏଠାରେ ଯୁଗେ-ଯୁଗେ ଧର୍ମରକ୍ଷା ନିମନ୍ତେ ଅବତାର ହୋଇଛନ୍ତି । ଆପଣ ନା କର୍ମର ବନ୍ଧନରେ ବନ୍ଧା ହୋଇ ପାରନ୍ତି, ନା କର୍ମର କାରଣରେ ଜନ୍ମ ନିଅନ୍ତି । ଆପଣ ତ ଆପଣଙ୍କର ସ୍ୱଇଚ୍ଛାରେ ଆକାଶ ଭଳି ଅନେକ ଶରୀର ଧାରଣ କରି ନିଅନ୍ତି । ଯେଉଁଭଳି ଘଟାକାଶ, ମଠାକାଶ । ପୁଣି ଯେତେବେଳେ ଇଚ୍ଛାହୁଏ, ତାହା ପରିତ୍ୟାଗ କରିଦିଅନ୍ତି ।

'' ହେ ଦୀନବନ୍ଧୋ ! ଆପଣଙ୍କର ବିଭୂତି ରୂପିଣୀ ମାୟାର ଯଥାର୍ଥ ତତ୍ତ୍ୱ ଜାଣିବା ପାଇଁ କାହାର ସାମର୍ଥ୍ୟ ଅଛି ? ଆପଣଙ୍କର ବାସ୍ତବିକ ଜ୍ଞାନ କିପରି ହୋଇପାରେ ?''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ସର୍ବତ୍ର ଭଗବଦ୍ ଦୃଷ୍ଟି ହୋଇଯାଇଥିବାରୁ ଶ୍ରୀବସୁଦେବ ନିଜର ଦୁଇ ପୁଅ ରାମ-ଶ୍ୟାମଙ୍କୁ ଏପରି ଗୂଢ଼, ଜ୍ଞାନ ପୂର୍ଣ୍ଣ କଥା କହିଲେ, ସେତେବେଳେ ଏ ସବୁ କଥା ଶୁଣି ନଟବର ଶ୍ୟାମସୁନ୍ଦର ଖିଲି ଖିଲି ହସିବାରେ ଲାଗିଲେ । ଭଗବାନଙ୍କର ଲାସ୍ୟମୟୀ ହାସ୍ୟତ ଜନୋନ୍ମାଦକାରୀ ମାୟା । ଭଗବାନ ଯେଉଁଠାରେ ହସି ଦିଅନ୍ତି ସେଠାରେ ସମସ୍ତେ ବିମୋହିତ ହୋଇଯାଆନ୍ତି । ମାଧୁର୍ଯ୍ୟ ନିମନ୍ତେ ବସୁଦେବଙ୍କୁ ଏପରି ବିମୋହିତ କରି ଅତି ମଧୁର ସ୍ୱରରେ ଭଗବାନ୍ କହିଲେ, '' ହେ ପିତୃଦେବ ! ଆମେ ଆପଣଙ୍କ ଭାବକୁ ବୁଝିଲୁ । ଆପଣ ଏକ ନିମିର କରି ଆମକୁ, ପୁତ୍ରଙ୍କୁ ଏପରି ଗୂଢ଼ ଜ୍ଞାନତତ୍ତ୍ୱର ଉପଦେଶ ଦେଲେ । ଆପଣଙ୍କ ସବୁକଥା ଯୁକ୍ତି ସଂଗତ । ବାସ୍ତବରେ ଏହାହିଁ ତତ୍ତ୍ୱୋପଦେଶ । ଆପଣ ଆମକୁ ଈଶ୍ୱର ବୋଲି କହୁଛନ୍ତି, କିନ୍ତୁ ଆପଣ ଏପରି ଉପଦେଶ ଦେଲାବାଲା କିଏ ? ଏହା ବି ଟିକିଏ ଚିନ୍ତା କରନ୍ତୁ । ଆପଣ ବି ସେ, ମୁଁ ବି ସିଏ, ବଡ଼ଭାଇ ବଳରାମ ବି ସେୟା । ଆପଣଙ୍କୁ ଆଉ କେତେ କହିବି, ଏଇ ଦ୍ୱାରାବତୀ ନଗରୀ ସାରା, ଦ୍ୱାରକାର ସକଳ ନିବାସୀ, ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ସକଳ ଚରାଚର ପ୍ରାଣୀ ଯେତେ ଅଛନ୍ତି ସମସ୍ତେ ହେଉଛନ୍ତି ଭଗବତ୍‌ସ୍ୱରୂପ । ଏପରି ଭାବନା, ଏପରି ବୁଦ୍ଧି ସବୁବେଳେ ସ୍ଥାୟୀ ହୋଇ ରହିଥିବା ଉଚିତ । ସବୁଥିରେ ଭଗବାନ୍ ବ୍ୟାପ୍ତ ବୋଲି ଜାଣି ସମସ୍ତଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରିବା ଉଚିତ । ଆପଣ ଦେଖନ୍ତୁ, ଏହି ସମଗ୍ର ପୃଥିବୀ, ଜଳ, ତେଜ ତଥା ଆକାଶ ହେଉଛି ପଞ୍ଚ ମହାଭୂତ । ଏମାନେ ହେଉଛନ୍ତି ଜଗତକୁ ରଚନା କରିବାର କାରଣ । ପୃଥିବୀରେ ନାନା ପ୍ରକାର ଛୋଟ, ବଡ଼, ଲମ୍ୱା, ଚୌଡ଼ା, ଓଜନିଆ ତଥା ହାଲୁକା ବସ୍ତୁ ତିଆରି ହୁଏ । ଜଳର ବି ସମୁଦ୍ର, ସରିତା,

ପୁଷ୍କରିଣୀ, କୂପ, ସରୋବର ତଥା ନଦୀ ନାଳ ଅଛି । ଅଗ୍ନି ବି କାରଣବଶରେ ଅନେକ ପ୍ରକାର ହୋଇଯାଏ । ବାୟୁ ବଡ଼ ସ୍ଥାନରେ ବେଶୀ ଛୋଟ ସ୍ଥାନରେ କମ୍ ଏପରି ପରିପୂର୍ଣ୍ଣ ହୋଇଯାଏ । ଆକାଶ ବି ଘଟାକାଶ, ମଠାକାଶ ଆଦି ଭେଦରେ ଛୋଟ ବଡ଼ ପ୍ରତୀୟମାନ ହୁଏ । ଏହିଭଳି ନିତ୍ୟ, ନିର୍ଗୁଣ, ସ୍ୱୟଂ ପ୍ରକାଶ ଆତ୍ମା ନିଜ ଦ୍ୱାରା ରଚିତ ହୋଇଥିବା ମହତ୍ତ୍ୱ, ଅହଂତତ୍ତ୍ୱ ତଥା ଇନ୍ଦ୍ରିୟାଦି ଗୁଣ ଦ୍ୱାରା, ସେମାନଙ୍କର କାର୍ଯ୍ୟରୂପ ମନୁଷ୍ୟାଦି ଦେହରେ ଯଦିଓ ଏକ, ତେବେ ଅଦ୍ୱିତୀୟ । ତେବେ ବି ମନୁଷ୍ୟାଦି ଶରୀରରେ ଏକ ହୋଇ ବି ଅନେକ ପ୍ରକାର ଭଳି ତଥା ଅନ୍ୟ ଭଳି ପ୍ରତୀୟମାନ ହେଉଥାଏ । ଏସବୁ ହେଉଛି ଆତ୍ମାର ପସରା । ଆତ୍ମା ହିଁ ନାମ ରୂପରେ ଆଭାସିତ ହୋଇ ଜଗତରେ ଦୃଷ୍ଟିଗୋଚର ହେଉଛି ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଭଗବାନ୍ ଏପରି ଗୂଢ଼ ବଚନ କହିବା ପରେ, ସେ ଆତ୍ମାର ସର୍ବବ୍ୟାପକତା ଶୁଣାଇବା ପରେ, ଶ୍ରୀ ବସୁଦେବଙ୍କର ଭେଦ-ବୁଦ୍ଧି ନଷ୍ଟ ହୋଇଗଲା । ସେ କୃତକୃତ୍ୟ ହୋଇଗଲେ । ଅତ୍ୟଧିକ ପ୍ରସନ୍ନତାରେ ସେ ମୌନ ହୋଇଗଲେ ।

'' ଏଥର ଦେବକୀ ତାଙ୍କର ମରିଯାଇଥିବା ପୁତ୍ରଙ୍କୁ ଆଣିବା ପାଇଁ, ଦର୍ଶନ କରାଇବା ପାଇଁ ରାମ ଓ ଶ୍ୟାମଙ୍କୁ କହିଥିଲେ, ସେହି କଥା ପ୍ରସଙ୍ଗ କହୁଛି ଶୁଣନ୍ତୁ ।''

## ଛପ୍ପୟ

*ମୋ ପୈ କିରପା କରୋ ଶରନ ତୁମରୀ ହୌଂ ଆୟୋ ।*
*ଇନ୍ଦ୍ରିୟ ବିଷୟନି ଫଁସ୍ୟୋ ସମୟ ସବ ବ୍ୟର୍ଥ ଗଁବାୟୋ ॥*
*ସୁନି କେ ପିତୁ କେ ବଚନ ଶ୍ୟାମସୁନ୍ଦର ସକୁଚାୟେ ॥*
*ଆତ୍ମଜ୍ଞାନଯୁତ ମଧୁର ବିହଁସି ବର ବଚନ ସୁନାୟେ ॥*
*ସବ ଭଗବତ୍ କେ ରୂପ ହୈ, ମୈଂ ତୁମ ବଲ ୟେ ଚରାଚର ।*
*ଆତ୍ମା ଅଦ୍ୱୟ ଏକ ରସ, ନିତ୍ୟ ନିରଂଜନ ପରାବର ॥*



# ଦେବକୀ ମୃତପୁତ୍ରଙ୍କୁ ଦେଖିଲେ

**ତଥା ମେ କୁରୁତଂ କାମଂ ଯୁବାଂ ଯୋଗେଶ୍ୱରେଶ୍ୱରୌ ।**
**ଭୋଜରାଜହତାନ୍ ପୁତ୍ରାନ୍ କାମୟେ ଦ୍ରଷ୍ଟୁମାହୃତାନ୍ ।।☆**

(ଶ୍ରୀ ଭା. ୧୦ସ୍କ. ୮୫ ଅ. ୩୩ ଶ୍ଳୋକ)

## ଛପ୍ପୟ

*ସୁନି ହରିକୋ ଉପଦେଶ ଭୟେ ବସୁଦେବ ସୁଖାରେ ।*
*ତବଈ ଆଈ ମାତୁ ମୁଦିତ ବଳ ଶ୍ୟାମ ନିହାରେ ।।*
*ବୋଲୀଂ ମାତା-ପ୍ରଥମ ମୃତକ ଗୁରୁ ସୁତ ତୁମ ଆନେ୍ୟା ।*
*ଯୋଗେଶ୍ୱର ତୁମ ଉଭୟ ମୁନିନି ତୈଃ ମଖମହଁ ଜାନେ୍ୟା ।।*
*ମେରେ ଛୈ ସୁତ କଂସନେ, ଜନମତ ମାରେ ସୁଘର ସବ ।*
*ତୁମ ସମର୍ଥ ସର୍ବଜ୍ଞ ହୋ, ତିନିହିଁ ଦିଖାଓ ଲାଇ ଅବ ।।*

ମାତୃହୃଦୟ ଏପରି ଜଟିଳ ପ୍ରହେଳିକାମୟ ଯେ ଏହାକୁ ଯଥାର୍ଥ ଭାବରେ ଚିହ୍ନିବା ଆଜି ପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ । ମାତାର ତା ସନ୍ତାନ ପ୍ରତି କେତେ ଅନୁରାଗ ଅଛି, ତାହା କଳନା କରିବା ବର୍ତ୍ତମାନ ସୁଦ୍ଧା ସମ୍ଭବ ହୋଇନାହିଁ, କି ଏହାକୁ ଉପମା ଦେଲାଭଳି, ସମତୁଲେ କରିବା ଭଳି ସଂସାରରେ କିଛି ନାହିଁ । ଥରେ ମାତା ଯାହାକୁ ନ'ମାସ ପର୍ଯ୍ୟନ୍ତ ଗର୍ଭରେ ଧାରଣ କରିଦେଇଛି, ସେ ଜନ୍ମ ହେବାପରେ ଯଦି କେଉଁଆଡ଼େ ଚାଲିଯାଏ, ଅନ୍ୟ କେଉଁଠାରେ ଲାଳିତ ପାଳିତ ହୁଏ, ଏହି ଲୋକରେ ହେଉ ଅଥବା ପରଲୋକରେ, ସେ ତାକୁ କଦାପି ଭୁଲିପାରେ ନାହିଁ । ଆମର କୋଡ଼ିଏଟି ଆଙ୍ଗୁଠି ଭିତରୁ ସବୁଠାରୁ ସାନ, କାଣିଆଙ୍ଗୁଠିକୁ କାଟିଦେଲେ ଯେତିକି କଷ୍ଟ ହୁଏ, ସବୁଠାରୁ ବଡ଼ ଆଙ୍ଗୁଠିକୁ କାଟିଲେ ଠିକ୍ ସେତିକି କଷ୍ଟ ଅନୁଭବ ହୁଏ ଓ ଜୀବନ ଥିବା ପର୍ଯ୍ୟନ୍ତ ତାହା ମନେ ରହେ । ସେହି ଭଳି ପୁତ୍ର ଦ୍ୱାରା ମାତାକୁ

---

☆ ଶୁଣ ହେ କୃଷ୍ଣ ହଳଧର । ମହାମହିମା ଯୋଗେଶ୍ୱର ।।
ବିଦ୍ୟାପଠନ କାଳେ ପୁଣି । ଗୁରୁଙ୍କ ମଲାପୁତ୍ର ଆଣି ।।
ଗୁରୁଦକ୍ଷିଣା ଦେଇଅଛ । ଏହା ମୁଁ ଜାଣଇ ପ୍ରତ୍ୟକ୍ଷ ।।
ଏଣୁ ମୋହର ବାକ୍ୟ କର । ତୁମ୍ଭେ ଯେ ଭୁବନ ଈଶ୍ୱର ।।
କଂସ ମାଇଲା ଯେତେ ସୁତ । ତୁମ୍ଭର ଜ୍ୟେଷ୍ଠ ଷଡ଼ଭ୍ରାତ ।।
ତାହାଙ୍କୁ ଲୋଚନେ ମୁଁ ଦେଖି । ଜୀବନ କରିବଇଁ ସୁଖୀ ।।

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୯୧ ଅ.)

କଷ୍ଟ ଅନୁଭୂତ ହୁଏ । ସନ୍ତାନ ହେଉଛି ମାତାର ଦ୍ୱିତୀୟ ହୃଦୟ । ଆଉ ସେଇଥିପାଇଁ ଗର୍ଭବତୀ ନାରୀଙ୍କୁ ଦ୍ୱିହୃଦୟା କୁହାଯାଏ । କୌଣସି ମାତାକୁ ଯଦି ପଚରାଯାଏ ଯେ ତାଙ୍କ ପାଇଁ ସଂସାରରେ ସବୁଠାରୁ ପ୍ରିୟ ବସ୍ତୁ କ'ଣ ତେବେ ସେ ସନ୍ତାନ ବୋଲି ହିଁ କହିଥାନ୍ତି ।

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ବସୁଦେବଙ୍କ ସହିତ ରାମ ଓ ଶ୍ୟାମ ଯେତେ ସବୁ କଥା ହେଉଥିଲେ ସର୍ବଦେବମୟୀ ଭଗବତୀ ମାତା ଦେବକୀ ଶୁଣୁଥିଲେ । କୁରୁକ୍ଷେତ୍ର ଯଜ୍ଞ ସମୟରେ ବି ସେ ମହାନ୍ ମହର୍ଷିମାନଙ୍କ ଠାରୁ ରାମ-ଶ୍ୟାମ ଦୁହେଁ ଅବତାର ବୋଲି ଅନେକ ଥର ଶୁଣିଥିଲେ । ଆଜି ନିଜର ସ୍ୱାମୀ ଏହି ରାମ-ଶ୍ୟାମଙ୍କୁ ପରମାତ୍ମା ବୋଲି ହୃଦୟଙ୍ଗମ କରି ସ୍ତୁତି କରୁଛନ୍ତି । ତେଣୁ ସେ ମନେ ମନେ ଭାବିଲେ, 'ମୋର ଏଇ ପୁଅମାନେ ଯଦି ଈଶ୍ୱର, ସର୍ବସମର୍ଥ, ତେବେ ମୁଁ ଏମାନଙ୍କୁ କିଛି ମାଗିବି ।' ପରମୁହୂର୍ତ୍ତରେ ପୁଣି ସେ ଭାବିଲେ, 'ମାଗିବାକୁ ତ ମନକରୁଛି, ତେବେ ମାଗିବି କ'ଣ ? ଧନ-ଧାନ୍ୟର ତ କମ୍ ନାହିଁ !' ଏପରି ସମୟରେ ତାଙ୍କ ପୂର୍ବ ନବଜାତ ଶିଶୁମାନଙ୍କ କଥା ମନେପଡ଼ିଗଲା, ଯେଉଁମାନଙ୍କୁ କଂସ ଜନ୍ମ ହେବାମାତ୍ରେ ବଧ କରିଥିଲା । ସେମାନଙ୍କ କଥା ମନେ ପଡ଼ିଯିବା କ୍ଷଣି ମାତୃହୃଦୟ ଦ୍ରବିତ ହେଲା । ସେ ଭାବିବାରେ ଲାଗିଲେ, ' ରାମ-ଶ୍ୟାମଙ୍କୁ ଏହି ମରିଯାଇଥିବା ପୁଅମାନଙ୍କୁ ଆଣିବା ପାଇଁ କହିଲେ, କିମିତି ହୁଅନ୍ତା !' ଶୁଣିଛି, ଅବନ୍ତୀ ନଗରକୁ ଗୁରୁ ସାନ୍ଦିପନିଙ୍କ ଆଶ୍ରମରେ ଶିଷ୍ୟ ଥିବାବେଳେ ମୁନିଙ୍କ ମୃତପୁତ୍ର ଏମାନେ ଯମଲୋକରୁ ଆଣି ଦେଇଥିଲେ । ଆଉ ସେଇ ପୁଅକୁ ଗୁରୁମାତାଙ୍କ ହାତରେ ଗୁରୁଦକ୍ଷିଣା ରୂପେ ପ୍ରଦାନ କରିଥିଲେ । ଏପରି କରିବା ଦ୍ୱାରା ସେ ଗୁରୁଋଣ ମୁକ୍ତ ହୋଇଥିଲେ । ମୁଁ ମୋର ମୃତ ପୁତ୍ରଙ୍କୁ ଆଣିଦେବାକୁ କହିଲେ କ୍ଷତି କ'ଣ ?'

ଏମିତି ଅନେକ ଥର ଭାବିବା ପରେ ଦିନେ ମାତା ଏକାନ୍ତରେ ରାମ-ଶ୍ୟାମଙ୍କୁ କହିଲେ, 'ତୁମେ ଦୁହେଁ ନିଶ୍ଚୟ ଈଶ୍ୱର ବୋଲି ମୁଁ ଶୁଣିବାକୁ ପାଇଛି । ତୁମେ ଦୁହେଁ ସର୍ବସମର୍ଥ । ତେଣୁ ମୋର ଗୋଟିଏ କାମ କରି ଦିଅନ୍ତ ନି ?' ମାତା ଦେବକୀ ଏପରି କହୁଥିବା ସମୟରେ ମୃତପୁତ୍ରଙ୍କ କଥା ମନେପଡ଼ିଯିବାରୁ ଶୋକାକୁଳା ହୋଇଗଲେ । ହୃଦୟ ଦ୍ରବିତ ହୋଇଯିବାରୁ ବିକଳତା ବଢ଼ିଗଲା ଓ ସେ କେବଳ ଅଶ୍ରୁ ଝରାଇ କାନ୍ଦିବାରେ ଲାଗିଲେ ।

ମାତାଙ୍କର ଏପରି ଅବସ୍ଥା ଦେଖି ଶ୍ୟାମସୁନ୍ଦର ତାଙ୍କୁ ଧୈର୍ଯ୍ୟ ଦେବାକୁ ଯାଇ କହିଲେ, ''ହେ ମାତେଶ୍ୱରି ! ଆପଣ ଏପରି ବ୍ୟାକୁଳା କାହିଁକି ହେଉଛନ୍ତି ? ଆପଣ ମୋତେ ଦୁଃଖର କାରଣ କୁହନ୍ତୁ । ସମର୍ଥ ହୋଇ ସୁଦ୍ଧା ଯେଉଁ ପୁତ୍ର ପିତା-ମାତାଙ୍କ ଦୁଃଖ ଦୂର କରେ ନାହିଁ ସେପରି ପୁତ୍ରକୁ ଧିକ୍କାର କରିଆସେ । ଆପଣ କାହିଁକି ଏତେ ଦୁଃଖ କରୁଛନ୍ତି ?''

କାନ୍ଦି, କାନ୍ଦି, ଧକେଇ ଧକେଇ ମାତା ଯଶୋଦା ଆଖିରୁ ଲୁହ ପୋଛୁ ପୋଛୁ ଭଗବାନ୍ ଶ୍ୟାମସୁନ୍ଦର ଓ ବଳରାମଙ୍କୁ କହିଲେ, '' ହେ ଅପ୍ରମେୟାତ୍ମନ୍ ରାମ ! ହେ ଯୋଗେଶ୍ୱରଙ୍କ ଈଶ୍ୱର କୃଷ୍ଣଚନ୍ଦ୍ର ! ମୁଁ ଋଷିମାନଙ୍କ ଶ୍ରୀମୁଖରୁ ଶୁଣିଛି, ମୋର ବି ଏଥିରେ ଦୃଢ଼ ବିଶ୍ୱାସ ହୋଇଯାଇଛି ଯେ ଆପଣ ସମସ୍ତ ପ୍ରଜାପତିଙ୍କର ବି ପତି । ଆପଣ ହେଉଛନ୍ତି ଆଦିପୁରୁଷ ଶ୍ରୀମନ୍ନାରାୟଣ ।'

ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର କହିଲେ, ''ମା ! ବାପାଙ୍କ ଭଳି ଆପଣଙ୍କର କ'ଣ ହୋଇଛି ! ସେ'ଦିନ ବାପା ବି ଇଆଡୁ ସେଆଡୁ ଇମିତି କେତେ କ'ଣ କହୁଥିଲେ । ଆମେ କିନ୍ତୁ ଆପଣଙ୍କର ପୁଅ । ଆପଣଙ୍କ ପେଟରୁ ଆମେ ଜନ୍ମ ହୋଇଛୁ ।''

ମାତା ଦେବକୀ କହିଲେ, ''ପ୍ରଭୁ ! ଆପଣ କାହାରି ବି ପୁଅ ନୁହନ୍ତି । ଆପଣ ତ ଭୂମିର ଭାର ହାଲୁକା କରିବା ନିମନ୍ତେ ଅବତାର ହୋଇଛନ୍ତି । ଯିଏ ଅସୁର ହୋଇ ସୁଦ୍ଧା ରାଜାରୂପରେ ଧରାପୃଷ୍ଠରେ ଉତ୍ପନ୍ନ ହୋଇଥାନ୍ତି, ଯେଉଁମାନେ ଶାସ୍ତ୍ରମାର୍ଗକୁ ଲଙ୍ଘନ କରି ବ୍ୟବହାର କରନ୍ତି, ଯେଉଁମାନେ ନିଜ ପ୍ରାଣକୁ ତୃପ୍ତ, ସନ୍ତୁଷ୍ଟ କରି ରଖିବାକୁ ପରମ ପୁରୁଷାର୍ଥ ବୋଲି ମନେକରନ୍ତି ଏବେ ଯାହାର ପୁଣ୍ୟମୟ ପୁରୁଷାର୍ଥ ସମାପ୍ତ ହୋଇଗଲା, ସେପରି ରାଜାରୂପ ଅସୁରଙ୍କ ବିନାଶ କରି ଭୂ-ଭାର ଲାଘବ କରିବା ଉଦ୍ଦେଶ୍ୟରେ ଆପଣ ଦୁଇଜଣ ସ୍ୱଇଚ୍ଛାରେ ଅବନୀ ପୃଷ୍ଠରେ, ମୋ ଗର୍ଭରେ ଅବତରିତ ହୋଇଛନ୍ତି । ଆପଣ ନିଜେ ଏହି ଜଗତକୁ କରନ୍ତି ନାହିଁ । ଆପଣଙ୍କ ମାୟାର ଅଂଶାଂଶରୁ ଉତ୍ପନ୍ନ ତ୍ରିଗୁଣରେ ହିଁ ଏହି ସମ୍ପୂର୍ଣ୍ଣ ପ୍ରପଞ୍ଚର ରଚନା ହୋଇଯାଏ । ହେ ପ୍ରଭୁ ! ଆପଣ ମୋର ଇଚ୍ଛା ବି ପୂରଣ କରନ୍ତୁ । ମୋ ପ୍ରତି କୃପା ପ୍ରଦାନ କରନ୍ତୁ । ମୁଁ ଆପଣଙ୍କ ଶରଣ ଗ୍ରହଣ କରିଛି ।''

ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର କହିଲେ, '' ହେ ମା ! ଆପଣ ଏଡ଼େ ବିସ୍ତୃତ ଭୂମିକାର ଅବତାରଣା କାହିଁକି କରୁଛନ୍ତି ? କଥା କ'ଣ କହୁନାହାନ୍ତି ! କ'ଣ କଲେ ଆପଣଙ୍କୁ ଭଲ ଲାଗିବ କୁହନ୍ତୁ ।''

ଦେବକୀମାତା କହିଲେ, '' ହେ ମହାଯୋଗେଶ୍ୱର ! ଦେଖ, ଯେ ପର୍ଯ୍ୟନ୍ତ ତୁମର ଅବତାର ହୋଇନଥିଲା, ତା ପୂର୍ବରୁ ମୋ ଗର୍ଭରୁ ଛ'ପୁତ୍ର ଜନମ ହୋଇଥିଲେ । ମୋର ଦୁଷ୍ଟ ଭାଇ କଂସ ସେମାନଙ୍କୁ ଜନ୍ମ ହେବା ସଙ୍ଗେ ସଙ୍ଗେ ବଧ କରିଦେଇଛି । ମୁଁ ମୋର ସେଇ ପୁଅମାନଙ୍କୁ ଦେଖିବାକୁ ଚାହୁଁଛି ।''

ନଟନାଗର ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର କୃତ୍ରିମ ଆଶ୍ଚର୍ଯ୍ୟ ପ୍ରକାଶ କରିବାର ଅଭିନୟ କରି କହିଲେ, '' ମା ! ଆପଣ କ'ଣ କହୁଛନ୍ତି ? ମରିଯାଇଥିବା ଲୋକ କେବେ ପୁଣି ଫେରି ଆସି ପାରେ କି ?''

ମାତା ଦେବକୀ ଅତି ଦୀନ ଦୁଃଖୀଙ୍କ ଭଳି ଧୀର ସ୍ୱରରେ କହିଲେ, '' ପ୍ରଭୁ ! ଆପଣ ମୋତେ ଆଉ ଭୁଲାଇ ଦିଅନ୍ତୁ ନାହିଁ । ମୁଁ ସବୁ ଜାଣିଛି । ଆପଣଙ୍କ ପାଇଁ ଅସମ୍ଭବ କିଛି ନାହିଁ । ମୁଁ ଆପଣଙ୍କ ସମ୍ବନ୍ଧରେ ସବୁ ଖବର ନେଇ ସାରିଛି । ଆପଣ ଦୁହେଁ ଅବନ୍ତୀପୁରୀରେ ଯେତେବେଳେ ଆଚାର୍ଯ୍ୟ ସାନ୍ଦିପନିଙ୍କ ପାଖରେ ପଢୁଥିଲେ ସେତେବେଳେ ଆପଣ ଗୁରୁଦକ୍ଷିଣା ଯାଚିଲେ । ସେ ଆପଣଙ୍କୁ ତାଙ୍କ ପତ୍ନୀଙ୍କ ପାଖକୁ ପଠାଇଦେଲେ । ଗୁରୁପତ୍ନୀ ଆପଣଙ୍କୁ ଅନେକ ଦିନ ପୂର୍ବେ ମରିଥିବା ତାଙ୍କ ପୁଅକୁ ପାଇବା ପାଇଁ ଦକ୍ଷିଣା ଯାଚନା କଲେ । ସେତେବେଳେ ଆପଣ ଦୁହେଁ ଯମଲୋକରୁ ଗୁରୁପୁତ୍ରଙ୍କୁ ଆଣି ଗୁରୁଦକ୍ଷିଣା ପ୍ରଦାନ କରି ଋଣମୁକ୍ତ ହୋଇଥିଲେ । ସେହିଭଳି କଂସ ହାତରେ ମରିଥିବା ମୋ ପୁଅମାନଙ୍କୁ ଆପଣ ଆଣିଦିଅନ୍ତୁ । ମୁଁ ମୋର ସେହି ପୁଅ ମାନଙ୍କୁ ଥରୁଟିଏ ମାତ୍ର ଦେଖିବାକୁ ଚାହୁଁଛି ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ମାତାଙ୍କର ଅନୁନୟ ବିନୟ ଶୁଣି ଭକ୍ତବାଞ୍ଛାକଳ୍ପତରୁ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଭାଇ ଶ୍ରୀବଳରାମଙ୍କୁ ସାଙ୍ଗରେ ଧରି ସୁତଳ ଲୋକକୁ ଗଲେ, ଯେଉଁଠାରେ ଅସୁରରାଜ ବଳି ନିବାସ କରୁଥିଲେ । ଦୈତ୍ୟରାଜ ବଳି ପରମେଶ୍ୱରଙ୍କୁ ନିଜ ଧାମରେ ଦେଖି ସପରିବାର କୃଷ୍ଣ-ବଳରାମଙ୍କ ପଦାରବିନ୍ଦରେ ଶ୍ରଦ୍ଧା-ଭକ୍ତିର ସହିତ ପ୍ରଣାମ କଲେ । ଦୁହିଁଙ୍କର ଦେବଦୁର୍ଲଭ ଦର୍ଶନରେ ଆନନ୍ଦ ବିହ୍ୱଳ ହୋଇ ଦୈତ୍ୟରାଜ ବଳି ଚରଣରଜ ମସ୍ତକରେ ଧାରଣ କଲେ । ସେ ଅତି ପ୍ରସନ୍ନତାର ସହିତ ଦୁଇ ଭାଇଙ୍କୁ ସୁନ୍ଦର ରତ୍ନସିଂହାସନରେ ବସାଇ ଦେଲେ ।

ଦୁଇ ଭାଇ ସୁଖ ପୂର୍ବକ ବସିଯିବା ପରେ ଦୈତ୍ୟରାଜ ବଳି ସେମାନଙ୍କୁ ପୂଜା କରିବା ପାଇଁ ପ୍ରସ୍ତୁତ ହେଲେ । ସେତେବେଳେ ନିଜ ପୁରରେ ଭଗବାନଙ୍କୁ ଦର୍ଶନ କରି ଦୈତ୍ୟରାଜ ବଳି ଏତେ ଆନନ୍ଦିତ ହୋଇଥିଲେ ଯେ ତାର ସୀମା ନଥିଲା । ଭାବବିହ୍ୱଳ ଦୈତ୍ୟରାଜ ଭଗବାନଙ୍କର ପଦ ଧୌତକଲେ, ଜଳ ସେବନ କଲେ । ମହାମହିମମୟ ଭଗବାନଙ୍କର ଯେଉଁ ପାଦ, ଯେଉଁପାଦରୁ ଗଙ୍ଗା ଦେବୀ ବାହାରିଛନ୍ତି, ଯେଉଁ ପାଦ ଲାଗି ଅହଲ୍ୟା ଉଦ୍ଧାର ହୋଇଥିଲେ, ଯେଉଁ ପାଦଧରି ଭୂଷଣ୍ଡକାକ କଳ୍ପବଟରେ ଆସନ ପାଇଥିଲେ, ଯେଉଁ ପାଦର ସେବା କରି ଅଗସ୍ତି ମହର୍ଷି ହୋଇଛନ୍ତି, ଯେଉଁ ପାଦର ସେବାକରି ରାକ୍ଷସରାଜ ବିଭୀଷଣ ଅମର ରାଜା ହେଲେ, ଯେଉଁ ପାଦକୁ ଆଶ୍ରୟ କରି ପ୍ରହ୍ଲାଦ ଦେବସଭାର ଶୋଭାବର୍ଦ୍ଧନ କଲେ, ଯେଉଁ ପାଦକୁ ଧ୍ୟାନକରି ଧ୍ରୁବ ଶିଶୁସାର ଚକ୍ରରେ ସ୍ଥାନ ପାଇଲେ, ଯେଉଁ ପାଦର ମହିମା ବ୍ରହ୍ମା ବି କଳନା କରିପାରି ନାହାନ୍ତି, ସେଇ ପାଦକୁ ଦୈତ୍ୟରାଜ ସ୍ୱହସ୍ତରେ ପ୍ରକ୍ଷାଳନ କରି ପାଦୋଦକ ସେବନ କରି କୃତାର୍ଥ ହୋଇଗଲେ । ଏହାପରେ ଦୈତ୍ୟରାଜ ଅର୍ଘ୍ୟ, ଆଚମନୀୟ, ସ୍ନାନୀୟ ଜଳ ନେଇ ବସ୍ତ୍ର, ଯଜ୍ଞୋପବିତ, ଆଭୂଷଣ, ଚନ୍ଦନ, ଧୂପ, ଦୀପ,

ନୈବେଦ୍ୟ, ତାମ୍ବୁଳ, ପୁଗୀଫଳ ତଥା ଅନ୍ୟାନ୍ୟ ଫଳ ସମର୍ପଣ କଲେ । ସେ ଷଡ଼ରସ ବ୍ୟଞ୍ଜନ ସହିତ ଦିବ୍ୟାନ୍ନ ପ୍ରଭୁଙ୍କୁ ଶ୍ରଦ୍ଧା ଭକ୍ତିର ସହିତ ଖୁଆଇଲେ । ଏହାପରେ ଦୈତ୍ୟରାଜ ନିଜକୁ, ନିଜ ସହିତ ପୁତ୍ର, ପୌତ୍ର, ଧନ, ଧାନ୍ୟ ସମସ୍ତ ପ୍ରଭୁଙ୍କ ପାଦପଦ୍ମରେ ସମର୍ପଣ କରିଦେଲେ । ସେତେବେଳେ ତାଙ୍କ ନୟନ ଯୁଗଳରୁ ଆନନ୍ଦାଶ୍ରୁ ନିଗିଡ଼ିବାରେ ଲାଗିଥିଲା । ତାଙ୍କର ଶରୀର ପୁଲକିତ ହୋଇଯାଇଥିଲା । ଦୈତ୍ୟରାଜ ବଳି ଆନନ୍ଦ ଗଦ୍‌ଗଦ୍ ସ୍ୱରରେ ଦୁଇ ଈଶ୍ୱରଙ୍କୁ ବିନୟ ସ୍ତୁତି କରି କହିଲେ, " ପ୍ରଭୁ ! ଏଇ ସାଂସାରିକ ବନ୍ଧନରୁ ମୁକ୍ତି ହେବାର ଉପାୟର ଉପଦେଶ ଦେବା ହୁଅନ୍ତୁ ।"

ଶ୍ରୀ ଭଗବାନ୍ କହିଲେ, " ରାଜନ୍ ! ତୁମେ ତ ମୋର ପରମଭକ୍ତ । ତୁମର ସାଂସାରିକ ବନ୍ଧନ ବୋଲି କିଛି ନାହିଁ । ବର୍ତ୍ତମାନ ମୁଁ ଏକ ବିଶେଷ କାମରେ ତୁମ ପାଖକୁ ଆସିଛି ।"

ଦୈତ୍ୟରାଜ ବଳି କହିଲେ, " ଆଜ୍ଞା ଦେବା ହୁଅନ୍ତୁ ଭଗବାନ୍ !"

ଶ୍ରୀ ଭଗବାନ କହିଲେ, " ତୁମ ପାଖରେ ଛ'ଜଣ ଅସୁର ଅଛନ୍ତି । ସେମାନଙ୍କୁ ଆମେ ନେବାପାଇଁ ଆସିଛୁ ।"

ଦୈତ୍ୟରାଜ ବଳି ପଚାରିଲା, " ପ୍ରଭୁ ! ସେଇ ଛ' ଜଣ ଅସୁର କିଏ ? ସେମାନଙ୍କୁ କୁଆଡ଼େ ନେବେ ? ସେମାନଙ୍କ ପରିଚୟ ମୋତେ ଦିଅନ୍ତୁ ।"

ଶ୍ରୀ ଭଗବାନ କହିଲେ, " ଏହି ପ୍ରଥମ ସ୍ୱାୟମ୍ଭୁବ ମନ୍ୱନ୍ତରରେ ମହର୍ଷି ମରୀଚିଙ୍କର ଊର୍ଣ୍ଣ ନାମକ ସ୍ତ୍ରୀଙ୍କ ଠାରୁ ଛ'ଜଣ ପୁତ୍ର ଜନ୍ମ ହୋଇଥିଲେ । ସେମାନଙ୍କ ନାମ ହେଉଛି ସ୍ମର, ଉଦ୍‌ଗୀଥ, ପରିଷ୍ୱଙ୍ଗ, ପତଙ୍ଗ, କ୍ଷଦ୍ରଭୃଦ୍, ଆଉ ଘୃଣୀ । ଏହି ଋଷିକୁମାର ମାନେ ଅତି ଶାନ୍ତ, ସଂଯମୀ ଓ ସଦାଚାରୀ ଥିଲେ । ଏହି ଋଷିକୁମାର ଦେବକୁମାରଙ୍କ ଭଳି ସୁନ୍ଦର ବି ଦେଖାଯାଉଥିଲେ । ଭଗବାନ ପ୍ରଜାପତି ସରସ୍ୱତୀଙ୍କୁ ଦେଖି ଯେତେବେଳେ ଚଞ୍ଚଳ ହୋଇଉଠିଲେ, ତାଙ୍କର ଚିତ୍ତ ଯେତେବେଳେ ଚଞ୍ଚଳ ହୋଇ ଉଠିଲା, ସେତେବେଳେ ଏମାନେ ନିଜର ସଦାଚାରର ଅଭିମାନରେ ପିତାମହଙ୍କ ଏତାଦୃଶ ବିକୃତି ଦେଖି ହସିବାରେ ଲାଗିଲେ । ଅଭିମାନବଶତଃ ଏମାନେ ପିତାମହଙ୍କୁ ପରିହାସ କଲେ । ପିତାମହ ବ୍ରହ୍ମା ଏଥିରେ କ୍ଷୁବ୍ଧ ହୋଇ ଏହି ଛ'ଜଣ ଋଷିକୁମାରଙ୍କୁ ଅଭିଶାପ ଦେଇ ଅସୁର ହୋଇଯିବା ପାଇଁ କହିଲେ ।

" ପିତାମହ ବ୍ରହ୍ମାଙ୍କ ଅଭିଶାପ ପାଇବା କ୍ଷଣି ଋଷିକୁମାରମାନଙ୍କର ଅଭିମାନ କର୍ପୂର ଭଳି ଉଡ଼ିଗଲା । ଏମାନେ ଏକକାଳୀନ ପିତାମହଙ୍କ ପାଦପଦ୍ମରେ ପଡ଼ିଗଲେ ଓ କରିଥିବା ଅପରାଧ ପାଇଁ କ୍ଷମା ମାଗିଲେ । ସେତେବେଳେ କମଳାସୀନ ବ୍ରହ୍ମା କହିଲେ, ' ତୁମେ ନିଶ୍ଚିତ ଆସୁରୀ ଯୋନି ପ୍ରାପ୍ତ ହେବ, ତେବେ ତୁମେମାନେ ଥରେ ମନୁଷ୍ୟ ଯୋନିରେ ଜନ୍ମ

ହୋଇ ପରମୁହୂର୍ତ୍ତରେ ଅସୁରଲୋକ ପ୍ରାପ୍ତ ହେବ । ଏହାପରେ ସ୍ୱୟଂ ଭଗବାନ ତୁମମାନଙ୍କୁ ତୁମମାନଙ୍କ ମାନବୀ ମାତାଙ୍କ ପାଖକୁ ନେଇଯାଇ ପୀତଶେଷ ପୟ ପିଆଇ ଦେବେ । ଏହାପରେ ତୁମେମାନେ ଋଷିଲୋକକୁ ପୁଣିଥରେ ଚାଲିଆସିବ । ଆଉ ତୁମର ସଦଗତି ହୋଇଯିବ ।' ସେହି ମରୀଚି ଋଷିଙ୍କ ପୁଅ ଶାପବଶତଃ ହିରଣ୍ୟକଶିପୁ ଘରେ ଉତ୍ପନ୍ନ ହୋଇଥିଲେ । ଏହାପରେ ମୋର ଯୋଗମାୟା ଏମାନଙ୍କୁ ଭଗବତୀ ଦେବକୀଙ୍କ ଉଦରକୁ ନେଇ ଆସିଲା । ସେଠାରେ ଏମାନେ ଜନ୍ମ ହେବାମାତ୍ରେ କଂସ ହାତରେ ମରି ତୁମ ଲୋକକୁ ଚାଲିଆସିଛନ୍ତି । ଏବେ ମାତା ଦେବକୀ ଏମାନଙ୍କୁ ଦେଖିବା ପାଇଁ ଇଚ୍ଛା କରିଛନ୍ତି ।''

ଦୈତ୍ୟରାଜ ବଳି କହିଲେ, '' ପ୍ରଭୁ ! ସେମାନେ ତ ସୁତଳଲୋକକୁ ଆସିଯାଇଛନ୍ତି । ପୃଥିବୀ ପୃଷ୍ଠକୁ ଯିବାକୁ ହେଲେ ଏମାନଙ୍କୁ ମାତାଙ୍କ ଗର୍ଭରେ ତ ଉତ୍ପନ୍ନ ହେବାକୁ ହେବ । ଏମାନେ ଏବେ ଯିବେ କିପରି ? ପୁଣି ମାତା ତ ଏହି ସନ୍ତାନଙ୍କୁ ଥରେ ଦେଖି ସାରିଛନ୍ତି ।''

ଭଗବାନ କହିଲେ, '' କିଛି କଥା ନାହିଁ । ମାତାଙ୍କ ଶୋକ ଦୂର କରିବା ପାଇଁ ଆମେ ସେମାନଙ୍କୁ ନେଇଯିବୁ । ଆମର ଯୋଗମାୟାରେ ସେମାନେ ଯେଉଁ ଅବସ୍ଥାରେ ଅଛନ୍ତି ସେହି ଅବସ୍ଥାରେ ଘେନିଯିବୁ । ସେମାନେ ମାତାଙ୍କର ଦୁଗ୍ଧପାନ କରୁଥିବା ଅବସ୍ଥାରେ ମୁକ୍ତ ହୋଇଯିବେ । ଏହାପରେ ସେମାନେ ସୁଖ ପୂର୍ବକ ନିଜ ଲୋକକୁ ଚାଲିଯିବେ । ଏ ସମସ୍ତଙ୍କର ସଦ୍‌ଗତି ହୋଇଯିବ ।''

ମହାରାଜ ବଳି କହିଲେ, '' ହେ ପ୍ରଭୁ ! ଆପଣ ସକଳ ଲୋକର ଏକମାତ୍ର ସ୍ୱାମୀ । ଆପଣ ଯାହା ଚାହାନ୍ତି ତାହା କରନ୍ତି । ଆପଣ ଯାହା ଉଚିତ ମନେକରୁଛନ୍ତି ସେପରି କରନ୍ତୁ ।'' ଏପରି କହି ବଳି ସେହି ଛ'ଭାଇଙ୍କୁ ଭଗବାନଙ୍କ ସମ୍ମୁଖରେ ଉପସ୍ଥିତ କରିଦେଲେ ।

ଭଗବାନ ରାମକୃଷ୍ଣ ସେହି କୁମାରମାନଙ୍କୁ ଦେଖି ଅତି ପ୍ରସନ୍ନ ହୋଇଗଲେ । ଦୈତ୍ୟରାଜ ବଳି ରାମ-କୃଷ୍ଣଙ୍କୁ ପୂଜାକଲେ । ଏହିଭଳି ଅସୁରରାଜଙ୍କ ଦ୍ୱାରା ପୂଜିତ ହୋଇ ରାମ-କୃଷ୍ଣ ସେହି ଛ'ଜଣ ଋଷିକୁମାରଙ୍କୁ ସାଙ୍ଗରେ ଧରି ଦ୍ୱାରକାରେ ପହଞ୍ଚିଗଲେ । ସେମାନେ ମାତାଙ୍କୁ ତାଙ୍କର ପୂର୍ବ ଛ'ପୁତ୍ରଙ୍କୁ ଦେଲେ ।

ଚିରକାଳ ପାଇଁ ହରାଇଥିବା ପୁତ୍ରମାନଙ୍କୁ ପାଇ ପୁତ୍ର-ବତ୍ସଳା ମାତା ଦେବକୀ ଅତ୍ୟନ୍ତ ପ୍ରସନ୍ନ ହୋଇଉଠିଲେ । ପ୍ରମୁଦିତ ଆନନ୍ଦରେ ତାଙ୍କର ମାତୃସ୍ତନ କ୍ଷରୀତ ହେବାରେ ଲାଗିଲା । ମାତୃସ୍ନେହର ଢେଉ ବସ୍ତୁତଃ ସୀମା ଲଂଘନ କରିବାରେ ଲାଗିଲା । ସ୍ନେହମୟୀ ମାତା ସେହି କୁମାରମାନଙ୍କୁ ଛାତିରେ ଲଗାଇ ଗାଢ଼ ଆଲିଙ୍ଗନ କଲେ । ଏହାପରେ ପ୍ରତ୍ୟେକଙ୍କୁ ନିଜ ସ୍ତନରୁ ସ୍ତନ୍ୟପାନ କରାଇବା ସହ ମୁଖ ଚୁମ୍ବନ ଦେବାରେ ଲାଗିଲେ । ସ୍ନେହମୟୀ ମାତାଙ୍କର

ଚକ୍ଷୁଯୁଗଳରୁ ଆନନ୍ଦାଶ୍ରୁ ଝରିପଡ଼ି ସନ୍ତାନମାନଙ୍କ ମସ୍ତକକେଶ ଆର୍ଦ୍ର କରିପକାଇଲା । ପୁତ୍ରମାନଙ୍କ ସ୍ପର୍ଶରେ ମାତା ଭଗବତୀ ଦେବକୀଙ୍କର ରୋମାଞ୍ଚ ଅନୁଭବ ହେଲା । ତାଙ୍କ ଶରୀରର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ପୁଲକିତ ହୋଇଉଠିଲା । ଭଗବାନଙ୍କର ଗୁଣମୟୀ ଦୈବୀମାୟାରେ ବିମୋହିତା ମାତା ସେମାନଙ୍କୁ ବାରମ୍ବାର ସ୍ନେହ ଦେବାରେ ଲାଗିଲେ ।

ଭଗବାନଙ୍କ ଅଙ୍ଗ ସ୍ପର୍ଶ ତଥା ତାଙ୍କର ପୀତଶେଷ ସ୍ତନ ପୟ ପାନ କରିବା ଦ୍ୱାରା ସେହି ବାଳକମାନଙ୍କର ପୂର୍ବଜନ୍ମ ହେତୁ ହୋଇଗଲା । ସେମାନଙ୍କ ମନରୁ ଆସୁରୀ ଭାବ ଦୂର ହୋଇଗଲା । ସେମାନେ ଯେ ଜଣେ ଜଣେ ଦେବକୁମାର, ଏହା ମନେପଡ଼ିଗଲା । ଏଥର ସେମାନେ ଅତି ଶ୍ରଦ୍ଧାଭକ୍ତିର ସହିତ ଶ୍ରୀ ଭଗବାନଙ୍କୁ, ଶ୍ରୀବଳଦେବଙ୍କୁ, ଶ୍ରୀ ବସୁଦେବଙ୍କୁ ତଥା ମାତା ଦେବକୀଙ୍କୁ ପ୍ରଣାମ କଲେ । ସେମାନଙ୍କର ଅନୁମତି ନେଇ ସମସ୍ତଙ୍କ ପ୍ରତ୍ୟକ୍ଷରେ ସୁରଲୋକକୁ ଚାଲିଗଲେ । ଏ ଘଟଣା ଦେଖି ଉପସ୍ଥିତ ଅନ୍ୟ ସମସ୍ତଙ୍କର ବିସ୍ମୟର ସୀମା ରହିଲା ନାହିଁ ।

ମାତା ଦେବକୀ ଯେତେବେଳେ ଏହି ଘଟଣା ସମ୍ପର୍କରେ ଭାବିଲେ, ତାଙ୍କର ବି ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଚିନ୍ତାକରିବାରେ ଲାଗିଲେ, ' ମରିଯାଇଥିବା ଲୋକ ପୁଣି ସେପରି ଶରୀର ଧାରଣ କରି ଆସିଲେ କିପରି ? ଯଦି କୌଣସି ଉପାୟରେ ଆସି ଯାଆନ୍ତି ତେବେ କିଛି ନା କିଛି ପରିବର୍ତ୍ତନ ତ ନିଶ୍ଚୟ ହେବ । ଏହି ବାଳକମାନେ ତ ଅନେକ ଦିନ ହେବ ମଲେଣି । ଏମାନଙ୍କଠାରୁ ସାନ ରାମ ଆଉ କୃଷ୍ଣ । ଏମାନଙ୍କର ପୁଅ ନାତି ହେଲେଣି, ଏମାନେ କିନ୍ତୁ ଠିକ୍ କୁନିପିଲାଭଳି ଆଜି ପର୍ଯ୍ୟନ୍ତ ରହିଛନ୍ତି କିପରି । ଏମାନଙ୍କୁ ଦେଖିବା ମାତ୍ରେ ମୋ ସ୍ତନରୁ ଦୁଗ୍ଧ ଝରିଲା ଆଉ ଏହି ବାଳକମାନେ ସମସ୍ତଙ୍କ ଚକ୍ଷୁ ସାମନାରେ ଅନ୍ତର୍ଦ୍ଧାନ ହୋଇଗଲେ । ଏହାଠାରୁ ବଡ଼ ଆଶ୍ଚର୍ଯ୍ୟର କଥା ଆଉ କିଛି ହୋଇପାରେ କି ?' ମାତା ଦେବକୀ ଏହିଭଳି ଅନେକ ସମୟ ପର୍ଯ୍ୟନ୍ତ ଭାବିବାରେ ଲାଗିଲେ । ପରିଶେଷରେ ସେ ଜାଣିଲେ, ' ଏସବୁ ହେଉଛି ଭଗବାନଙ୍କର ମାୟା । ସେ ତାଙ୍କର ମାୟାର ପ୍ରଭାବରେ ସବୁକିଛି କରି ପାରନ୍ତି । ଯାଙ୍କ ପାଇଁ ଅସମ୍ଭବ କିଛି ନାହିଁ ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଅନନ୍ତବୀର୍ଯ୍ୟ ଭଗବାନ୍ ବାସୁଦେବଙ୍କର ଏପରି ଗୋଟିଏ ନୁହେଁ, ଅନନ୍ତ ଚରିତ୍ର ଅଛି । ମୋର ତ ଗୋଟିଏ ମାତ୍ର ଜିଭ । ଦୁଇ ହଜାର ଫଣା, ଜିଭ ଥିବା ଶେଷଦେବ ଯଦି ସୃଷ୍ଟିର ଆରମ୍ଭରୁ ସୃଷ୍ଟିର ଅନ୍ତ ପର୍ଯ୍ୟନ୍ତ ଭଗବାନଙ୍କର ଅଦ୍ଭୁତ ଚରିତ୍ରକୁ ଗାନ କରନ୍ତି ତେବେ ବି ସେ ସବୁକଥା କହି ପାରିବେ ନାହିଁ । ଯିଏ ଭଗବାନଙ୍କର ଏହି ଚରିତ୍ରକୁ ଅଥବା ଅନ୍ୟ ଚରିତ୍ରକୁ ପ୍ରେମ ପୂର୍ବକ ଶୁଣିବେ, ଅଥବା ଶୁଣାଇବେ, ପଢ଼ିବେ ଅଥବା ପଢ଼ାଇବେ ସେମାନଙ୍କର ମନ ଶ୍ରୀଭଗବାନଙ୍କର ପାଦପଦ୍ମରେ ଲାଗିଯିବ । ଆଉ ସେମାନେ କଲ୍ୟାଣମୟ ପରମଧାମ ପ୍ରାପ୍ତ ହୋଇଯିବେ ।

" ହେ ମୁନିଗଣ ! ମୋର ପୂଜ୍ୟ ଗୁରୁଦେବ ଭଗବାନ୍ ଶୁକ ଗଙ୍ଗା କୂଳରେ ଅନଶନ ବ୍ରତକରି କଥା-ପ୍ରବଚନ ଦେଉଥିବା ବେଳେ ମହାରାଜ ପରୀକ୍ଷିତଙ୍କୁ ଏହି ପୁଣ୍ୟମୟ ଆଖ୍ୟାନ ଶୁଣାଇବା ପରେ ପରିଶେଷରେ କହିଲେ, 'ରାଜନ୍ ! **ଭଗବାନ୍ ତାଙ୍କ ଭକ୍ତଙ୍କ ପାଇଁ ସବୁ କରି ପାରନ୍ତି । ଧର୍ମରାଜ ଯୁଧିଷ୍ଠିରଙ୍କର ସେ ଦୂତରୂପେ ହସ୍ତିନାପୁରକୁ ଯାଇଥିଲେ । ମହାରାଜ ଉଗ୍ରସେନଙ୍କର ସେବକରୂପରେ ସିଂହାସନ ତଳେ ଦଣ୍ଡାୟମାନ ହୋଇ ସ୍ତୁତି କରୁଥିଲେ । ଦ୍ରୌପଦୀଙ୍କ ପାଇଁ ସେ ବସ୍ତ୍ର ହୋଇଗଲେ, ଆଉ ଅର୍ଜ୍ଜୁନଙ୍କର ସାରଥୀ ରୂପେ ତାଙ୍କର ଆଜ୍ଞାକାରୀ ରଥଚାଳକ ହୋଇ ରଥକୁ ତାଙ୍କ କଥାନୁସାରେ ଚଳାଇଥିଲେ ।** କେତେ କହିବି, ଭଗବାନ୍ ତାଙ୍କ ଭକ୍ତଙ୍କର ସକଳ କାର୍ଯ୍ୟ ସାଧନ କରିଥାନ୍ତି । ଭଗବାନ ଯଦି ତାଙ୍କ ଭକ୍ତଙ୍କର ଇଚ୍ଛାନୁରୂପ କାର୍ଯ୍ୟ ନ କରନ୍ତେ ତେବେ ତାଙ୍କ ଭଗବତ୍ତାରେ ଦୋଷ ଲାଗି ଯାଆନ୍ତା । ଦେଖ, ତୁମର ପିତାମହ ଅର୍ଜ୍ଜୁନ ତୀର୍ଥଯାତ୍ରା ଅବସରରେ ଦ୍ୱାରକାକୁ ଯାଇଥିଲେ । ଭଗବାନଙ୍କ ସାନ ଭଉଣୀ ସୁଭଦ୍ରାଙ୍କୁ ଦେଖି ତାଙ୍କ ମନ ଚଞ୍ଚଳ ହୋଇଗଲା । ଭଗବାନ୍ ତାଙ୍କ ଭକ୍ତର ଭାବନା ବୁଝିଗଲେ । ଆଉ ହସି ହସି କହିଲେ, ' ତୁମେ ମୋ ଭଉଣୀକୁ ବିବାହ କରିବାକୁ ଚାହୁଁଛ କି ?' ଅର୍ଜ୍ଜୁନ ଏପରି କଥା ଶୁଣି ଲାଜେଇ ଗଲେ । ବଳରାମଙ୍କ ଇଚ୍ଛା ବିରୁଦ୍ଧରେ ଭଗବାନ ତାଙ୍କ ଭକ୍ତର ମନୋକାମନା ପୂରଣ କରିଥିଲେ ।''

ଏପରି ଅପୂର୍ବ କଥା ଶୁଣି ମହାରାଜ ପରୀକ୍ଷିତ କହିଲେ, " ଭଗବନ୍ ! ମୋ ପୀତାମହ ଅର୍ଜ୍ଜୁନଙ୍କ ବିବାହ ରାମ-କୃଷ୍ଣଙ୍କ ଭଉଣୀ, ମୋ ବୁଢ଼ୀମା ସୁଭଦ୍ରାଙ୍କ ସହିତ କିପରି ହୋଇଥିଲା ? ଭଗବାନ ମୋ ପିତାମହଙ୍କ ଇଚ୍ଛା କିପରି ପୂରଣ କରିଥିଲେ ? ଏହି ପ୍ରସଙ୍ଗ ଶୁଣିବାକୁ ମୋର ପ୍ରବଳ ଇଚ୍ଛା ହେଉଛି, କୃପାକରି ଏହି ପ୍ରସଙ୍ଗ କୁହନ୍ତୁ ।''

ମହର୍ଷି ସୂତ କହୁଛନ୍ତି, " ହେ ମୁନିଗଣ ! ମହାରାଜ ପରୀକ୍ଷିତ ଆଗ୍ରହ ପ୍ରକାଶ କରିବାରୁ ମୋର ପୂଜ୍ୟ ଗୁରୁଦେବ ବ୍ୟାସନନ୍ଦନ ଶ୍ରୀଶୁକ ଯେଉଁଭଳି ସୁଭଦ୍ରା ଓ ଅର୍ଜ୍ଜୁନଙ୍କ ବିବାହ ପ୍ରସଙ୍ଗ କହିଥିଲେ, ସଂକ୍ଷେପରେ ଏହା ପୂର୍ବରୁ ମୁଁ ଥରେ କହିଛି ବି; ପୁଣିଥରେ ସେହି ପ୍ରସଙ୍ଗ କହୁଛି, ଆପଣମାନେ ଦତ୍ତଚିତ୍ତ ହୋଇ ଶୁଣନ୍ତୁ ।''

## ଛପ୍ପୟ

*ମାତା ଇଚ୍ଛା ସମୁଝି ସୁତଳ ବଳ ହରି ଉଠି ଧାୟେ ।*
*ବଳି ତେଁ ପୂଜିତ ଭୟେ କୁମର ମାୟା ତେ ଲାୟେ ।।*
*ସୁତନି ପାଇ ଅତି ମୁଦିତ ଭଈ ଜନନୀ ସୁଖ ପାୟୋ ।*
*ପୟ ପିଆଇ ମୁଖ ଚୂମି ସୁଁଘି ସିର ହିୟ ସରସାୟୋ ।।*
*ଜୈ ମରୀଚି ସୁତ ବିଧିହିଁ ଜବ, କାମାତୁର ଲଖି ହଁସି ଗୟେ ।*
*ଅସୁର ଭୟେ ତେ ଶାପ ବଶ, ପ୍ରଭୁ ପ୍ରସାଦ ପୁନି ସୁର ଭୟେ ।।*

# ସୁଭଦ୍ରା-ଅର୍ଜୁନ ପ୍ରଣୟ

**ବ୍ରହ୍ମନ୍ ବେଦିତୁମିଚ୍ଛାମଃ ସ୍ୱସାରଂ ରାମକୃଷ୍ଣୟୋଃ ।**
**ଯଥୋପୟେମେ ବିଜୟୋ ଯା ମମାସୀତ୍ ପିତାମହୀ ॥☆**

(ଶ୍ରୀ ଭା. ୧୦ସ୍କ. ୮୬ ଅ. ୧ ଶ୍ଳୋକ)

## ଛପ୍‌ପୟ

*ସୂତ କହେଂ- ଅବ ହରନ ସୁଭଦ୍ରା ସୁନହୁ ମୁନୀଶ୍ୱର ।*
*କରହିଁ ଭକ୍ତ ଅଭିଲାଶ ସକଲ ପୂରନ ପରମେଶ୍ୱର ॥*
*ବନ ପ୍ରସଙ୍ଗ ମହଁ ପାର୍ଥ ସୁଭଦ୍ରା ଇଚ୍ଛା ଲଖି ଉର ।*
*ବନି ବାବାଜୀ ରହେଂ ଛଦ୍ମ ତେ ଛିପି କେ ହରି ପୁର ॥*
*ବଲ ଛଲ କୁଁ ସମୁଝେ ନହୀଂ, କରେ ନିମଂତ୍ରିତ କପଟ ମୁନି ।*
*କରତି ସୁଭଦ୍ରା ପୂର୍ବ ହୀ, ପ୍ରେମ ପାର୍ଥ କୋ ସୁଯଶ ସୁନି ॥*

ଏହି ଜୀବ ଭଗବାନଙ୍କୁ ଭୁଲି ବିଷୟ ପଛରେ ଘୂରି ବୁଲୁଛି । ଯିଏ ନିଜେ ବିଷୟର ଦାସ, ସେପରି ଜୀବ ପାଖକୁ ଯାଇ ଯାଚନା କରେ, ତା ଠାରୁ ସୁଖ ଆଶାକରେ । ଯାହାକୁ ସର୍ପ ଦଂଶନ କରିଥାଏ ସେ ଅନ୍ୟକୁ କିପରି ବଞ୍ଚାଇବ ! ଏହି ଲୋକରେ ସୁଖ ଏପରି ମୋହକ ଯେ ରାତି ଦିନ ସୁଖ ଭୋଗ କଲେ ସୁଦ୍ଧା ଚିତ୍ତରେ ତୃପ୍ତି ଆସେନାହିଁ । ଏହା ଏହି ଲୋକର କଥା । ଏପରି ସ୍ଥଳରେ ସ୍ୱର୍ଗାଦି ଦିବ୍ୟ ଲୋକର କଥା ନକହିବା ଭଲ । ସାଂସାରିକ ଲୋକମାନେ ପ୍ରଚୁର ପରିମାଣର ବୈଷୟିକ ସୁଖ ପ୍ରଦାନ କରିପାରନ୍ତି ନାହିଁ । ଏମାନେ ପୁଣି ପରଲୌକିକ ସୁଖ ଦିଅନ୍ତେ କିପରି ? କେବଳ ଭଗବାନ ହେଉଛନ୍ତି ଏକମାତ୍ର ଯେ କି ତାଙ୍କ ଶରଣ ଗ୍ରହଣ କରିଥିବା ଲୋକର ସମସ୍ତ ଇଚ୍ଛା ପୂରଣ କରିଥାଆନ୍ତି । ଯିଏ କାମ ସୁଖ ଚାହେଁ, ତାକୁ କାମ ସୁଖ ଦିଅନ୍ତି । ଯିଏ ଅର୍ଥ ସୁଖ ଚାହେଁ ତାକୁ ଅର୍ଥ ଦିଅନ୍ତି । ଯିଏ ନିର୍ମଳ ଧର୍ମ ଚାହେଁ ତାକୁ ଧର୍ମ ଦିଅନ୍ତି । ଯିଏ ମୋକ୍ଷ ଚାହେଁ ତାକୁ ମୋକ୍ଷ ବି ପ୍ରଦାନ କରନ୍ତି । କହିବାର ତାତ୍ପର୍ଯ୍ୟ ଏହାଯେ, ତାଙ୍କ ଶରଣ ନେଲେ ଇହଲୋକ ଓ ପରଲୋକର କୌଣସି କଥା ଅଭାବ ରହେନାହିଁ । ଭଗବାନ ଦୟାମୟ । ନିଜର ଆଶ୍ରିତଙ୍କ ପାଇଁ କୌଣସି ବସ୍ତୁ ତାଙ୍କ କ୍ଷେତ୍ରରେ ଅଦେୟ ନୁହେଁ ।

---

☆ ଶୁକ ସନ୍ନିଧେ ଯୋଡ଼ିହସ୍ତ । ଆନନ୍ଦେ ବୋଲେ ପରୀକ୍ଷିତ ॥
ରାମ ଗୋବିନ୍ଦଙ୍କ ଭଗିନୀ । ସୁଭଦ୍ରା ନାମେଣ କାମିନୀ ॥
କେମନ୍ତେ ଅର୍ଜୁନ ତା ପାଇ । ସେ ଯେ ମୋହର ପିତାମହୀ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ, ୯୨ ଅ.)

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ମହାରାଜ ପରୀକ୍ଷିତ ସୁଭଦ୍ରା ହରଣ ପ୍ରସଙ୍ଗ ଶୁଣିବାକୁ ଆଗ୍ରହ କଲେ । ମୋର ପୂଜ୍ୟ ଗୁରୁଦେବ ଭଗବାନ ଶୁକ ସୁଭଦ୍ରା-ହରଣ କଥା ଯେଉଁଭଳି କହିଥିଲେ ତାହା କହୁଛି । ଏକା ଦ୍ରୌପଦୀଙ୍କର ବିବାହ ପଞ୍ଚପାଣ୍ଡବଙ୍କ ସହିତ ହୋଇଥିଲା । ଧୃତରାଷ୍ଟ୍ର ସେମାନଙ୍କୁ ଇନ୍ଦ୍ରପ୍ରସ୍ଥ ଦେଲେ । ଇନ୍ଦ୍ରପ୍ରସ୍ଥକୁ ରାଜଧାନୀ କରି ପଞ୍ଚପାଣ୍ଡବ ଓ ଦ୍ରୌପଦୀ ସେଠାରେ ସୁଖପୂର୍ବକ ରହିଲେ । ସେ ସମୟରେ ଦିନେ ଦେବର୍ଷି ନାରଦ ଇନ୍ଦ୍ରପ୍ରସ୍ଥରେ ପହଞ୍ଚି ପାଣ୍ଡବଙ୍କୁ କହିଲେ, ''କଳିତକରାଳ ଦୁଇଟି କାରଣରୁ ହୋଇଥାଏ । ତାହା ହେଉଛି କାମିନୀ ଆଉ କାଞ୍ଚନ । ଯଦି କୌଣସି ସ୍ତ୍ରୀକୁ ଅଥବା ଧନକୁ ପାଇବା ପାଇଁ ଦୁଇଜଣ ପ୍ରାର୍ଥୀ ହୁଅନ୍ତି, ତେବେ ସେ ଦୁହିଁଙ୍କ ଭିତରେ କଳି ନିଶ୍ଚୟ ହୁଏ । ଧନ ପାଇଁ ବେଳେ ବେଳେ କଳି ନହୋଇ ପାରେ, ମାତ୍ର ସ୍ତ୍ରୀ ପାଇଁ କଳି ଅବଶ୍ୟ ହୋଇଥାଏ ।

''ସୁନ୍ଦ, ଉପସୁନ୍ଦ ଦୁଇଜଣ ଅସୁର ଭାଇ ଥିଲେ । ଦୁହିଁଙ୍କ ମଧ୍ୟରେ ଆନ୍ତରିକ ନିବିଡ଼ ପ୍ରେମ-ସ୍ନେହ ସମ୍ପର୍କ ଥିଲା । ଦେବତାମାନେ ଅତି ସୁନ୍ଦରୀ ତିଳୋତ୍ତମାକୁ ପଠାଇଲେ । ତାକୁ ପାଇବା ପାଇଁ ଦୁହେଁ କଳି ଆରମ୍ଭ କରିଦେଲେ । ଦୁହିଙ୍କ ମଧ୍ୟରେ ଏପରି କଳି ହେଲା ଯେ ଦୁହେଁ ଶେଷରେ ମଲେ । ଇଏ ତ ଦୁଇ ଭାଇଙ୍କ କଥା । ତୁମେ ହେଉଛ ପାଞ୍ଚଭାଇ । ତୁମମାନଙ୍କ ମଧ୍ୟରେ ଅତି ନିବିଡ଼ ସମ୍ପର୍କ ଅଛି, ତେବେ ବି ତୁମେମାନେ ଏପରି କିଛି ନିୟମ ଶୃଙ୍ଖଳା କର ଯେପରି କିଛି ସମୟ ପାଇଁ ଜଣେ ଲେଖାଏ ଭାଇ ଦ୍ରୌପଦୀଙ୍କ ସହିତ ରହିବେ ।''

ଦେବର୍ଷି ନାରଦଙ୍କର ଏହି ଉପଦେଶ ପାଣ୍ଡବମାନଙ୍କ ମନକୁ ପାଇଲା । ସେମାନେ କ୍ରମ ଅନୁସାରେ ନିର୍ଦ୍ଦିଷ୍ଟ ସମୟ ଜଣେ ଜଣେ ଦ୍ରୌପଦୀଙ୍କ ସହିତ ରହିବା ପାଇଁ ନୀୟମ ନିର୍ଦ୍ଧାରଣ କଲେ । ଯଦି ଦ୍ରୌପଦୀଙ୍କ ସହିତ ଏକାନ୍ତରେ କୌଣସି ଭାଇ ରହିଥିବା ବେଳେ ଅନ୍ୟ କୌଣସି ଭାଇ ତାଙ୍କ ପାଖକୁ ଚାଲିଯାଏ ତେବେ ତାକୁ ବାରବର୍ଷ ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣ କରି ବନବାସ କରିବାକୁ ହେବ । ଏହିଭଳି ଶୃଙ୍ଖଳା ପାଳନକରି ସେମାନେ ସୁଖ ପୂର୍ବକ ରହିବାରେ ଲାଗିଲେ ।

ଦିନକର ଘଟଣା । ଚୋରମାନେ ଜଣେ ବ୍ରାହ୍ମଣର ଧେନୁଟିଏ ଚୋରାଇ ନେଇ ଯାଉଥିଲେ । ବ୍ରାହ୍ମଣ ଅର୍ଜୁନଙ୍କର ସାହାଯ୍ୟ ମାଗିଲା । ଅର୍ଜୁନଙ୍କର ସମସ୍ତ ଅସ୍ତ୍ର ସେହି କକ୍ଷରେ ଥିଲା ଯେଉଁ କକ୍ଷରେ ସେ ଦିନ ଧର୍ମରାଜ ଯୁଧିଷ୍ଠିରଙ୍କ ସହିତ ଦ୍ରୌପଦୀ ଏକାନ୍ତରେ ବସିଥିଲେ । ବ୍ରାହ୍ମଣକୁ ସହାୟତା ପ୍ରଦାନ କରିବା ଉଦ୍ଦେଶ୍ୟରେ ଅର୍ଜୁନ ସେହି କକ୍ଷରେ ପଶି ଅସ୍ତ୍ର ଆଣିଲେ, ବ୍ରାହ୍ମଣର ଗାଈ ଉଦ୍ଧାର କରି ବ୍ରାହ୍ମଣକୁ ପ୍ରସନ୍ନ କଲେ । ଆଉ ନିୟମ ଭଙ୍ଗ କରିଥିବାରୁ ଧର୍ମରାଜଙ୍କ ଠାରୁ ଅନୁମତି ଗ୍ରହଣ କରି ବାର ବର୍ଷ ନିମନ୍ତେ ବନବାସ କରିବାକୁ ଚାଲିଗଲେ । ଧର୍ମରାଜ ଅର୍ଜୁନଙ୍କୁ ବନବାସରେ ନ ଯିବାପାଇଁ ବାରମ୍ବାର ବାରଣ କଲେ ସତ, ମାତ୍ର ଅର୍ଜୁନ

ଧର୍ମ ସହିତ ଛନ୍ଦ କପଟ କରିବା ଉଚିତ ନୁହେଁ ବୋଲି କହି, ବ୍ରହ୍ମଚର୍ଯ୍ୟବ୍ରତ ପାଳନ ପୂର୍ବକ ପୁଣ୍ୟତୀର୍ଥମାନଙ୍କରେ ଭ୍ରମଣ କରିବାରେ ଲାଗିଲେ । ଏହି ବନବାସ ସମୟରେ ଅର୍ଜ୍ଜୁନ ହରିଦ୍ୱାରରେ ନାଗକନ୍ୟା ଉଲୂପୀ ସହିତ, ମଣିପୁରରେ ସେଠାକାର ରାଜକନ୍ୟା ଚିତ୍ରାଙ୍ଗଦା ସହିତ ତଥା ଦ୍ୱାରକାରେ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ସାନ ଭଉଣୀ ସୁଭଦ୍ରାଙ୍କ ସହିତ ବିବାହ କରିଥିଲେ ।

ମହର୍ଷି ଶୌନକ ପଚାରିଲେ, ''ହେ ସୂତ ! ଅର୍ଜ୍ଜୁନ ତ ବ୍ରହ୍ମଚର୍ଯ୍ୟ ବ୍ରତର ନିୟମକରି ବାର ବର୍ଷ ବନବାସ ନିମନ୍ତେ ଯାଇଥିଲେ, ସେ ପୁଣି ତିନି ତିନି ଜଣଙ୍କୁ ବିବାହ କିପରି କଲେ ? ଏହା କି ପ୍ରକାର ବ୍ରହ୍ମଚର୍ଯ୍ୟ ବ୍ରତ ?''

ମହର୍ଷି ସୂତ କହିଲେ,''ହେ ମହର୍ଷି ! ଗୃହସ୍ଥମାନେ ନିଜର ଧର୍ମପତ୍ନୀଙ୍କ ସହିତ ସନ୍ତୁଷ୍ଟରେ ରହିବା ହିଁ ହେଉଛି ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବା । ଯତିମାନେ ସ୍ତ୍ରୀଙ୍କୁ ସ୍ପର୍ଶ ନ କରିବା ହେଉଛି ସେମାନଙ୍କର ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବା ବିଧି । ପାଣ୍ଡବଙ୍କ ପ୍ରତିକାର ତାତ୍ପର୍ଯ୍ୟ ହେଉଛି, ନିୟମ ଲଂଘନକାରୀ ଭାଇ ବାର ବର୍ଷ ପର୍ଯ୍ୟନ୍ତ ଦ୍ରୌପଦୀଙ୍କ ସହିତ ସମ୍ବନ୍ଧ ରଖିବେ ନାହିଁ କି ଇନ୍ଦ୍ରପ୍ରସ୍ଥରେ ରହିବେ ନାହିଁ । ଏହି ବାରବର୍ଷ ଭିତରେ ଅର୍ଜ୍ଜୁନ ଯଦି ପର ସ୍ତ୍ରୀଙ୍କ ସହିତ ସଂପର୍କ ରଖିଥାନ୍ତେ ତେବେ ତାଙ୍କର ବ୍ରତ ଖଣ୍ଡିତ ହୋଇଥାନ୍ତା । ମାତ୍ର ଏହି ସ୍ତ୍ରୀ ମାନଙ୍କୁ ସେ ନିୟମପୂର୍ବକ ବିବାହ କରିଥିଲେ । ଫଳରେ ତାଙ୍କର ବ୍ରହ୍ମଚର୍ଯ୍ୟ ବ୍ରତ ଲୋପ ହେଲାନାହିଁ ।''

ମହର୍ଷି ଶୌନକ କହିଲେ,'' ହେ ମହର୍ଷି ସୂତ ! ଏଥର ଆମେ ବୁଝିଗଲୁ । ଏଥର ଆପଣ ଆମକୁ ସୁଭଦ୍ରା ଆଉ ଅର୍ଜ୍ଜୁନଙ୍କ ପ୍ରସଙ୍ଗ କୁହନ୍ତୁ ।''

ମହର୍ଷି ସୂତ କହିଲେ,''ହେ ମହର୍ଷି ! ତୀର୍ଥଯାତ୍ରାରେ ବୁଲି ବୁଲି ଅର୍ଜ୍ଜୁନ ପ୍ରଭାସପତ୍ତନ ନାମକ ସୁପ୍ରସିଦ୍ଧ ତୀର୍ଥରେ ପହଞ୍ଚିଗଲେ । ଏହା ସମୁଦ୍ର ତୀରବର୍ତ୍ତୀ ଏକ ପରମ ପବିତ୍ର ସ୍ଥାନ । ଏହା ଦ୍ୱାରକାର ଅତି ନିକଟରେ ଅବସ୍ଥିତ । ନିଜର ପରମପ୍ରିୟ ସଖା ଅର୍ଜ୍ଜୁନ ପ୍ରଭାସ କ୍ଷେତ୍ରକୁ ଆସିଥିବା ଖବର ଜାଣି ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ତାଙ୍କୁ ଦେଖାକରିବା ପାଇଁ ଆସିଲେ । ଭଗବାନଙ୍କୁ ହଠାତ ପ୍ରଭାସରେ ଦେଖି ଅର୍ଜ୍ଜୁନ ଅତି ପ୍ରମୁଦିତ ହୋଇଗଲେ । ଦୁହେଁ ଅତି ପ୍ରେମରେ କୋଳାକୋଳି ହେଲେ । ଆଉ ଅର୍ଜ୍ଜୁନଙ୍କ ସହିତ କିଛି ଦିନ ପ୍ରଭାସରେ ରହିଲେ । ଭଗବାନ ଯେତେବେଳେ ଦ୍ୱାରକାରୁ ପ୍ରଭାସକୁ ବାହାରିଲେ ସେତେବେଳେ ତାଙ୍କ ବଡ଼ମା ରୋହିଣୀ ତାଙ୍କୁ କହିଥିଲେ, 'ଶ୍ରୀକୃଷ୍ଣ ! ତୁମେ ପ୍ରଭାସ ଯାଉଛ ବୋଲି ଶୁଣୁଛି । ପ୍ରଭାସ ସ୍ନାନ କରିବାପାଇଁ ମୋର ବି ଇଚ୍ଛା ହେଉଛି । ତୁମର ଯଦି ଆପତ୍ତି ନ ଥାଏ ତେବେ ମୁଁ ତୁମ ସହିତ ଯାଆନ୍ତି ।

ଶ୍ରୀ ଭଗବାନ କହିଲେ,'' ମା ! ମୋର ତ କିଛି ଆପତ୍ତି ଆଦୌ ନାହିଁ । ଆପଣ ବାପାଙ୍କୁ କହି ମୋ ସହିତ ଚାଲନ୍ତୁ ।''

ଏଥିରେ ବସୁଦେବ ଅବା କାହିଁକି ଆପତ୍ତି କରିବେ । ଅନୁମତି ମିଳିଗଲା । ରୋହିଣୀ ଶ୍ରୀକୃଷ୍ଣଙ୍କ ସହିତ ବାହାରିଲେ ଆଉ ରୋହିଣୀଙ୍କ ସହିତ ତାଙ୍କର ଝିଅ କୁମାରୀ ସୁଭଦ୍ରା ମଧ୍ଯ ବାହାରିଲେ । ଶ୍ରୀକୃଷ୍ଣ ବଡ଼ ମା ରୋହିଣୀ, ସାନ ଭଉଣୀ ସୁଭଦ୍ରା, ଦାସ-ଦାସୀ, ପରିଚାରକ, ପରିଚାରିକା, ବିପୁଳ ସୈନ୍ୟ ବାହିନୀ ସହିତ ପ୍ରଭାସକୁ ଗଲେ । ଅର୍ଜୁନ ସୁଭଦ୍ରାଙ୍କୁ ଦେଖିବା କ୍ଷଣି ତାଙ୍କ ମନ ମୋହିତ ହୋଇଗଲା ।

ଭଗବାନ କୃଷ୍ଣଚନ୍ଦ୍ର ଅର୍ଜୁନଙ୍କର ମନୋଗତ ଭାବକୁ ଜାଣିଗଲେ । ସେ ତ ଅନ୍ତର୍ଯାମୀ । ସେ ହସି ହସି ଅର୍ଜୁନଙ୍କୁ କହିଲେ, '' ଅର୍ଜୁନ ! ତୁମେ ଆଜିକାଲି ବନବାସ ଓ ତୀର୍ଥାଟନ ତ କରୁଛ । ଏକପ୍ରକାର ବ୍ରହ୍ମଚର୍ଯ୍ୟ ତ ପାଳନ କରୁଛ । ଏପରି ସମୟରେ ତୁମ ମନ ଏଣେ ତେଣେ ଯାଉଛି କାହିଁକି ?''

ଏପରି ପରିହାସମୂଳକ କଥା ଶୁଣି ଅର୍ଜୁନଙ୍କୁ ଖୁବ୍ ଲାଜ ଲାଗିଲା । ସେ ସଂକୋଚର ସହିତ କହିଲେ,''ହେ ବାସୁଦେବ ! କ'ଣ ଆଉ କହିବି । ଏଇ ମନକୁ ଆଦୌ ବିଶ୍ୱାସ କରିବା ଉଚିତ ନୁହେଁ । ଦେଖନ୍ତୁ, ଏହା କେତେବେଳେ କେଉଁ ଆଡ଼େ ପଳାଉଛି ! ମୁଁ ଯେତେ ଚେଷ୍ଟା କଲେ ବି ତାହା କାବୁରେ ରହୁନାହିଁ । ମୋ ମନ ସେଇ କୁମାରୀ ପାଖରେ ଲାଖି ଯାଇଛି ।''

ଏପରି କଥା ଶୁଣି ଭଗବାନ ହୃଦୟ ଖୋଲା ହସ ହସିଲେ ଆଉ କହିଲେ,'' ତୁମେ ଜାଣିଚ, ସେ ହେଉଛି ମୋ ସାନ ଭଉଣୀ । ସାରଣ, ସଂକର୍ଷଣ ଆଉ ଇଏ ଏକମାତା ଗର୍ଭରୁ ଜାତ ହୋଇଛନ୍ତି । ଏଇ ମୋ ବାପାଙ୍କର ଅତି ଗେହ୍ଲା ଆଉ ଅତି ଅଳିଅଳ । କୁହ, ତୁମେ ଯାକୁ ବିବାହ କରିବ ।''

ଅର୍ଜୁନଙ୍କର ହୃଦୟ ଏପରି କଥା ଶୁଣି ଉତ୍‌ଫୁଲ୍ଲିତ ହୋଇଗଲା । କିନ୍ତୁ ସେ ଦୀନ ସ୍ୱରରେ କହିଲେ, '' ବାସୁଦେବ ! ଏଇ ସୁନ୍ଦରୀ ଯଦି ପତ୍ନୀ ରୂପରେ ମୋତେ ମିଳନ୍ତେ ତେବେ ମୁଁ ନିଜକୁ ପରମ ଭାଗ୍ୟବାନ୍ ଭାବିବି । ଦେବ ! ଏହାଙ୍କୁ ମୁଁ ଯେପରି ପାଇବି ତା ଉପାୟ କୁହନ୍ତୁ । ଇଏ କୁଳବତୀ, ବସୁଦେବଙ୍କ କନ୍ୟା, ଆପଣଙ୍କର ପୁଣି ଭଉଣୀ, ରୂପବତୀ, ଗୁଣବତୀ ଆଉ ଯୁବତୀ । ପ୍ରଭୁ ! ଇଏ ମୋର ପାଟରାଣୀ ଯେପରି ହୋଇ ପାରିବେ ତାର ଉପାୟ କୁହନ୍ତୁ ।''

ନଟନାଗର ଭଗବାନ ଶ୍ରୀକୃଷ୍ଣ ଗଭୀର ଚିନ୍ତା କରି ଉପାୟ ବାହାର କରୁଥିବାର ଅଭିନୟ କରି ଗମ୍ଭୀର ସ୍ୱରରେ ଅର୍ଜୁନଙ୍କୁ କହିଲେ, '' ଭାଇ ! ସଖା ! କାମ ତ ଅତି କଠିନ । କଥା

କ'ଣ କି, ବାପାଙ୍କ ହାତର କଥା ହୋଇଥିଲେ, ହଁ, ତାଙ୍କୁ କୌଣସି ପ୍ରକାର ଫୁସୁଲେଇ ଦେଇଥାନ୍ତି । ମୋ କଥା ସେ ସହଜରେ ଟାଳନ୍ତି ନାହିଁ । କିନ୍ତୁ କଥାଟା ବଳରାମଙ୍କ ହାତକୁ ଚାଲିଯାଇଛି । ସୁଭଦ୍ରାର ବିବାହ ଦୁର୍ଯ୍ୟୋଧନ ସହିତ କରିବା ପାଇଁ ସେ ସ୍ଥିର କରିଛନ୍ତି । ତାଙ୍କ କଥା ତ ତମେ ଜାଣିଛ ସଖା ! ସେ ଯାହା କୁହନ୍ତି ତାହା ନିଶ୍ଚୟ କରନ୍ତି । ମୁଁ ଜାଣେ, ତୁମେ ଦୁର୍ଯ୍ୟୋଧନଠାରୁ ଅନେକ ଗୁଣରେ ଉତ୍ତମ । ରୂପ, ଗୁଣ, ସଦାଚାର, ସଂଯମରେ ତୁମେ ଶ୍ରେଷ୍ଠ, ତେବେ ଭାଇ ! ମୁଁ ବଡ଼ଭାଇଙ୍କ ବିରୋଧରେ ଯାଇ ପାରିବି କି ? ସେ ତ ମହାକ୍ରୋଧୀ । କ'ଣ ନାଇଁ କ'ଣ କରିପକାଇବେ । ଯାହା ହେଲେ ବି, ମୁଁ ତୁମ ମନ ଦୁଃଖ କରିବା ବି ଚାହୁଁନାହିଁ । ତୁମ ମନ ଯେପରି ଖୁସି ହେବ ସେପରି କାମ କରିବା ପାଇଁ ମୁଁ ପ୍ରାଣକୁ ପଣ କରି ଲଗାଇ ଦେବାକୁ ନିଶ୍ଚୟ ଚେଷ୍ଟା କରିବି । ହଁ ! ଗୋଟିଏ ଉପାୟ ମନେ ପଡ଼ିଲା । ହେଲେ ତୁମେ କ'ଣ ସେ ଉପାୟ କରିବ ?''

ଅର୍ଜୁନ ଉତ୍କଣ୍ଠାର ସହିତ କହିଲେ, '' ହେ ବାସୁଦେବ ! ଆପଣ କହିବେ, ଆଉ ମୁଁ କରିପାରିବି ନାହିଁ, ଏପରି କୌଣସି କଥା ଅଛି ?'' ଅର୍ଜୁନଙ୍କ ମନର ଉଦ୍‌ବେଗ ଓ ଦୃଢ଼ତା ଦେଖି ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ତାଙ୍କ କାନରେ ମୁହଁ ଲଗାଇ କିଛି କହିଲେ । ଅର୍ଜୁନ ସଖା ଶ୍ରୀକୃଷ୍ଣଙ୍କ କଥା ଶୁଣି ହସିବାରେ ଲାଗିଲେ । ଆଉ ଭଗବାନ ବି ଖିଲ୍‌ଖିଲ୍ ହୋଇ ହସିବାରେ ଲାଗିଲେ । ଆଉ ଆମୋଦପୂର୍ଣ୍ଣ ହସ ମଧ୍ୟରେ କହିଲେ, '' କ'ଣ, ରାଜି ଅଛ ତ ?''

ପୂର୍ବଭଳି ଉତ୍‌ଫୁଲ୍ଲିତ ହସ ହସି ହସି ଅର୍ଜୁନ କହିଲେ, ''ଆପଣ କହିବେ, ପୁଣି ମୁଁ ରାଜି ହେବି ନାହିଁ...ହାଃ...ହାଃ...ହାଃ !''

କଥା ସେହିଠାରେ ରହିଲା । ଭଗବାନ ଅର୍ଜୁନଙ୍କ ସହିତ କିଛି ଦିନ ସେଠାରେ ରହିଲେ । ସୁଭଦ୍ରା ବି ଅର୍ଜୁନଙ୍କର ରୂପ, ସୌନ୍ଦର୍ଯ୍ୟ ଆଉ ପୁରୁଷାର୍ଥ ଦେଖି ତାଙ୍କ ଉପରେ ମୋହିତା ହୋଇଗଲେ । ସେ ଅର୍ଜୁନଙ୍କୁ ପତିରୂପେ ପାଇବା ପାଇଁ ମନେ ମନେ ଭଗବାନଙ୍କୁ ଆନ୍ତରିକ ପ୍ରାର୍ଥନା ନିବେଦନ କରିବାରେ ଲାଗିଲେ ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! **ଅନ୍ତର୍ଯାମୀ ପରମାତ୍ମା ତାଙ୍କ ଭକ୍ତଙ୍କର ସକଳ ଇଚ୍ଛା ପୂରଣ କରନ୍ତି ।** ଅର୍ଜୁନଙ୍କୁ ଖୁବ୍ ଏଣୁ ତେଣୁ କଥା କହି, ତାଙ୍କୁ କୌଣସି ପ୍ରକାର ଚିତା କାଟି ଭଗବାନ ଅର୍ଜୁନଙ୍କ ଠାରୁ ବିଦାୟ ନେଇ ସମୃଦ୍ଧିଶାଳୀ ଦ୍ୱାରକାପୁରୀକୁ ଫେରି ଆସିଲେ । ଏହାପରେ ଯେଉଁ କଉତୁକିଆ କଥା ହେବ, ତାହା ଆପଣମାନେ ଆଗ୍ରହର ସହିତ ଅପେକ୍ଷା କରନ୍ତୁ । ମୁଁ ଟିକିଏ ଆଚମନ କରିଆସେ । ଆଜିର ତରକାରିରେ ରାମରସ ଟିକିଏ ଅଧିକ ହୋଇଯାଇଥିବାରୁ ଶୋଷ ଜୋରରେ ହେଲାଣି ।''

### ଛପ୍ପୟ

ମୌନୀ ବାବା ବନେ ସୁଯଶ ପୁର ମାହୀଂ ଛାୟୋ ।
ବଳ ବୁଲାଇ ଘର ପ୍ରେମ ସହିତ ଭୋଜନ କରବାୟୋ ।।
କୁମାରି ସୁଭଦ୍ରା ବାରବାର ବ୍ୟଞ୍ଜନ ବହୁ ପରସେ ।
ଅତି ସୁନ୍ଦର ମନହରନ ରୂପ ଲଖି ପୁନି ପୁନି ହରଷେ ।।
ଦ୍ୱୈ ଦ୍ୱୈ ମିଳିକେ ଚାର ଜବ, ଭଇ ଆଂଖି ଦୋଉ ଠଗେ ।
କପଟୀ ମୁନି ମୋହିତ ଭୟେ, ପ୍ରତ୍ୟୟ ସହିତ ଦେଖନ ଲଗେ ।।



# ସୁଭଦ୍ରା ହରଣ

**ମହତ୍ୟାଂ ଦେବଯାତ୍ରାୟାଂ ରଥସ୍ଥାଂ ଦୁର୍ଗନିର୍ଗତାମ୍ ।**
**ଜହାରାନୁମତଃ ପିତ୍ରୋଃ କୃଷ୍ଣସ୍ୟ ଚ ମହାରଥଃ ।।☆**

(ଶ୍ରୀଭା. ୧୦ମ ସ୍କ ୮୬ ଅ. ୯ ଶ୍ଳୋକ)

### ଛପ୍ପୟ

ବେଷ ବଦଲି କେଂ ଚାର ମାସ ଅରଜୁନ ତହଁ ନିବସେ ।
କରତ ପ୍ରଫୁଲ୍ଲିତ ସବନି ଶାରଦୀ ଶଶି ସଭ ବିକସେ ।।
କୁମରି ହରନ ହରି ସଂଗ ଯୋଜନା ବୈଠି ବନାଈ ।
ରଥଚଢ଼ି ଉତ୍ସବ ମାହିଁ ସୁଭଦ୍ରା ବାହର ଆଈ ।।
ବାସୁଦେବ ନିଜ ରଥ ଜୟୋ, ଛଦ୍ମ ବେଷ ତଜି ପାଂଡୁ ସୁତ ।
ଗୟେ ସୁଭଦ୍ରା କେ ନିକଟ, ପକରି ବିଠାଇ ରଥ ମୁଦିତ ।।

---

☆ ଏମନ୍ତେ ଦେବଯାତ୍ରା କାଳେ । ବନ୍ଧୁବାନ୍ଧବ ଜ୍ଞାତିମେଳେ ।।
ଉତ୍ତମରଥେ କନ୍ୟା ଘେନି । ମଙ୍ଗଳକରଣେ କାମିନୀ ।।
ଦ୍ୱାରକାପୁର ଦୁର୍ଗ ମଧ୍ୟେ । ଚଳନ୍ତି ନୃତ୍ୟ ଗୀତ ବାଦ୍ୟେ ।।
ପିତାମାତାଙ୍କ ଶୁଦ୍ଧଚିତ୍ତେ । କୃଷ୍ଣର ଭାବ ଅନୁଗତେ ।।
ଅର୍ଜୁନ ଦେବଯାତ୍ରା ଛଳେ । କନ୍ୟା ହରିଲା ବାହୁବଳେ ।।

(ଭାଗବତ : ଜଗନ୍ନାଥ ଦାସ ; ୧୦ ମ ସ୍କ. ୯୨ ଅ.)

ଭଗବାନଙ୍କ ସମ୍ବନ୍ଧରେ ହରିଙ୍କ ଆଜ୍ଞାରେ ଅଭିନୟ, ସୁଆଙ୍ଗ ବି ଯଦି କରାଯାଏ, ତାହା ସତ୍ୟ ହୋଇଯାଏ, କାରଣ **ଭଗବାନଙ୍କ ପାଇଁ ସବୁ ହେଉଛି ସୁଆଙ୍ଗ, ସବୁ ହେଉଛି ଅଭିନୟ । ଏହି ସଂସାରରେ ଯଥାର୍ଥତା** କେଉଁଠି ? ମାୟା ପ୍ରଭାବରେ ଏହା ଗୋଟିଏ ପ୍ରକାର ଅନ୍ୟ ଏକ ପ୍ରକାର ଦେଖାଯାଏ । ପ୍ରଭେଦ ଏତିକି ଯେ ଆସୁରୀ ମାୟାର ଆଶ୍ରୟ ନେଲେ ପୁନଃ ପୁନଃ ଅସତ୍ ସଂସାର ପ୍ରାପ୍ତ ହୋଇଥାଏ । ଭଗବାନଙ୍କର ଯୋଗମାୟାକୁ ଆଶ୍ରୟ ନେଲେ ସୁଖ ସ୍ୱରୂପ ଭଗବାନ ପ୍ରାପ୍ତ ହୋଇଥାନ୍ତି । ଆଶ୍ରୟ ବିଶୁଦ୍ଧ ହୋଇଥିବା ଆବଶ୍ୟକ । କ୍ରିୟା ଯଦି ବିପରୀତ ବି ହୋଇଯାଏ ତେବେ କିଛି ଯାଏ ଆସେ ନାହିଁ । ବିଶୁଦ୍ଧ ଆଶ୍ରୟ ହେଉଛନ୍ତି ଏକମାତ୍ର ଶ୍ରୀହରି । ତାଙ୍କ ସନ୍ନିଧିରେ ଅଭିନୟ ବି ସତ୍ୟ ହୋଇଯାଏ । ପୂତନା ଛଦ୍ମ ବେଶଧରି ବୃନ୍ଦାବନକୁ କୁନି କହ୍ନେଇଙ୍କ ପାଖକୁ ଯାଇଥିଲା । ତା ଭାବ ଯେ ବିଶୁଦ୍ଧ ଥିଲା, ଏହା ସତ୍ୟ ନୁହେଁ । ସେ ତା ସ୍ତନରେ ବିଷ ବୋଳି କୁନି କହ୍ନେଇଙ୍କୁ ମାରିବାକୁ ଇଚ୍ଛାକରି ଯାଇଥିଲା । ସେ ଯେ ସଦାଚାରିଣୀ ଥିଲା, ଏକଥା ମଧ୍ୟ ସତ୍ୟ ନୁହେଁ । ସେ ତ ରକ୍ତ ପାନ କରୁଥିବା ରାକ୍ଷସୀ ଥିଲା । କିନ୍ତୁ ଗୋଟିଏ କଥା ଥିଲା ଆଶାପ୍ରଦ, ଯେ, ସେ ଜଣେ ସଂସାରୀ ପୁରୁଷ ପାଖକୁ ଯାଇଥିଲା, ତାର ଆଶ୍ରୟ ଥିଲା ବିଶୁଦ୍ଧ । ଭଗବାନ ତାକୁ ମାତାର ଗତି ପ୍ରଦାନ କରିଥିଲେ । ତାର ପରକାଳ ଉତ୍ତମ ହୋଇଥିଲା ।

କୁବ୍‌ଜାର ଭାବ ଥିଲା ଦୁଷ୍ଟ । ସେ କାମ ସୁଖ ଚାହିଁଥିଲା । କିନ୍ତୁ ସେ କୌଣସି ସଂସାରୀ ପୁରୁଷକୁ ବି ଥରେ ବୋଲି ଆଡ଼ ଆଖିରେ ଚାହିଁ ନଥିଲା । ସେ ତାର ବାସନା ଚରିତାର୍ଥ କରିବା ପାଇଁ ରାଧାରମଣଙ୍କ ନିକଟରେ ପ୍ରାର୍ଥୀ ହୋଇଥିଲା । ସେ ଜନ୍ମରୁ ଦୁର୍ଭାଗା ହୋଇ ସୁଦ୍ଧା ସୁଭାଗା ହୋଇଗଲା । କାମିନୀ ହୋଇ ସୁଦ୍ଧା ଭବ୍ୟଭାମିନୀ ହୋଇଗଲା । ସେ ଇହଲୋକର ସୁଖ ଭୋଗକରି ପରେ ବୃନ୍ଦାବନର ନିତ୍ୟ ସହଚରୀ ହୋଇଗଲା । ଏକମାତ୍ର ଭଗବାନଙ୍କ ଆଶ୍ରୟ ନେଇ ସେ ଦୋଷ, ଗୁଣ ରହିତ ହୋଇଗଲା । ଯିଏ ଏପରି ବିଶୁଦ୍ଧ ଆଶ୍ରୟ ନେଇପାରେ ଭଗବାନ ତା'ର ସକଳ ପାପ ଛଡ଼ାଇ ନିଅନ୍ତି, ଦୂର କରି ଦିଅନ୍ତି । ଏୟା ହିଁ ହେଉଛି ଭଗବାନଙ୍କର ପ୍ରତିଜ୍ଞା ।

ଶ୍ରୀ ଶୁକଦେବ କହୁଛନ୍ତି, '' ରାଜନ୍ ! ପ୍ରଭାସରେ ଭଗବାନ ତାଙ୍କ ପ୍ରିୟ ସଖାଙ୍କୁ ଦେଖି, ତାଙ୍କ ସହିତ କିଛି ଦିନ କଟାଇ ଦ୍ୱାରକାପୁରକୁ ପ୍ରତ୍ୟାବର୍ତ୍ତନ କରି ସୁଖପୂର୍ବକ ରହିଲେ । ଦିନେ ସେ ଲୋକଙ୍କଠାରୁ ଶୁଣିବାକୁ ପାଇଲେ ଯେ ଜଣେ ମହାନ୍ ସାଧୁ ଦ୍ୱାରକାକୁ ଆସିଛନ୍ତି । ଆଉ ସେହି ସାଧୁଙ୍କ ଆକୃତି ଅତି ଭବ୍ୟ । ତାଙ୍କର କଳା କୁଞ୍ଚୁକୁଞ୍ଚିଆ କେଶ ଅତି ସୁନ୍ଦର ଦେଖାଯାଉଥିଲା । ତାଙ୍କ ରୂପ ଥିଲା ଅତି ମନୋହର ଆଉ ଆକର୍ଷଣୀୟ । ଦେଖିବାକୁ ସେ ଥିଲେ ସାକ୍ଷାତ୍ କାମଦେବଙ୍କ ଭଳି ଏବଂ ସେ ଊର୍ଦ୍ଧ୍ୱପୁଣ୍ଡ୍ର ତିଳକ ଧାରଣ କରୁଥିଲେ । ସେ

ଥିଲେ ତ୍ରିଦଣ୍ଡୀ । ସବୁବେଳେ ତିନୋଟି ଦଣ୍ଡ ଧରି ବୁଲୁଥିଲେ । ସେ କାହା ସହିତ କଥା ବାର୍ତ୍ତା କରୁ ନଥିଲେ, ସବୁବେଳେ ମୌନ ରହୁଥିଲେ । ପ୍ରାରବ୍ଧ ଆଶୀର୍ବାଦରେ ଯେଉଁଦିନ ଯାହା ପାଉଥିଲେ ସେଥିରେ ସନ୍ତୁଷ୍ଟ ହୋଇ ଯାଉଥିଲେ । ତାଙ୍କ ଦର୍ଶନ ନିମନ୍ତେ ପ୍ରତିଦିନ ହଜାର ହଜାର ନରନାରୀ ଯାଉଥିଲେ ବି ସେ କାହାକୁ ହେଲେ ଚାହୁଁ ନଥିଲେ କି ଦେଖୁ ନଥିଲେ ।

ମହାତ୍ମାଙ୍କର ଏପରି ପ୍ରଶଂସା ଲୋକଙ୍କ ମୁଖରୁ ଶୁଣି ଭଗବାନ ବି ଦର୍ଶନ ପାଇଁ ଗଲେ । ବଗ ଯେଉଁଭଳି ଧ୍ୟାନରେ ରହିଥାଏ, ଠିକ୍ ସେହିଭଳି ତ୍ରିଦଣ୍ଡୀ ସ୍ୱାମୀ ଆଖି ବନ୍ଦ କରି ବସିଥିଲେ । ଭଗବାନ ସ୍ୱାମୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ ଆଉ ହସକୁ ଜବରଦସ୍ତ ଚାପି କହିଲେ, ''ଆଜ୍ଞା ପ୍ରଣାମ !''

ଏଥର ସ୍ୱାମୀ ଆଖି ଖୋଲିଲେ ଆଉ ହାତକୁ ଟେକି ଗମ୍ଭୀର ସ୍ୱରରେ କହିଲେ, ''ନାରାୟଣ, ନାରାୟଣ !''

ଭଗବାନ ହସି ହସି କହିଲେ, '' ମହାରାଜ ! କେବଳ ନାରାୟଣ ନାରାୟଣ କୁହନ୍ତୁ ନାହିଁ । ନର ନାରାୟଣ ବୋଲି କୁହନ୍ତୁ ।''

ଏହା ଶୁଣିବା କ୍ଷଣି ସାଧୁ ହସିପକାଇଲେ, ଆଉ ଭଗବାନ ବି ଖିଲିଖିଲି ହୋଇ ହସିବାରେ ଲାଗିଲେ । ଏହାପରଠାରୁ ଭଗବାନ୍ ସେହି ତ୍ରିଦଣ୍ଡୀ ସ୍ୱାମୀଙ୍କର ପରମ ଭକ୍ତ ହୋଇଗଲେ । ସୂର୍ଯ୍ୟାସ୍ତ ହେବା ସଙ୍ଗେ ସଙ୍ଗେ ଭଗବାନ ସ୍ୱାମୀଙ୍କ ପାଖକୁ ମହନଭୋଗ, ରାବିଡ଼ି, ଛେନା, ପୁରି, କଚୁରି ଆଦି ପଠାଇବାରେ ଲାଗିଲେ । ସାଧୁ ମହାଶୟ ସେ ସମସ୍ତକୁ ଭଗବାନଙ୍କର ପ୍ରସାଦ ବୋଲି ମନେକରି ପାଇଯାଉଥିଲେ । ଏହା ପରେ ସୂର୍ଯ୍ୟ ଉଦୟ ହେବାଠାରୁ ପୁଣି ମୌନ । କେହି ବି ଆସୁ, ସ୍ୱାମୀ ମହାଶୟ ମୌନ । ସେ ତାଙ୍କର ସକଳ ଇଚ୍ଛା ଗୋଟିଏ ଉପରେ ନ୍ୟସ୍ତ ରଖିଥିଲେ ।

ଜଣେ ଆଗନ୍ତୁକ କହିଲା, ''ହେ ସ୍ୱାମି ! ଏଥର ବର୍ଷାଋତୁ ଆସିଗଲାଣି । ଚତୁର୍ମାସ୍ୟାରେ ଆପଣ କ'ଣ ଏଇଠି ରହିବେ ?''

ସାଧୁ ମହାଶୟ ସମ୍ମତି ସୂଚକ ମୁଣ୍ଡ ଟୁଙ୍ଗାରି ଦେଲେ । ଦର୍ଶକମାନଙ୍କ ମନରେ ଆନନ୍ଦ ଖେଳିଗଲା । ଚାରିମାସ ଯାକ ସେମାନେ ଏହି ସାଧୁଙ୍କର ଅପୂର୍ବ ଦର୍ଶନ ପାଇବେ । ତାଙ୍କର ଭବ୍ୟ ମୂର୍ତ୍ତି ଆଉ ପ୍ରସନ୍ନ ମୁଖ ଦେଖି ଲୋକମାନଙ୍କର ଭକ୍ତି ଖୁବ୍ ବଢ଼ିଯାଇଥିଲା ।

ଶ୍ରୀ ବଳରାମଙ୍କ କାନରେ ଏହି ସାଧୁଙ୍କର ପ୍ରଶଂସା ପଡ଼ିଲା । ସେ ମଧ୍ୟ ମହାତ୍ମାଙ୍କ ଦର୍ଶନ ନିମନ୍ତେ ଗଲେ । ସାଧୁ ମହାଶୟ ମୁହଁରେ ଏକ ପ୍ରକାର ଭସ୍ମର ପ୍ରଲେପ ଲଗାଇଥିଲେ ।

ଏଥିରେ ବି ସେ ଖୁବ୍ ସୁନ୍ଦର ଦେଖାଯାଉଥିଲେ । ଶ୍ରୀବଳରାମ ବଡ଼ ଭକ୍ତିର ସହିତ ସାଧୁଙ୍କ ପାଖରେ ବସିଗଲେ । ଆଉ ଅତି ନମ୍ର ସ୍ୱରରେ କହିଲେ, '' ଭଗବାନ୍ ! ଗୃହସ୍ଥୀମାନଙ୍କ ମୁଣ୍ଡରେ ଖାଲି ଚିନ୍ତା ଇ ଚିନ୍ତା ଥାଏ । ଘର ତ ହେଉଛି ଦୁଃଖ ଓ ଚିନ୍ତାର ଭଣ୍ଡାର । ଏହା ମଣିଷଙ୍କୁ ବାନ୍ଧିଦିଏ । ତେବେ ଗୃହସ୍ଥଙ୍କ ଘରକୁ ଯେଉଁଦିନ ସାଧୁଙ୍କ ପାଦ ପଡ଼େ ସେ ଦିନ ତାକୁ ଖୁବ୍ ସୁଖଲାଗେ । ବେଳେ ବେଳେ ସାଧୁ ମହାତ୍ମାମାନେ କୃପାକରି ଗୃହସ୍ଥର ଘରକୁ ଆସନ୍ତି । ଗୃହସ୍ଥ ଏପରି ଦିନକୁ ଅପେକ୍ଷା କରିଥାଏ । ସେ ସେହି ସାଧୁ ମହାତ୍ମାଙ୍କ ଚରଣୋଦକ ସଂଗ୍ରହ କରି ଘରେ ଛିଞ୍ଚି ବିଶୁଦ୍ଧ କରେ । ଯେଉଁଦିନ ସାଧୁ - ମହାତ୍ମାଙ୍କ ପାଦ ପଡେ, ସେ ଦିନ ତା ପାଇଁ ପରମସୌଭାଗ୍ୟ ଦାୟକ ହୋଇଥାଏ । ଆପଣ କେବେ ବି ଭିକ୍ଷାପାଇଁ ଯାଉନଥିବା ମୁଁ ଶୁଣିବାକୁ ପାଇଛି । କିନ୍ତୁ କୃପାକରି ଆମ ଘରେ ଯଦି ପାଦ ପକାନ୍ତେ, ଭଗବାନଙ୍କର ପ୍ରସାଦ ପାଆନ୍ତେ ତେବେ ମୋର ପରିବାର ବର୍ଗ କୃତାର୍ଥ ହୋଇଯାଆନ୍ତେ ।''

ଶ୍ରୀ ବଳରାମଙ୍କର ଏପରି କଥା ଶୁଣି ସାଧୁ ମହାଶୟ କିଛି ସମୟ ମୌନ ରହି ଚିନ୍ତାକରିବାରେ ଲାଗିଲେ । ଶେଷରେ ସେ ସମ୍ମତି ସୂଚକ ମୁଣ୍ଡ ଟୁଙ୍ଗାରିଲେ । ସାଧୁଙ୍କର ସ୍ୱୀକୃତି ପାଇ ବଳରାମ ଅତି ପ୍ରସନ୍ନ ହୋଇଗଲେ । ସେ ସାଧୁଙ୍କ ପାଦପଦ୍ମରେ ପ୍ରଣାମକରି ନିଜ ଭବନକୁ ଚାଲିଗଲେ ।

ଆଜି ସାଧୁ ଘରକୁ ଆସିବେ । ବଳରାମଙ୍କର ଆଜି ତରବାହିଁ । ସେ ସାଧୁଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା କରିବା ନିମନ୍ତେ ଯେପରି ଉତ୍‌କଣ୍ଠିତ । ଯଥା ସମୟରେ ସାଧୁଙ୍କ ଖଡ଼ମ ଶବ୍ଦ ଶୁଣାଗଲା । ସେ ତ୍ରିଦଣ୍ଡ ଧାରଣ କରି ମନ୍ତ୍ରୀଙ୍କ ସହିତ ପହଞ୍ଚିଗଲେ । ବଳଦେବ ସପରିବାର ଉଠି ସାଧୁଙ୍କୁ ସ୍ୱାଗତ କଲେ । ପାଦ ଧୋଇ ଦେବାପରେ ପାଦୋଦକ ମୁଣ୍ଡରେ ମାରି ସାଧୁଙ୍କର ବିଧିବତ୍ ପୂଜାକଲେ । ଏହାପରେ ଅତି ଶ୍ରଦ୍ଧାର ସହିତ ଷଡ଼ରସଯୁକ୍ତ ପ୍ରଭୁଙ୍କର ସ୍ୱାଦିଷ୍ଟ ପ୍ରସାଦ ସାଧୁଙ୍କ ସମ୍ମୁଖରେ ପରସା ହେଲା । ନାରାୟଣଙ୍କୁ ସ୍ମରଣ କରି ସାଧୁ ମଧୁରାତି ମଧୁର ବ୍ୟଞ୍ଜନ ଭୋଜନ କରିବାରେ ଲାଗିଲେ । ବଳରାମ ଗୋଟିଏ ପାଖରେ ବସିଥାନ୍ତି । ଅଳ୍ପ ସମୟ ଭିତରେ ସାଧୁ କ୍ଷୀରୀ ପାତ୍ର ଖାଲି କରିଦେଲେ । ବଳରାମ ଏହାଦେଖି ଡାକ ପକାଇଲେ, ''ସୁଭଦ୍ରା ! ସ୍ୱାମୀଙ୍କୁ କ୍ଷୀରୀ ଆଣିଦେ !'' ଏହା ଶୁଣିବାକ୍ଷଣି ବସ୍ତ୍ରାଭୂଷଣରେ ସୁସଜ୍ଜିତ ହାତରେ କ୍ଷୀର ଧରି ବୀର ପୁରୁଷଙ୍କ ମନହରଣକାରୀ ଯୁବତୀ ସୁଭଦ୍ରା ବାହାରି ଆସିଲେ । ସ୍ୱାମୀଙ୍କର ଭବ୍ୟରୂପକୁ ଦେଖି ସୁଭଦ୍ରା ବିସ୍ମିତ ହୋଇଗଲେ । ତାଙ୍କ ଆଖି ସ୍ୱାମୀଙ୍କର କୁଞ୍ଚୁକୁଞ୍ଚିଆ କେଶରାଶି ଓ ଅନିନ୍ଦ୍ୟ ସୁନ୍ଦର ତେଜସ୍ୱୀ ମୁଖମଣ୍ଡଳରେ ଲାଖିଗଲା । କ୍ଷୀରୀ ପରସୁଥିବା ବେଳେ ତାଙ୍କ ହୃଦୟର ସ୍ପନ୍ଦନ ଅତ୍ୟଧିକ ବଢ଼ିଗଲା । ଏଣେ କ୍ଷୀରୀ ପରସୁଥାନ୍ତି ଓ କୌଶଳ କ୍ରମେ କଣେଇ କଣେଇ ସାଧୁଙ୍କ ଅପୂର୍ବ ମୁଖମଣ୍ଡଳକୁ ଦେଖୁଥାଆନ୍ତି । ସୁଭଦ୍ରାଙ୍କୁ ଆଶ୍ଚର୍ଯ୍ୟ

ଲାଗୁଥାଏ । କ୍ଷୀରୀ ଦେଇସାରି ସେ ଭିତର ଘରକୁ ଚାଲିଗଲେ । ଆଉ ଚାରିକଡ଼କୁ ଆଖି ବୁଲେଇ ଆଣି କବାଟ ଫାଙ୍କରେ ସାଧୁଙ୍କୁ ନିରୀକ୍ଷଣ କରିବାରେ ଲାଗିଲେ । କ୍ରମେ ତାଙ୍କର ସନ୍ଦେହ ଦୂର ହୋଇଗଲା । ଇଏ ଯେ କପଟୀ ମୁନି ଏହା ଜାଣିବାକୁ ତାଙ୍କୁ ଅଧିକ ସମୟ ଲାଗିଲା ନାହିଁ । ମୋ ବଡ଼ ଦେଠେଇ କୁନ୍ତୀଙ୍କ ପୁଅ ଅର୍ଜ୍ଜୁନ ଯାହାଙ୍କୁ ପ୍ରଭାସରେ ପ୍ରଥମେ ଦେଖିଥିଲି ବୋଲି ତାଙ୍କର ମନେପଡ଼ିଗଲା । ସୁଭଦ୍ରା ଜାଣିଗଲେ, 'ଇଏ ନିଶ୍ଚୟ ମୋ ପାଇଁ ଏପରି ଛଦ୍ମବେଶ ଧାରଣ କରି ଆସିଛନ୍ତି ।' ତାଙ୍କ ମନରେ ଏପରି ଭାବନା ଆସିଯିବା କ୍ଷଣି ପରମ ହର୍ଷ ଜାତ ହେଲା । ପ୍ରସନ୍ନତା ହେତୁ ତାଙ୍କର କମଳ ନୟନ ପ୍ରସ୍ଫୁଟିତ ହୋଇଗଲା । ଏଣେ ସ୍ୱାମୀ ମଧ୍ୟ ସୁଭଦ୍ରାଙ୍କୁ ଦେଖିଲେ । ଦେଖିବା ମାତ୍ରେ ସେ ସୁଭଦ୍ରାଙ୍କୁ ଚିହ୍ନି ପକାଇଲେ । ତାଙ୍କୁ ପାଇବା ପାଇଁ ତ ଏତେ ନାଟ ସେ କରୁଛନ୍ତି । ସୁଭଦ୍ରାଙ୍କ ସ୍ୱାମୀ ହେବା ପାଇଁ ସେ ସାଧୁ-ନାଟକ କରୁଛନ୍ତି । ପ୍ରେମଭାବରେ ବିକ୍ଷୁବ୍ଧ ନିଜ ଚିତ୍ତକୁ ସେ ସୁଭଦ୍ରାଙ୍କଠାରେ ଲଗାଇଦେଲେ । ଚାରି ଆଖିର ମିଳନ ହୋଇଯିବା ମାତ୍ରେ ମୂକ-ବାଣୀରେ ଅନେକ ଆଦାନ-ପ୍ରଦାନ ହୋଇଗଲା । କୁମାରୀ ସୁଭଦ୍ରା ବି ପରମରୂପବାନ୍ ଅର୍ଜ୍ଜୁନଙ୍କୁ ତାଙ୍କ ସର୍ବସ୍ୱ ମନେ ମନେ ଅର୍ପଣ କରିଦେଲେ । ତାଙ୍କୁ ମନେ ମନେ ପତିରୂପେ ଗ୍ରହଣ କରିଦେବାରୁ ମନରେ ଲଜ୍ଜା ଘୋଟିଗଲା । ଲଜ୍ଜା ଜନିତ ହସ ବାରମ୍ବାର ଲାଗିଲା ଓ ସୁଭଦ୍ରା ବାରମ୍ବାର ଏପରି ହସି ହସି ସାଧୁଙ୍କୁ ନିରୀକ୍ଷଣ କରିବାରେ ଲାଗିଲେ । ସେହି ସମୟରେ ସୁଭଦ୍ରା ବଳଦେବ ଡାକୁଥିବା ଶୁଣିଲେ-" ସୁଭଦ୍ରା ! ବ୍ୟଞ୍ଜନ ଆଣିଲୁ !"

ଏପରି ଡାକ ଶୁଣିବାକ୍ଷଣି ସୁଭଦ୍ରା ପାକଶାଳାକୁ ଦୌଡ଼ିଗଲେ ଓ ତରକାରି ଧରି ଅତି ସଂକୋଚରେ, ଲାଜେଇ ଲାଜେଇ ଆସିଲେ । ତରକାରି ବାଢ଼ୁ ବାଢ଼ୁ ତାଙ୍କ ଲଜ୍ଜାଶୀଳ ହାତରୁ ତରକାରି ପାତ୍ର ଖସିପଡ଼ିଲା । ବଳରାମ ସେପରି ବସି ରହି କହିଲେ, "ଆଲୋ, ତୁ ଗୋଟେ ବଡ଼ ପାଗଳୀ । ତୁ ଏଡ଼େ ବଡ଼ଟିଏ ହୋଇଗଲୁଣି, ହେଲେ ବାସନ କିପରି ଧରିବାକୁ ହୁଏ ଜାଣିନୁ । ଯା, ତାକୁ ନେଇଯା' । ଭଲ ତରକାରି ଭିତରୁ ଆଣିଦେ ।"

ଅତିଶୟ ଲଜ୍ଜାରେ ରଙ୍ଗ ପଡ଼ି ଯାଇଥିବା ସୁଭଦ୍ରା ଚଟ୍‌କରି ପାତ୍ରଟି ଉଠାଇ ଘର ଭିତରକୁ ଦୌଡ଼ି ପଳାଇଲେ । ବଳରାମ ପୁଣି ଡାକ ପକାଇଲେ, " ସୁଭଦ୍ରା ! ପୁରି ଆଣ !"

ଏଥର ସ୍ୱାମୀ ପେଟରେ ହାତ ମାରି ମାରି କହିଲେ, " ନା ରାଜନ୍ ! ମୋର ପ୍ରସାଦ ହୋଇଯାଇଛି । ଆଉ କିଛି ଗ୍ରହଣ କରିବି ନାହିଁ ।" ସୁଭଦ୍ରା ଆସିଲେ ଓ ଫେରିଗଲେ । ସୁଭଦ୍ରାଙ୍କୁ ଦେଖିବାପରେ ସ୍ୱାମୀ ମହାରାଜ ଖାଇବା ପିଇବା ପୂରା ଭୁଲିଗଲେ । ସେ ମନେ ମନେ ସୁନ୍ଦରୀ ସୁଭଦ୍ରାଙ୍କୁ ଭାବିବାରେ ଲାଗିଲେ । ସେ ସହସା ହାତ ଧୋଇବା ପାଇଁ ଉଠିଗଲେ । ବଳରାମ ନିଜେ ହାତ ଧୋଇବା ପାଇଁ ପାଣି ବଢ଼ାଇ ଦେଲେ । ଆଉ ପୋଛିବା

ପାଇଁ ନିଜର ଉତ୍ତରୀୟ ବସ୍ତ୍ର ବଢ଼ାଇ ଦେଲେ । ସାଧୁ ମହାରାଜ ତାଙ୍କର ତ୍ରିଦଣ୍ଡ ଧାରଣ କରି ବାହାରିଗଲେ, ହେଲେ ତାଙ୍କର ମନ, ଚିତ୍ତ ସେହି ଗୃହରେ ରହିଗଲା । ସୁଭଦ୍ରାଙ୍କୁ ପାଇବା ପାଇଁ ଜାଗ୍ରତ ହୋଇଥିବା କାମନା ତାଙ୍କ ଚିତ୍ତରେ ବିଭ୍ରମ ସୃଷ୍ଟି କରିଦେଇଥିଲା । ନାନା ପ୍ରକାର ଚିନ୍ତାର ଜୁଆର ଉଠିବାରେ ଲାଗିଥିଲା । ସୁଭଦ୍ରାଙ୍କୁ ହରଣକରି ନେଇଯିବା ପାଇଁ ସେ ଉପାୟ ଚିନ୍ତାକରିବାରେ ଲାଗିଲେ ।

ଦିନେ ଏକାନ୍ତରେ ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ସାଧୁ ରୂପୀ ଅର୍ଜ୍ଜୁନଙ୍କ ପାଖକୁ ଗଲେ ଓ ତାଙ୍କୁ ଡାକିନେଇ ଏକାନ୍ତରେ କହିଲେ, '' ହେ ସ୍ୱାମି ! ତୁମ ତପସ୍ୟାର ଶେଷ ସମୟ ଆସିଗଲାଣି ।''

ଅର୍ଜ୍ଜୁନ ପଚାରିଲେ, '' କିପରି ସଖା ! ବଳରାମଙ୍କୁ ଦେଖିବା ମାତ୍ରେ ମତେ ବଡ଼ ଡର ମାଡୁଛି ।''

ଭଗବାନ କହିଲେ, '' ଦେଖ ! ଦୁର୍ଯ୍ୟୋଧନ ପ୍ରତି ମୋ ଭାଇଙ୍କର ସହଜ ଅନୁରାଗ ରହିଛି । ସିଏ ଦୁର୍ଯ୍ୟୋଧନଙ୍କୁ ଗଦାବିଦ୍ୟା ତ ଶିଖାଇଛନ୍ତି, ଦ୍ୱିତୀୟରେ ଦୁର୍ଯ୍ୟୋଧନ ରାଜା ହୋଇ ସୁଦ୍ଧା ସାଧାରଣ ସେବକ ଭଳି ତାଙ୍କୁ ସେବା କରୁଛି । ଶିଷ୍ୟଙ୍କ ଭଳି, ପୁଅଙ୍କ ଭଳି ଭାଇଙ୍କର ସମସ୍ତ ଆଦେଶ ପାଳନ କରୁଛି । ଏଣୁ ତାଙ୍କ ଉପରେ ଖୁସୀ ହୋଇ ସୁଭଦ୍ରାଙ୍କ ସହିତ ଦୁର୍ଯ୍ୟୋଧନର ପରିଣୟ କରିଦେବା ପାଇଁ ମନ କରିଛନ୍ତି । ଏହି ପ୍ରସ୍ତାବରେ ମୋ ପିତା-ମାତା ଖୁସୀ ନୁହନ୍ତି । ମୁଁ ପିତା-ମାତାଙ୍କୁ ପଚାରି ବୁଝିସାରିଛି । ଅର୍ଜ୍ଜୁନ ସହିତ ଅର୍ଥାତ୍ ତୁମ ସହିତ କୌଣସି ପ୍ରକାର ବିବାହ ହୋଇପାରିଲେ ସେମାନେ ପ୍ରସନ୍ନ ହେବେ । ତେଣୁ ତୁମେ ସୁଭଦ୍ରାକୁ ହରଣ କରିନେଲେ ତାଙ୍କର କୌଣସି ଆପତ୍ତି ନାହିଁ । ଏଥିରେ ପିତାମାତାଙ୍କ ପୂର୍ଣ୍ଣ ସମ୍ମତି ଅଛି । ପୁଣି ମୁଁ ଭାବିଲି, 'କାଳେ ମହାରାଜ ଯୁଧିଷ୍ଠିରଙ୍କୁ ତୁମର ଏପରି କାର୍ଯ୍ୟକୁ ନିନ୍ଦା କରିପାରନ୍ତି । ତାଙ୍କର ମନୋଭାବ ଜାଣିବା ଉଚିତ । ତେଣୁଁ ମୁଁ ଜଣେ ଅତି ବିଶ୍ୱସ୍ତ ଦୂତକୁ ତାଙ୍କ ପାଖକୁ ପଠାଇଥିଲି । ଇନ୍ଦ୍ରପ୍ରସ୍ଥରେ ସେ ମହାରାଜ ଯୁଧିଷ୍ଠିରଙ୍କ ସକଳ ଯଥାର୍ଥ ବୃତ୍ତାନ୍ତ କହିଲା । ଏହି ପ୍ରସ୍ତାବରେ ତାଙ୍କର ସମ୍ମତି ଯେପରି ମିଳିପାରିବ ଦୂତ ସେ ପ୍ରକାର କାର୍ଯ୍ୟ ସମାପନ କରି ଆସିବା ପାଇଁ କହିଥିଲି । ସେହି ଦୂତକୁ ଆଜି ପ୍ରତ୍ୟାବର୍ତ୍ତନ କରିଛି । ଧର୍ମରାଜ ଯୁଧିଷ୍ଠିରଙ୍କର ଏହି ପ୍ରସ୍ତାବରେ ପୂର୍ଣ୍ଣ ସମ୍ମତି ଅଛି । ଏଣୁ ଏବେ ତୁମେ ମୋର ଭଉଣୀ ସୁଭଦ୍ରାକୁ ହରଣ କରି ନେଇଯାଅ ।''

ଅର୍ଜ୍ଜୁନକହିଲେ, '' ହେ ବାସୁଦେବ ! ହରଣ କରିବି କିପରି ? ସେ ତ ସବୁବେଳେ ସାତପ୍ରସ୍ଥ ଭିତରେ ଥିବା ଅନ୍ତଃପୁରରେ ରହୁଛି ।

ଭଗବାନ କହିଲେ, '' ତା ଉପାୟ ବି ବତାଇ ଦେଉଛି, ଶୁଣ । ଆସନ୍ତା ପହରଦିନଠାରୁ ଆମର ଏହି ରୈବତ ପର୍ବତରେ ମହୋତ୍ସବ ଆରମ୍ଭ ହେବ । ଏହି ମହୋତ୍ସବରେ ଯୋଗ ଦେବାପାଇଁ ଆବାଳବୃଦ୍ଧବନିତା ଆସିବେ । ଏକ ଅପୂର୍ବ ସୁବୃହତ୍ ମେଳା ହେବ । ଲୋକମାନେ ପୂଜା କରିବେ । ରୈବତ ପର୍ବତକୁ ପରିକ୍ରମା କରିବେ । ସୁଭଦ୍ରା ବି ଯିବ । ସେ ଯେତେବେଳେ ପୂଜା କରିବାକୁ ଯିବ ତୁମେ ତାକୁ ରଥରେ ବସାଇ ପକାଇ ଯିବ । ଆଉ ଏପରି ବିବାହ କ୍ଷତ୍ରିୟଙ୍କ ଧର୍ମ ବିରୁଦ୍ଧ ନୁହେଁ । ମୁଁ ନିଜେ ରୁକ୍ମିଣୀଙ୍କୁ ଏହିପରି ହରଣ କରି ବିବାହ କରିଛି । ମୋ ପ୍ରତି ଅନୁରକ୍ତ ଥିବା ଅନେକ ରାଜକୁମାରୀଙ୍କୁ ମୁଁ ଏହିପରି ହରଣ କରିଆଣିଛି ।''

ଅର୍ଜ୍ଜୁନ କହିଲେ, '' ଭଗବାନ୍ ! ମୋ ପାଖରେ ଏଠାରେ ରଥ ତ ନାହିଁ । ଚାରିମାସ ହେବ ମୁଁ ତ ଏଠାରେ ବାବାଜୀ ହୋଇ ରହିଛି ।''

ଭଗବାନ କହିଲେ, ''ଏଥି ପାଇଁ ତୁମେ ଚିନ୍ତା କରିବାର ଦରକାର ନାହିଁ । ମୁଁ ମୋ ନିଜ ରଥ ପଠାଇ ଦେବି ।''

ଅର୍ଜ୍ଜୁନ କହିଲେ, '' ଆପଣ ଏପରି କଲେ ବଳରାମ ଭାଇ ଆପଣଙ୍କ ଉପରେ କ୍ରୁଦ୍ଧ ହେବେ ।''

ଭଗବାନ କହିଲେ, '' ମୁଁ ତାଙ୍କ କଥା ବୁଝିବି ! ତାଙ୍କୁ ମନାଇ ଦେବି । ତୁମେ ନିଃସଙ୍କୋଚ ଭାବରେ ସୁଭଦ୍ରାକୁ ହରଣ କର ।''

ଏପରି କହି ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ଦାରୁକକୁ ପାଖକୁ ଡାକି ଅର୍ଜ୍ଜୁନଙ୍କ ସମ୍ମୁଖରେ ବୁଝାଇ କହିଲେ, '' ଦାରୁକ ! ଅମୁକ ଦିନ ଅମୁକ ସମୟରେ ତୁମେ ଏଠିକି ଆସିବ । ଆଉ ଏଇ ସାଧୁ ଯାହା କହିବେ ତାହା ପାଳନ କରିବ । ଯାଙ୍କର କୌଣସି କଥାକୁ ଅମାନ୍ୟ କରିବ ନାହିଁ । ଯାହା ତାଙ୍କର ଇଚ୍ଛା ହେଉଥିବ ତାହା କରିବ ।'' ଦାରୁକ ଦୁଇହାତ ଯୋଡି ଭଗବାନଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କଲା । ଏହା ପରେ ଅର୍ଜ୍ଜୁନଙ୍କଠାରୁ ମେଲାଣି ନେଇ ଭଗବାନ ନିଜ ମହଲକୁ ପ୍ରତ୍ୟାବର୍ତ୍ତନ କଲେ ।

ନିର୍ଦ୍ଦିଷ୍ଟ ଦିନ ସୁଭଦ୍ରା ସର୍ବୋତ୍ତମ ବସ୍ତ୍ର-ଆଭୂଷଣରେ ସୁସଜ୍ଜିତା ହୋଇ ରଥରେ ଚଢ଼ି ଦେବଯାତ୍ରା ନିମନ୍ତେ ଗଲେ । ରଥର ଆଗରେ ପଛରେ ସୈନ୍ୟମାନେ ଚାଲିଲେ । ସଖି ଓ ସହଚରୀଙ୍କ ଗହଣରେ ସୁଭଦ୍ରା ଅତି ଉଲ୍ଲାସର ସହିତ ସୁରକ୍ଷିତ ଦୁର୍ଗରୁ ବାହାରି ଆସିଲେ । ରାଜକୁମାରୀଙ୍କ ସମ୍ମାନାର୍ଥେ ବିଭିନ୍ନ ସ୍ଥାନରେ ସୈନ୍ୟମାନେ ସୁସଜ୍ଜିତ ହୋଇ ରହିଥିଲେ । ସେ ଅତି ପ୍ରସନ୍ନତାର ସହିତ ରୈବତ ପର୍ବତରେ ପହଞ୍ଚିଲେ । ସେଠାରେ ଦେବପୂଜା କଲେ । ପର୍ବତକୁ ପରିକ୍ରମା କଲେ । ଏହାପରେ ସେ ରଥରେ ଚଢ଼ି ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ଏଣେ ଯଥା ସମୟରେ ଦାରୁକ ଭଗବାନ ଶ୍ରୀକୃଷ୍ଣଙ୍କର ସୁବର୍ଣ୍ଣମୟ ଗରୁଡ଼ଧ୍ୱଜ ରଥକୁ ନେଇ ଉପସ୍ଥିତ ହୋଇଯାଇଥିଲା । ରଥକୁ ଠିକ୍ ସମୟରେ ପହଞ୍ଚିଯିବା ଦେଖି ସବ୍ୟସାଚୀ ଅର୍ଜ୍ଜୁନ ଅତି ପ୍ରସନ୍ନ ହୋଇଗଲେ । ସେ ବ୍ରାହ୍ମଣର ଛଦ୍ମବେଶ କାଢ଼ିଦେଲେ । ଆଉ ସୁଦୃଢ଼ କବଚ ଧାରଣ କରି ବାଣ ପୂର୍ଣ୍ଣ ଅକ୍ଷୟ ତୂଣୀରକୁ ପିଠିରେ ଝୁଲାଇ, ହାତରେ ଗାଣ୍ଡୀବ ଧନୁ ଧାରଣ କରି, ଆଙ୍ଗୁଳିରେ ଗୋଧି ଚର୍ମର ଅଙ୍ଗୁଳିପ୍ରାଣ ପରିଧାନ କରି ରଥ ଉପରେ ବସି ଗଲେ । ଦିବ୍ୟ ସୁନ୍ଦର ରଥରେ ଶୈବ୍ୟ, ବଳାହକ, ସୁଗ୍ରୀବ ଓ ମେଘପୁଷ୍ପ ନାମକ ଚାରିଟି ଘୋଡ଼ା ଯୋଚା ହୋଇଥିଲେ । ସେମାନଙ୍କ କଣ୍ଠ ତଳେ ଓ ବେକରେ ସୁନ୍ଦର ଶବ୍ଦ ସୃଷ୍ଟି କରୁଥିବା ଘଣ୍ଟି ଘାଗୁଡ଼ି ବନ୍ଧା ହୋଇଥିଲା । ଅର୍ଜ୍ଜୁନ ରଥରେ ବସିଯିବା କ୍ଷଣି ଦାରୁକ ଘୋଡ଼ାଙ୍କୁ ଛୁଟାଇ ଦେଲା । ମେଘ ଭଳି ଗୁରୁଗମ୍ଭୀର ସ୍ୱର ଉତ୍ପନ୍ନ କରି ରଥ ଦ୍ରୁତ ବେଗରେ ଆଗକୁ ଚାଲିଲା । ଦୂରରୁ ସେ ସୁଭଦ୍ରାଙ୍କ ରଥ ଆସୁଥିବା ଦେଖିବାକୁ ପାଇଲେ । ଅର୍ଜ୍ଜୁନ ଦାରୁକକୁ କହିଲେ-ଆଗରୁ ଆସୁଥିବା ରଥ ପାଖକୁ ଆମ ରଥ ନେଇ ଚାଲ ।''

ଦାରୁକ କହିଲା, ''ପ୍ରଭୁ ! ସେ ରଥଟି ଅନ୍ତଃପୁରର ରଥ । ସେଥିରେ କେହି ରାଣୀ ଥାଇପାରନ୍ତି ଅଥବା ରାଜକୁମାରୀ ।''

ଅର୍ଜ୍ଜୁନ ଦାରୁକକୁ ଧମକାଇବା ସ୍ୱରରେ କହିଲେ, ''ମୋତେ ଉତ୍ତର ଦେବାର ପ୍ରୟୋଜନ ନାହିଁ । ମୁଁ ଯାହା କହୁଛି ସେୟା କର ।''

'' ଯାହା ଆଜ୍ଞା ପ୍ରଭୁ ।'' ବୋଲି କହି ଦାରୁକ ରଥକୁ ଆହୁରି ଦ୍ରୁତ ବେଗରେ ଚଳାଇବାରେ ଲାଗିଲା । ସୁଭଦ୍ରାଙ୍କ ରଥ ପାଖରେ ରଥକୁ ରଖି ମହାବୀର ଅର୍ଜ୍ଜୁନ ତାଙ୍କ ରଥରୁ ଓହ୍ଲାଇ ପଡ଼ିଲେ । ସେ ନିର୍ଭୟରେ ସୁଭଦ୍ରାଙ୍କ ରଥର ପର୍ଦ୍ଦାକୁ ଟେକି ସୁଭଦ୍ରାଙ୍କ ଅତି କୋମଳ ହାତକୁ ଧରି, ବାଟ କଢ଼ାଇ ନିଜ ରଥରେ ବସାଇ ଦେଲେ । ସୈନିକମାନେ ସେତେବେଳେ ବସ୍ତୁତଃ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଇଥିଲେ । ସେମାନେ ପ୍ରକୃତିସ୍ଥ ହୋଇ ନିଜର କର୍ତ୍ତବ୍ୟ ସ୍ଥିର କରିବା ପୂର୍ବରୁ ସୁଭଦ୍ରା ଅର୍ଜ୍ଜୁନଙ୍କ ରଥରେ ଚଢ଼ିସାରିଥିଲେ । ରକ୍ଷକ ସେନାପତି ଅତି କ୍ରୁଦ୍ଧ ସ୍ୱରରେ ଚିତ୍କାର କରି କହିଲା, '' ଆପଣ ଇଏ କ'ଣ କରୁଛନ୍ତି ? ଆପଣଙ୍କ ପକ୍ଷରେ ଏହା ଉଚିତ କର୍ମ ହେବନାହିଁ ।''

ଅର୍ଜ୍ଜୁନ କହିଲେ, '' ଚୁପ୍ ହୁଅ, ଆଉ ଏଠାରୁ ପଳାୟନ କର ।''

ସେନାପତି କହିଲା, ''ଚୁପ୍ ହୋଇଯିବି କିପରି ଆଜ୍ଞା ! ଏବେ ଆମର ବଳ ପରାକ୍ରମ ଦେଖନ୍ତୁ ।'' ଏପରି କହି ସେ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହୋଇଗଲା । ସୈନ୍ୟମାନେ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହୋଇଯିବା କ୍ଷଣି ଅର୍ଜ୍ଜୁନ ଆଖି ପିଛୁଳାକେ ଏପରି ବାଣ ପ୍ରହାର କରିବାକୁ ଲାଗିଲେ

ଯେ ମୁହୂର୍ତ୍ତକ ମଧ୍ୟରେ ସେମାନେ ସମସ୍ତେ ଛିନ୍‌ଛତ୍ର ହୋଇଗଲେ । କିନ୍ତୁ କାହାରି ମୃତ୍ୟୁ ହେଲା ନାହିଁ । ଅର୍ଜ୍ଜୁନଙ୍କ ରଥ ନିର୍ବିଘ୍ନରେ ଇନ୍ଦ୍ରପ୍ରସ୍ଥ ଅଭିମୁଖେ ପ୍ରଖର ବେଗରେ ଚାଲିଲା ।

ସୈନ୍ୟମାନେ ଦ୍ୱାରିକାକୁ ଦୌଡ଼ିଗଲେ । ସେମାନେ ସୁଧର୍ମା ସଭାର ସଭାପରିଚାଳକଙ୍କୁ ସମସ୍ତ ଘଟଣା ଏକା ନିଃଶ୍ୱାସରେ କହିଗଲେ । ସଭାର ସର୍ବୋପରେ ଏକ ବିଶାଳ ଘଣ୍ଟା ଥିଲା ।ଏହି ଘଣ୍ଟା ବଜାଇବାର ଅଧିକାର ସଭାପତିଙ୍କ ହାତରେ ଥାଏ । ଦ୍ୱାରକା ଉପରେ ଆଶୁ ବିପତ୍ତି ପଡ଼ିଲେ ସଭାପତି ଏହି ଘଣ୍ଟାକୁ ବଜାନ୍ତି । ଘଣ୍ଟା ଶବ୍ଦ ଶୁଣିବା କ୍ଷଣି ପାରିଷଦ ବର୍ଗ ଯିଏ ଯେଉଁ ଅବସ୍ଥାରେ ଥାନ୍ତି, ସଭାକକ୍ଷରେ ସହସା ଏକଯୁଟ ହୋଇଯାଆନ୍ତି । ସୈନିକଙ୍କଠାରୁ ସୁଭଦ୍ରାଙ୍କ ବିଷୟରେ ଜାଣିବା ପରେ ସଭାପତି ଆପଦ ଜନକ ଘଣ୍ଟି ବଜାଇଦେଲା । ଘଣ୍ଟାଧ୍ୱନୀ ଶୁଣିବା କ୍ଷଣି ଯାଦବ ବୀରମାନେ, ଭୋଜନ ସ୍ଥାନରୁ, ସ୍ନାନାଗାରରୁ, ବିଶ୍ରାମ କକ୍ଷରୁ ବାହାରି ଆସି ତତ୍‌କାଳ ସୁଧର୍ମା ସଭାରେ ବସିଗଲେ ।

ଯାଦବ ସାମନ୍ତମାନେ ନିଜ ନିଜ ଆସନ ଗ୍ରହଣ କରିବା ପରେ ସଭାପତି ସେହି ସୈନିକଙ୍କୁ ସଭାର କେନ୍ଦ୍ର ସ୍ଥଳରେ ସମୁପସ୍ଥିତ କଲେ । ସୈନିକ ସୁଧର୍ମା ସଭାକୁ ସମ୍ବୋଧନ କରି କହିଲା- "କୁମାରୀ ସୁଭଦ୍ରା ଦେବୀଙ୍କୁ ସୁରକ୍ଷା ଦେବାକୁ ଯାଇ ଆମେ ଫେରୁଥିବା ସମୟରେ ମହାବୀର ଅର୍ଜ୍ଜୁନ ଅଧାବାଟରେ ବଳପୂର୍ବକ ସୁଭଦ୍ରାଙ୍କୁ ହରଣ କରି ନେଇଗଲେ । ସେ ଇନ୍ଦ୍ରପ୍ରସ୍ଥ ମାର୍ଗରେ ଦ୍ରୁତ ବେଗରେ ପଳାଇଲେ ।"

ଏପରି ଶୁଣିବା କ୍ଷଣି ସଭାରେ ଉପସ୍ଥିତ ଥିବା ଯାଦବ ଯୁବକମାନେ କ୍ରୋଧରେ ଥରିବାରେ ଲାଗିଲେ । ସେମାନେ ଅତି କ୍ରୋଧରେ ଦାନ୍ତ କଡମଡ଼ କରି କହିଲେ, "ଅର୍ଜ୍ଜୁନ ଅତି ଦୁଷ୍କର୍ମ କରିଛି । ସେ ଆମ ଯାଦବ କୁଳକୁ ଅପମାନ କରିଛି । ଆଜି ଆମେ ତାର ଏହି ଅଭଦ୍ରାମିର ଫଳ ନିଶ୍ଚୟ ଚଖାଇବୁ । ଆଜି ଯୁଦ୍ଧରେ ଆମେ ତାକୁ ନିଶ୍ଚୟ ପ୍ରାଣରେ ମାରିଦେବୁ । ଆଉ ବିଳମ୍ବ କରିବା ଉଚିତ ନୁହେଁ । ସେ ବର୍ତ୍ତମାନ ଅଧିକ ଦୂରକୁ ଯାଇ ନଥିବ । ଆଉ କାଳକ୍ଷେପଣ ନ କରି ଅତିବେଗ୍ରେ ତାକୁ ଆକ୍ରମଣ କରିବା ଉଚିତ ।" ଏପରି କହି ସମସ୍ତେ ଉତ୍ତେଜନା ଓ ବ୍ୟଗ୍ରତାରେ ଠିଆ ହୋଇପଡ଼ିଲେ । ସମୁଦ୍ରରେ ଜୁଆର-ଭଟ୍ଟାର ଗର୍ଜନ ଶୁଭିବା ଭଳି ସେଦିନ ସୁଧର୍ମା ସଭା କୋଳାହଳ ମୟ ହୋଇଯାଇଥିଲା । ଯୁଦ୍ଧ ନିମନ୍ତେ ସମସ୍ତେ ଏକପ୍ରାଣ ହୋଇଯାଇ ଥିଲେ । ସେତେବେଳେ ସେମାନଙ୍କ ମଧ୍ୟରୁ ଜଣେ କହିଲା, 'ମୋ ଅସ୍ତ୍ର ଶୀଘ୍ର ଆଣିଦିଅ ।' ଆଉ ଜଣେ କହୁଥିବା ଶୁଣାଗଲା, 'ସାରଥି ! ମୋ ରଥ ପ୍ରସ୍ତୁତ କର ।" ଆଉ କେହି ଇତ୍ୟାବସରରେ ରଥ ସଜାଡ଼ିବାରେ ଲାଗି ଯାଇଥିଲା । ଅଳ୍ପ ସମୟ ଭିତରେ ଚାରିଆଡ଼େ ଅସ୍ତ୍ର ଶସ୍ତ୍ରର ଝଙ୍କାର ଶବ୍ଦ ଶୁଣାଯିବାରେ ଲାଗିଲା, ସୈନିକମାନେ ଇତସ୍ତତଃ ଦୌଡ଼ା ଧାପଡ଼ କରୁଥିବାର ଶୁଣାଗଲା । ବସ୍ତୁତଃ, ଏପରି କଥାବାର୍ତ୍ତା ହେଉ ହେଉ ସୈନିକମାନେ ପ୍ରସ୍ତୁତ

ହୋଇଯାଇଥିଲେ । କେବଳ ମାତ୍ର ଦୁଇଜଣଙ୍କୁ ଛାଡିଦେଲେ ଅନ୍ୟ ସମସ୍ତ ପାରିଷଦ ଉତ୍ତେଜିତ ହୋଇ ନିଜ ନିଜ ଆସନ ଛାଡ଼ି ଦେଇଥିଲେ । ସେହି ଦୁଇଜଣ ହେଉଛନ୍ତି ବଳରାମ ଓ ଶ୍ରୀକୃଷ୍ଣ । ବଳରାମ ତ ଅତ୍ୟଧିକ କ୍ରୋଧାନ୍ୱିତ ହୋଇଯାଇଥିଲେ । ସେ ମନେ ମନେ ଅତ୍ୟନ୍ତ କ୍ଷୁଭିତ ହୋଇ ଥିବା ବେଳେ ଭଗବାନ ସଂପୂର୍ଣ୍ଣ ଶାନ୍ତ ଓ ନୀରବ ଥିଲେ ।

ସମସ୍ତଙ୍କର ଯୁଦ୍ଧ ନିମନ୍ତେ ବ୍ୟଗ୍ରତା ଦେଖି ବଳରାମ ଶୁଷ୍କ ନରମ ହସ ହସି କହିଲେ, "ଆରେ, ତୁମେମାନେ ଏଡ଼େ ବ୍ୟସ୍ତ କାହିଁକି ହୋଇ ପଡ଼ିଛ ? ଆମର ଏପରି ଘୋର ଅପମାନ ହୋଇଥବା ଦେଖି ଏହି କୃଷ୍ଣ କିପରି ଚୁପ୍ ଚାପ ବସିଛି ଦେଖୁନାହଁ କାହିଁକି ? ସମସ୍ତେ ବସିଯାଅ । ଯିଏ ଯାହା କହିବାର ଓ କରିବାର ତାହା କହି ସାରିଛ, ଏବେ କୃଷ୍ଣର ମତାମତ କ'ଣ ତା ବି ତ ଜାଣିବା ଉଚିତ ! ଶ୍ରୀକୃଷ୍ଣଙ୍କର ଅଭିପ୍ରାୟ ଶୁଣିବା ପରେ, ସେ ଯେପରି କହିବ ତାହା କାର୍ଯ୍ୟରେ କଲେ ଠିକ୍ ହେବ ।" ଶ୍ରୀ ବଳରାମଙ୍କ ଠାରୁ ଏପରି କଥା ଶୁଣି ଉତ୍କ୍ଷିପ୍ତ ହୋଇ ଉଠିଥିବା ସଭାସଦ୍ ବର୍ଗ ପୁନର୍ବାର ନିଜ ନିଜ ଆସନରେ ବସିଗଲେ । ପୁଣି ନୀରବତା ଫେରିଆସିଲା ।

ସମସ୍ତେ ନୀରବରେ ବସିଯିବା ପରେ, ପୂର୍ଣ୍ଣମୀ ଦିନ ସମୁଦ୍ର ଯେପରି ଘୋର ଗର୍ଜନ କରି କ୍ଷୋଭିତ ହୋଇ ଉଠେ, ସେହିଭଳି ବିକ୍ଷୁବ୍ଧ ହୋଇ ଉଠି ବଳରାମ ଆଖିକୁ ନାଲି କରି ଗୁରୁଗମ୍ଭୀର ସ୍ୱରରେ କହିଲେ, " କୃଷ୍ଣ ! ଅର୍ଜ୍ଜୁନ ହେଉଛି ତୋର ମିତ୍ର । ସେ ଯେ ଏପରି ଧୂର୍ତ୍ତତା କରିବ, ଆମେ ସ୍ୱପ୍ନରେ ବି ଥରେ ଭାବି ନଥିଲୁ । ସେ ଆମର କୁଳକୁ ଅପମାନ କରିଛି । ଚାରିମାସ ପର୍ଯ୍ୟନ୍ତ ସେ କପଟି ମୁନି ବେଶରେ ରହିଲା । ଏବେ ଆମ କୁଳରେ କଳଙ୍କ ଲଗାଇ ଦେଇଗଲା । ସ୍ୱାମ୍ଭାଭିମାନୀ ଏପରି କିଏ ଅଛି ଯେ କି ଏହି ଅପମାନକୁ ସହ୍ୟ କରିପାରିବ ? ଏତେ କଥା ହୋଇଯିବା ପରେ ବି ତୁ ଚୁପ୍ ରହିଛୁ । ଆମେ ସମସ୍ତେ ମୁହଁ ତଳକୁ ପୋତି ଏହି ଘୋର ଅପମାନ ସହ୍ୟକରୁ, ଏହା କ'ଣ ତୁ ଚାହୁଁ ?"

ଅତି ଧୀର ସ୍ଥିର ଭାବରେ ଭଗବାନ କହିଲେ, " ଭାଇ ! ଏଥିରେ ମୁଁ ଯାଦବଙ୍କର ଟିକିଏ ବୋଲି ଅପମାନ ହୋଇଥିବା ଜାଣିପାରୁନାହିଁ । ଅର୍ଜ୍ଜୁନ ଆମର ଅପମାନ କରିନାହିଁ । ସେ ତ ଆମର ଗୌରବ ବର୍ଦ୍ଧନ କରିଛି । କ୍ଷତ୍ରିୟଙ୍କ ମଧ୍ୟରେ ପୁରୁବଂଶ ଶ୍ରେଷ୍ଠ । ପୁରୁବଂଶୀୟଙ୍କ ସହିତ ସମ୍ବନ୍ଧ ହେବା ଆମର ପରମ ଗୌରବର କଥା । ଅର୍ଜ୍ଜୁନ କୁଳୀନ । ଆମ ଭଉଣୀ ସୁଭଦ୍ରା ଯେଉଁଭଳି ଯଶସ୍ୱିନୀ, ଅର୍ଜ୍ଜୁନ ସେହିଭଳି ଯଶସ୍ୱୀ । ଆପଣ ତାକୁ ଦୁର୍ଯ୍ୟୋଧନଙ୍କୁ ଦେବାପାଇଁ ଚାହିଁଥିଲେ । ଦୁର୍ଯ୍ୟୋଧନଠାରୁ ଅର୍ଜ୍ଜୁନ ଗୁଣରେ, ବଳ ପରାକ୍ରମରେ, କାର୍ଯ୍ୟରେ, ସଦାଚାରରେ ତଥା ସତ୍ୟତାରେ କିଛି କମ ନୁହେଁ, ବରଂ ଅଧିକ । କନ୍ୟାର ବିବାହ ଆପଣଙ୍କୁ ହିଁ କରିବାର ଥିଲା । ଦୁର୍ଯ୍ୟୋଧନ ସହିତ ନ ହୋଇ ଅର୍ଜ୍ଜୁନ ସହିତ କରିଦେଲେ କ୍ଷତିର ପ୍ରଶ୍ନଇ ଉଠିବ ନାହିଁ ।"

କ୍ରୋଧ ସମ୍ବରଣ କରି ପୂର୍ବଭଳି ଗମ୍ଭୀର ସ୍ୱରରେ ବଳରାମ କହିଲେ, '' କ୍ଷତି କିଛି ନହେଉ ପଛେ, ସେ ତ ଅଶିଷ୍ଟାଚାର ନିଶ୍ଚୟ କରିଛି । ସାଧୁବେଶକୁ କଳଙ୍କିତ କରିଛି । ତାର ଏପରି ଆଚରଣ ଦେଖିବା ପରେ ସଂସାରରେ ସାଧୁଙ୍କୁ କେହି ବିଶ୍ୱାସ କରିବେ କି ? ପୁଣି ବଳପୂର୍ବକ କନ୍ୟା ଅପହରଣ କରିବାର କି ଆବଶ୍ୟକତା ଅର୍ଜ୍ଜୁନର ଥିଲା ?

ଭଗବାନ କହିଲେ, '' ଭାଇ । ଟିକିଏ ଶାନ୍ତ ଭାବରେ ଭାବନ୍ତୁ । ସମଭାବାପନ୍ନଙ୍କ ମଧ୍ୟରେ ପ୍ରେମଭାବ ହେବା ସ୍ୱାଭାବିକ କଥା । ଯେ ପର୍ଯ୍ୟନ୍ତ ସେ ସାଧୁ ଭାବରେ ଥିଲା, ଠିକ୍ ଥିଲା । ସେ ତ ସାଧୁ ବେଶରେ ସୁଭଦ୍ରାକୁ ହରଣ କରିନାହିଁ । ସେ ବୀରବେଶରେ ସୁଭଦ୍ରାକୁ ହରଣ କରିଛି । ସେ ସାଧୁବେଶକୁ ତେଣୁ କଳଙ୍କିତ କରିନାହିଁ । ସ୍ୱୟମ୍ବରରେ କନ୍ୟା ଯାହାକୁ ଇଚ୍ଛା ତାକୁ ବରଣ କରିପାରେ । ଆମର ତ ଧନ ଲୋଭରେ କନ୍ୟାକୁ ବିକ୍ରୀ କରିବା ପ୍ରଥା ନାହିଁ । ପ୍ରସନ୍ନତା ପୂର୍ବକ ଆପଣ କନ୍ୟା ତାକୁ ଦେବାକୁ ଚାହିଁଲେ ନାହିଁ । ଏବେ କନ୍ୟା ହରଣ କରିବା ଛଡ଼ା ତାର ଅନ୍ୟ ଗତି ହିଁ ନଥିଲା । ଆପଣଙ୍କ କୁଳର ଅନେକ ଲୋକ କନ୍ୟାଙ୍କୁ ସ୍ୱୟମ୍ବର ପୂର୍ବରୁ ଅପହରଣ କରି ଆଣିଥିବା ଆପଣ ଜାଣନ୍ତି । ଏହା ନିନ୍ଦିତ କାର୍ଯ୍ୟ ନୁହେଁ । ଆପଣ ମଧ୍ୟ ଏହାକୁ ସମର୍ଥନ କରିଛନ୍ତି । ଯେତେବେଳେ ଏତେ ବଡ଼ ବଡ଼ ରାଜାଙ୍କର ଅପମାନ ହୋଇନାହିଁ, ଏବେ ଆପଣଙ୍କୁ କାହିଁକି ତାହା ଅପମାନ ଲାଗିବ ? ଏଣୁ, ମୋ ଦୃଷ୍ଟିରେ ଅର୍ଜ୍ଜୁନ ଆଦୌ ଅନୁଚିତ କର୍ମ କରିନାହିଁ ।''

କୃଷ୍ଣଙ୍କର ଅକାଟ୍ୟ ଯୁକ୍ତି ଶୁଣି ବଳରାମ ଆହୁରି ଅଧିକ କ୍ରୋଧ ପ୍ରକାଶ କରି କହିଲେ, ''କୃଷ୍ଣ ! ତୁ ପକ୍ଷପାତ କରୁଛୁ । ଯାଦବମାନେ ଅର୍ଜ୍ଜୁନକୁ କଦାପି କ୍ଷମା କରିପାରିବେ ନାହିଁ ।''

ନିଜର ଜ୍ୟେଷ୍ଠଙ୍କୁ ଏପରି କୁପିତ ହୋଇଥିବା ଦେଖି ଭଗବାନ ନିଜ ଆସନରୁ ଉଠି, ବଳରାମଙ୍କ ଦୁଇଗୋଡ଼ ଧରି ପକାଇଲେ, ଓ ଅତି ନମ୍ରତାର ସହିତ ବୁଝାଇ କହିଲେ, ''ଭାଇ ! ଆଗପଛ କଥା ବିଚାର କରନ୍ତୁ । ଯୁଦ୍ଧ କରିବା ପାଇଁ ମୁଁ ଆପଣଙ୍କୁ ବାଧା ଦେଉନାହିଁ । କିନ୍ତୁ ମୋତେ ଏପରି ଜଣେ ଯାଦବ ବୀରକୁ ଦେଖାନ୍ତୁ ଯିଏ ଅର୍ଜ୍ଜୁନ ସହିତ ଯୁଦ୍ଧ କରି ପାରିବ । ଯୁଦ୍ଧରେ ଇନ୍ଦ୍ର ବି ତାକୁ ପାରିବେ ନାହିଁ । ଖାଣ୍ଡବ-ଦାହ ସମୟରେ ମୁଁ ତାର ପୁରୁଷାର୍ଥ ଦେଖିଛି । ଏବେ ତ ସିଏ ଅସ୍ତ୍ର-ଶସ୍ତ୍ରରେ ସୁସଜ୍ଜିତ । ମୋର ଦିବ୍ୟ ରଥରେ ସେ ବସିଛି । ତାକୁ ତ ଏବେ ସ୍ୱୟଂ କାର୍ତ୍ତିକେୟ ବି ଜିତି ପାରିବେ ନାହିଁ । ଆପଣ ଯଦି ଯୁଦ୍ଧ କରିବା ପାଇଁ ଯାଆନ୍ତି, ଆଉ ପରାଜିତ ହୁଅନ୍ତି, ତେବେ ସମସ୍ତ ଯାଦବଙ୍କ ମୁହଁରେ କଳାବୋଳି ହୋଇଯିବ । ଏଣୁ ତାକୁ ପ୍ରସନ୍ନତା ପୂର୍ବକ ନିମନ୍ତ୍ରଣ କରି ଆଣିଲେ ଉଚିତ କଥା ହେବ । ଆମର ମାନ ମର୍ଯ୍ୟାଦା କ୍ଷୁଣ୍ଣ ହେବନାହିଁ । ତାର ବି କୀର୍ତ୍ତି ବଢ଼ିବ ।''

ଅର୍ଜୁନ ଶ୍ରୀକୃଷ୍ଣଙ୍କ ଦିବ୍ୟ ରଥରେ ବସି ସୁଭଦ୍ରାକୁ ହରଣ କରିଥିବା କଥା ଶୁଣିବାପରେ ବଳଦେବ ହସିପକାଇଲେ । ସେ ହସି ହସି କହିଲେ, '' କୃଷ୍ଣ ! ସୁଭଦ୍ରାର ବିବାହ ଅର୍ଜୁନ ସହିତ କରିବା ପାଇଁ ତୋର ଯଦି ଇଚ୍ଛା ଥିଲା ତେବେ ଏତେ ନାଟକ କରିବାର ତ କୌଣସି ଆବଶ୍ୟକତା ନଥିଲା । ଚାରିମାସ କାଳ ତାକୁ ବାବାଜୀଟେ କରି ରଖିଲୁ କାହିଁକି ? ଏଥର ଜାଣିଲି, ଯାହା ସବୁ ଘଟିଛି, ତୋର ଜ୍ଞାତ ସାରରେ ହିଁ ହୋଇଛି । ତା ନ ହୋଇଥିଲେ ତୋ ରଥ ସିଏ କିପରି ପାଇଥାନ୍ତା । ତୋର ଯଦି ଏୟା ଇଚ୍ଛା ଥିଲା, ତେବେ ତୁ ମୋତେ କହିଲୁ ନାହିଁ କାହିଁକି ? ''

ଭଗବାନ ବଡଭାଇଙ୍କ କଥାରେ ଲାଜେଇ ଯାଇ କହିଲେ, '' ଭାଇ ! ଭୟରେ ମୁଁ ଆପଣଙ୍କୁ ଏହା କହି ନାହିଁ । ମୋ କଥା କାଳେ ଆପଣ ଶୁଣି ନଥାନ୍ତେ । ଯାହାହେଉ, ଏବେ ଯାହା ହୋଇଛି, ଭଲ ହୋଇଛି । ଏବେ ଅର୍ଜୁନଙ୍କୁ ସତ୍କାର ପୂର୍ବକ ଡାକି ଆଣନ୍ତୁ ।''

ଏହାଶୁଣି ବଳରାମ ନିଜେ ଯାଇ ଅର୍ଜୁନଙ୍କୁ ଘରକୁ ଡାକି ଆଣିଲେ । ଦ୍ୱାରକାକୁ ଆଣି ଶାସ୍ତ୍ରୀୟ ବିଧିରେ ସୁଭଦ୍ରାଙ୍କ ବିବାହ ଅର୍ଜୁନଙ୍କ ସହିତ କରାଇଦେଲେ । ସେ ବର-ବଧୂଙ୍କୁ ପର୍ଯ୍ୟାପ୍ତ ଧନ, ବିବିଧ ପ୍ରକାର ସାମଗ୍ରୀ, ହାତୀ, ଘୋଡ଼ା, ରଥ ଓ ଅନେକ ଦାସ ଦାସୀ ମଧ୍ୟ ଦେଲେ ।

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ସୁଭଦ୍ରାଙ୍କୁ ବିବାହ କରି ଅର୍ଜୁନ ଏକ ବର୍ଷ ପର୍ଯ୍ୟନ୍ତ ଦ୍ୱାରକାରେ ରହିଲେ । ଏହାପରେ ସେ ପୁଷ୍କର କ୍ଷେତ୍ରକୁ ଚାଲିଗଲେ । ସେହିଠାରେ କିଛିଦିନ ରହି ବନବାସର ଦ୍ୱାଦଶ ବର୍ଷ ପୂରଣ କଲେ । ଦ୍ୱାଦଶ ବର୍ଷ ପୂରଣ ହୋଇଯିବାରୁ ସେ ଇନ୍ଦ୍ରପ୍ରସ୍ଥକୁ ପ୍ରତ୍ୟାବର୍ତ୍ତନ କରି ଦ୍ରୌପଦୀ ଓ ଭାଇମାନଙ୍କ ସହିତ ସୁଖରେ ରହିଲେ । ହେ ମୁନିଗଣ ! ମୁଁ ଏହି ସମସ୍ତ କଥା ମୋ ଗୁରୁଦେବଙ୍କ ଠାରୁ ଶୁଣିଛି । ଅର୍ଜୁନ ଓ ସୁଭଦ୍ରାଙ୍କର ବିବାହ କଥା କହିଲି । ଏହାପରେ ଆପଣମାନେ ଆଉ କ'ଣ ଶୁଣିବାକୁ ଚାହୁଁଛନ୍ତି !''

ମହର୍ଷି ଶୌନକ କହିଲେ, '' ହେ ମହର୍ଷି ସୂତ ! ଶ୍ରୀକୃଷ୍ଣଙ୍କ କଥା ଯେତେ ଶୁଣିଲେ ବି ଆମର ତୃପ୍ତି ହେଉନାହିଁ । ଭଗବାନଙ୍କ ପ୍ରସଙ୍ଗରେ ଆଉ କିଛି କୁହନ୍ତୁ ।''

ମହର୍ଷି ସୂତ କହିଲେ, '' ଠିକ୍ ଅଛି । ଭଗବାନଙ୍କର ଭକ୍ତବତ୍ସଳତା ପ୍ରସଙ୍ଗରେ ମୋର ଏକ ଅପୂର୍ବ ସୁନ୍ଦର କଥା ମନେ ପଡୁଛି । ଭଗବାନ ଯେଉଁଭଳି ଏକା ସାଙ୍ଗରେ ମହାରାଜ ଜନକ ଓ ଶ୍ରୁତଦେବ ବ୍ରାହ୍ମଣଙ୍କ ଉପରେ କୃପାକରିଥିଲେ, ସେଇ କଥା ଏବେ ଶୁଣାଉଛି । ଆପଣମାନେ ସମାହିତ ଚିତ୍ତରେ ଏହି ଅପୂର୍ବ ସୁନ୍ଦର କଥା ଶୁଣନ୍ତୁ ।''

### ଛପ୍ପୟ

*ମୁନି ବଲ ଯାଦବ କୁପିତ ଚଲେ ଲଡ଼ିବେ ଅରଜୁନ ତେଂ ।*
*ହେଂକେଂ ହରି ଗମ୍ଭୀର ପ୍ରେମଯୁତ ବୋଲେ ତିନ ତେଂ ।।*
*ହେ ଅଜେୟ ଜଗ ପାର୍ଥ ବାତ ମଦ ବ୍ୟର୍ଥ ବଢ଼ା ଐ ।*
*କରୋ ସୁଭଦ୍ରା ବ୍ୟାହ ନେହ ତେଂ ନଗର ବୁଲା ଐଂ ।।*
*ହରିକୀ ସମ୍ମତି ସମୁଝି ବଲ, ଜାୟ ବୁଲାୟ କନ୍ୟା ଦଈ ।*
*ପାଇ ପରସ୍ପର ବର ବଧୂ, ଅତି ପ୍ରସନ୍ନତା ମନ ଭଈ ।।*



# ରାଜା ଜନକ ଓ ଶ୍ରୁତଦେବ ବିପ୍ର

**ତଥା ତଦ୍‌ରାଷ୍ଟ୍ରପାଲୋଽଙ୍ଗ ବହୁଲାଶ୍ୱ ଇତି ଶ୍ରୁତଃ ।**
**ମୈଥିଲୋ ନିରହମ୍ମାନ ଉଭାବପ୍ୟଚ୍ୟୁତ ପ୍ରିୟୌ ।।**
**ତୟୋଃ ପ୍ରସନ୍ନୋ ଭଗବାନ୍ ଦାରୁକେଣାହୃତଂ ରଥମ୍ ।**
**ଆରୁହ୍ୟ ସାକଂ ମୁନିଭିର୍ବିଦେହାନ୍ ପ୍ରୟଯୌ ପ୍ରଭୁଃ ।।☆**

(ଶ୍ରୀଭା. ୧୦ମ ସ୍କ. ୮୬ ଅ. ୧୬-୧୭ ଶ୍ଳୋକ)

### ଛପ୍ପୟ

*ଅବ ଇକ ମୁନିବର ! କହୂଁ କୃପାଯୁତ କଲିନ କହାନୀ ।*
*ମିଥିଲାପୁରମହଁ ବସହିଁ ବିପ୍ର ଶ୍ରୁତଦେବ ଅମାନୀ ।।*

---

☆ କୃଷ୍ଣର ସଖା ପୂର୍ବକାଳେ । ଥିଲା ଯେ ବିଦେହ ମଣ୍ଡଳେ ।।
କୃଷ୍ଣର ଅତି ପ୍ରିୟଭାବ । ନାମ ତାହାର ଶ୍ରୁତଦେବ ।।
ଏମନ୍ତେ ବହୁଳାଶ୍ୱ ନାମ । ମିଥିଳା ନଗରେ ରାଜନ ।।
ସେ ବେନିଜନ ହରିଭାବେ । ଜିତଇନ୍ଦ୍ରିୟ ସେ ସ୍ୱଭାବେ ।।
ତାହାଙ୍କ ଭାବ ଘେନି ହୃଦେ । ଗୋବିନ୍ଦ ପରମ ଆନନ୍ଦେ ।।
ଭକତଭାବେ ବଶ ହରି । ଉଦ୍ଧବ ସଙ୍ଗେ ଦଇତ୍ୟାରି ।।
ଦାରୁକ ରଥ କଲା ଆଣି । ମୁନିଙ୍କ ସଙ୍ଗେ ଚକ୍ରପାଣି ।।
ରଥ ଆରୋହି ହୃଷୀକେଶ । ମିଥିଳା ନଗରେ ପ୍ରବେଶ ।।

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ. ୯୨ ଅ.)

ଭୂପତି ତହିଁ ବହୁଳାକ୍ଷ ଭକ୍ତବର ହରି କେ ପ୍ୟାରେ ।
ଦୋଉନି କରନ କୃତାର୍ଥ କୃଷ୍ଣ ପୁରମାହିଁ ପଧାରେ ।।
ପହୁଁଚେ ମିଥିଳା ନଗର ମହଁ, ବହୁ ଋଷି ମୁନି ହରି ସଂଗ ମହଁ ।
ସୁନତ ବିପ୍ର ନୃପ ହରଷ ତେଂ, ନହୀଂ ସମାୟେ ଅଙ୍ଗମହଁ ।।

ଅଳ୍ପ ସାମର୍ଥ୍ୟ ଥିବା ଅତିଥିଙ୍କୁ ସେତେବେଳେ ଖୁବ୍ ଅସୁବିଧା ହୁଏ ଯେତେବେଳେ ଦୁଇ ଜଣ ଭିନ୍ନ ଭିନ୍ନ ପ୍ରକୃତିବିଶିଷ୍ଟ ପୁରୁଷ ତାଙ୍କୁ ସର୍ବପ୍ରଥମେ ନିଜ ଘରେ ରହିବାକୁ ଆଗ୍ରହ କରନ୍ତି । ଯାହାଙ୍କଠାରେ ଆମର ଅତ୍ୟନ୍ତ ସ୍ନେହ ଥାଏ, ଯାହାଙ୍କୁ ଆମେ ଇଷ୍ଟଦେବ ବୋଲି ମାନୁଛେ, ଯାହାଙ୍କୁ ଅପେକ୍ଷା କରି କରି ଆମେ ଅବଶ ହୋଇଯାଇଛେ, ସେ ଯଦି ଆମ ଘରକୁ ଆସିଯାଆନ୍ତି, ତେବେ ଆମର ସ୍ୱାଭାବିକ ଏପରି ଇଚ୍ଛା ହେବ ଯେ ଇଏ ସର୍ବପ୍ରଥମେ ଆମର ଆତିଥ୍ୟ ଗ୍ରହଣ କରନ୍ତୁ । ଇଷ୍ଟଙ୍କ ଆଗମନରେ ଆମର ଏପରି ଲୋଭ ହୋଇଯାଏ ଯେ ସେ ଅଧିକରୁ ଅଧିକ ସମୟ ଆମ ସହିତ ରହିବା ପାଇଁ ମନ ଇଚ୍ଛାକରେ । ଫଳରେ ଅନ୍ୟ ଆଗ୍ରହୀ ଲୋକଙ୍କ ସହିତ ପ୍ରତିସ୍ପର୍ଦ୍ଧା ହୋଇଯାଏ, ପ୍ରତିଦ୍ୱନ୍ଦ୍ୱ ହୋଇଯାଏ । ଯଦି ପ୍ରତିଦ୍ୱନ୍ଦ୍ୱୀ ଧନୀ ହୋଇଥାଏ, ସ୍ୱଚ୍ଛଳ ହୋଇଥାଏ ତେବେ କହିବାକୁ ହୁଏ ଯେ ଆମ ଘରକୁ କାହିଁକି ଆସନ୍ତେ, ଆମେ ତ ଦରିଦ୍ର ନିର୍ଧନ । ଅସମର୍ଥ ଅତିଥି ଏପରି ସମୟରେ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଏ । କିନ୍ତୁ ସମର୍ଥ ସ୍ୱାମୀ ଦୁହିଁଙ୍କୁ ସନ୍ତୁଷ୍ଟ କରିଦେଇଥାନ୍ତି ।

ମହର୍ଷି ସୂତ କହୁଛନ୍ତି, " ହେ ମୁନିଗଣ ! ଭଗବାନଙ୍କର ଭକ୍ତବତ୍ସଳତାର ଏକ ପରମ ଶିକ୍ଷାପ୍ରଦ କାହାଣୀ ଏଥର ମୁଁ ଆପଣମାନଙ୍କୁ ଶୁଣାଉଛି । ମିଥିଳାଦେଶର ପ୍ରାୟ ଯେତେ ରାଜା ହୋଇଛନ୍ତି ସେ ସମସ୍ତେ ଜ୍ଞାନୀ । ଏଣୁ ସେମାନଙ୍କର ଜନକ ତଥା ବିଦେହ ସଂଜ୍ଞା ହୋଇଯାଇଛି । ଦ୍ୱାପରର ଶେଷ ସମୟରେ ଏହି ଦେଶର ରାଜା ହୋଇଥିଲେ ବହୁଳାଶ୍ୱ । ସେ ତାଙ୍କର ବଂଶଧରଙ୍କ ଭଳି ସତ୍ୟବାଦୀ, ନ୍ୟାୟପ୍ରିୟ ଧର୍ମାତ୍ମା ତଥା ଅଭିମାନ ଶୂନ୍ୟ ଥିଲେ । ସେ ତ ନିଶ୍ଚିତ ଜ୍ଞାନୀ ଥିଲେ । ତା ସହିତ ସେ ଥିଲେ ଭଗବାନଙ୍କର ପରମ ଭକ୍ତ । ଭଗବାନ ବାସୁଦେବଙ୍କ ପଦାରବିନ୍ଦରେ ତାଙ୍କର ଥିଲା ଦୃଢ଼ ଅନୁରାଗ । ସେ ଅହର୍ନିଶି ଭଗବାନଙ୍କର ଭକ୍ତିରେ ଲୀନ, ନିମଗ୍ନ ରହୁଥିଲେ ।

ସେହି ରାଜାଙ୍କ ରାଜ୍ୟରେ ସେତେବେଳେ ଶ୍ରୁତଦେବ ନାମରେ ଜଣେ ଶ୍ରେଷ୍ଠ ବ୍ରାହ୍ମଣ ରହୁଥିଲେ । ସେ ଜଣେ ମହାନ୍ ଭାବୁକ, ସରସ ହୃଦୟବାନ୍ ଓ ଭଗବାନଙ୍କର ଅନନ୍ୟ ଭକ୍ତ ଥିଲେ । ଯଦିଓ ସେ ଥିଲେ ଗୃହସ୍ଥାଶ୍ରମୀ, କୁଟୁମ୍ବୀ, ତେବେ ସୁଦ୍ଧା ଉଦର ପୋଷଣ ନିମନ୍ତେ ସେ କୌଣସି ଉଦ୍ୟୋଗ କରୁନଥିଲେ । ସେ ତାଙ୍କର ଯୋଗକ୍ଷେମର ଚିନ୍ତା ଭଗବାନ ବାସୁଦେବଙ୍କୁ ସମର୍ପଣ କରିଦେଇଥିଲେ । ଅଯାଚିତ ବୃତ୍ତିରୁ ବିନା ଉଦ୍ୟୋଗରେ ଯତ୍‌ସାମାନ୍ୟ

ମିଳୁଥିଲା ସେଥିରେ ସେ ନିଜର ନିର୍ବାହ କରିଦେଉଥିଲେ । କୌଣସି ପ୍ରକାର ଭୋଗର ସ୍ପୃହା ନଥିବାରୁ ସେ ସର୍ବଥା ଶାନ୍ତ, ଦାନ୍ତ, ପୂର୍ଣ୍ଣକାମ ତଥା ଆସକ୍ତି ଶୂନ୍ୟ ଥିଲେ । ଅନନ୍ୟ ଭାବରେ ସେ ଅଚ୍ୟୁତଙ୍କ ଆରାଧନାରେ ଲାଗିରହିଥିଲେ । ଭଗବାନଙ୍କର ବି ତାଙ୍କ ଉପରେ ଏପରି ଦୟା ଥିଲା ଯେ ତାଙ୍କ ଆବଶ୍ୟକ ନିର୍ବାହ କରିବା ପାଇଁ ତାଙ୍କୁ ଯେନ ତେନ ପ୍ରତିଦିନ କିଛି ମିଳିଯାଉଥିଲା । ଶରୀର ନିର୍ବାହ ପାଇଁ ଯେତିକି ନିହାତି ଦରକାର ସେତିକି ମାତ୍ର ଧନ ତାଙ୍କୁ ମିଳିଯାଉଥିଲା । ସାମାନ୍ୟ ଟିକିଏ ଅଧିକ କିନ୍ତୁ ମିଳୁନଥିଲା । ସେ ତ ସନ୍ତୁଷ୍ଟ ଥିଲେ, କାରଣ ତାଙ୍କର ପରମ ଧନ ଥିଲେ ଭଗବାନ ବାସୁଦେବ । **ସାଂସାରିକ ବିଷୟ ଯେତେ ପ୍ରଚୁର ମାତ୍ରାରେ ମିଳୁଥିଲେ ସୁଦ୍ଧା ସେଥିରେ କେବେ କାହାକୁ ଶାନ୍ତି ମିଳେ ନାହିଁ । ଅପର ପକ୍ଷରେ ଅଶାନ୍ତି ବଢ଼ିବାରେ ଲାଗେ ।** ସେହି ବ୍ରାହ୍ମଣଙ୍କୁ ଯାହା ବି ମିଳୁଥିଲା ତହିଁରେ ସେ ତାଙ୍କର ନିତ୍ୟ ନୈମିତ୍ତିକ କର୍ମ ସମ୍ପାଦନ କରୁଥିଲେ, ଦେବତା ପିତର ତଥା ଋଷିଙ୍କର ପୂଜା କରୁଥିଲେ ।

ରାଜା ଯେପରି ଭକ୍ତ ଏହି ବ୍ରାହ୍ମଣ ବି ଠିକ୍ ସେହିଭଳି ଭକ୍ତ ଥିଲେ । ଦୁହେଁ ଅନବରତ ଶ୍ରଦ୍ଧା ଭକ୍ତିର ସହିତ ଭଗବାନ ବାସୁଦେବଙ୍କ ଭକ୍ତିରେ ତଲ୍ଲୀନ ରହୁଥିଲେ । **ଭଗବାନ୍ ତ ତାଙ୍କ ଭକ୍ତଙ୍କୁ କୃପାପ୍ରଦାନ କରିବା ପାଇଁ ସଦା ତତ୍ପର ରହିଥାନ୍ତି । କୃପା କରିବା ହେଉଛି ଭଗବାନଙ୍କ ବ୍ୟସନ । ଯିଏ ତାଙ୍କ ଆଡ଼କୁ ପାଦେ ଆଗାଏ ଭଗବାନ ତା ଆଡ଼କୁ ଆଉ ଅନେଶ୍ୱତ ପାଦ ଦୌଡ଼ିଆସନ୍ତି । ଆଉ ତା ପାଖରେ ପହଞ୍ଚି ତାକୁ ହୃଦୟରେ ଗାଢ଼ ଆଲିଙ୍ଗନ କରି ଧରନ୍ତି ।** ସେ ଅନେକ ଦିନ ପର୍ଯ୍ୟନ୍ତ ଦର୍ଶନ ଦିଅନ୍ତି ନାହିଁ । ଫଳରେ ଦର୍ଶନ ନିମନ୍ତେ ଉତ୍କଣ୍ଠା ଅତ୍ୟଧିକ ବଢ଼ିଯାଏ । ଦର୍ଶନ ନିମନ୍ତେ ଭକ୍ତ ଯେତେବେଳେ ଅତି ବ୍ୟାକୁଳ ହୁଏ, ଦର୍ଶନବିନା ଆଉ କ୍ଷଣେ ବୋଲି ରହିପାରେ ନାହିଁ, ତାର ଏପରି ଉତ୍କଟ ଇଚ୍ଛା ଦେଖି ଭଗବାନ୍ ସ୍ୱୟଂ ତା ପାଖକୁ ଆସନ୍ତି । ଆଉ ତାକୁ ନିଜ ଦର୍ଶନରେ କୃତାର୍ଥ କରନ୍ତି ।

ମହାରାଜ ବହୁଳାଶ୍ୱ ଓ ଶ୍ରୁତଦେବ ବ୍ରାହ୍ମଣଙ୍କର ଯେତେବେଳେ ଭଗବାନଙ୍କ ଦର୍ଶନ ନିମନ୍ତେ ଇଚ୍ଛା ପ୍ରବଳ ହୋଇଗଲା, ଭଗବାନ୍ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ଦୁହିଁଙ୍କ ଉପରେ କୃପାସାଗର କୃଷ୍ଣଙ୍କର କୃପା ହେଲା । ସେ ଏହି ଦୁହିଁଙ୍କୁ ଦର୍ଶନ ଦେବାପାଇଁ ମିଥିଳାପୁରୀକୁ ଯିବାକୁ ବାହାରିଲେ । ସେ ତାଙ୍କର ସାରଥି ଦାରୁକ ନାମକ ସୂତକୁ କହିଲେ, '' ଦାରୁକ ! ଶୀଘ୍ର ପ୍ରସ୍ତୁତ କରି ରଥ ଆଣ । ମୁଁ ମିଥିଳାପୁରୀକୁ ଯିବି ।''

''ଯଥା ଆଜ୍ଞା'' କହି ଦାରୁକ ଅତି ବ୍ୟଗ୍ରରେ ଅଶ୍ୱଶାଳାକୁ ଗଲା । ସେ ଘୋଡ଼ାଙ୍କୁ ସଜାଇ ରଥରେ ଯୋଚି ତତ୍‌କ୍ଷଣାତ୍ ଭଗବାନଙ୍କ ପାଖରେ ଉପସ୍ଥିତ ହୋଇଗଲା । ସୂତ ରଥ ସଜାଡ଼ି ଆସିଥିବା ଦେଖି ଭଗବାନ୍ ତାକୁ ପରିକ୍ରମା କରି ସୁଖପୂର୍ବକ ଚଢ଼ି ବସିଗଲେ । ଠିକ୍ ଏହି

ସମୟରେ ଭଗବାନ୍ ଦେଖିଲେ, ମହାନ୍ ଜଟାଧାରୀ, ଲଟାଧାରୀ, ବ୍ରତଧାରୀ, ବ୍ରହ୍ମଚାରୀ, ଅପ୍ରମିତ ଯଶସ୍ୱୀ, ତେଜସ୍ୱୀ ତପସ୍ୱୀ ତାଙ୍କ ଆଡ଼କୁ ଆସୁଛନ୍ତି । ସେମାନଙ୍କ ଭିତରେ ନାରଦ, ବାମଦେବ, ଅତ୍ରି, ଭଗବାନ ବେଦବ୍ୟାସ, ପରଶୁରାମ, ଅରୁଣି, ମୋ ଗୁରୁଦେବ ଶୁକଦେବ, ବୃହସ୍ପତି, କଣ୍ୱ, ମୈତ୍ରେୟ ତଥା ଚ୍ୟବନ ଆଦି ଅନେକ ପ୍ରମୁଖ ମୁନି ଥିଲେ । ସେହି ମହାନ୍ ମୁନିମାନେ ଆସୁଥିବା ଦେଖି ଭଗବାନ୍ ମଧୁସୂଦନ ସହସା ରଥରୁ ଓହ୍ଲାଇ ପଡ଼ିଲେ । ସେ ସମସ୍ତଙ୍କୁ ଅଭିନନ୍ଦନ କଲେ । ଦୁଇ ପକ୍ଷରୁ କୁଶଳ ବାର୍ତ୍ତାର ଆଦାନ-ପ୍ରଦାନ ହେଲା । ଏଥର ମୁନିମାନେ ପଚାରିଲେ-" ପ୍ରଭୁ ! କେଉଁଆଡେ ଯାଉଥିଲେ ।"

ଭଗବାନ ସଙ୍କୋଚର ସହିତ କହିଲେ, " କେଉଁଆଡ଼େ ନୁହେଁତ ! ହେ ମୁନିଗଣ ! ଟିକିଏ ମିଥିଳାପୁରୀ ଆଡ଼େ ବୁଲି ବାହାରିଥିଲି । ଆପଣମାନେ ଆସିଛନ୍ତି, ଏଥର ଆପଣଙ୍କ ସଭାରେ ଯୋଗଦାନ କରି ସ୍ୱାଗତ ସତ୍କାର କରିବି ।"

ମୁନିମାନେ କହିଲେ, " ନା ଭଗବାନ ! ଆମେ ସ୍ୱାଗତ ସତ୍କାର ନିମିତ୍ତ ଆସିନାହୁଁ । କୃପାକରି ଆପଣ ଆମକୁ ଦର୍ଶନ ଦେଇଛନ୍ତି, ଆମର ହିତକଥା ପଚାରିଛନ୍ତି, ଏହାହିଁ ସବୁଠାରୁ ଶ୍ରେଷ୍ଠ ସ୍ୱାଗତ ସତ୍କାର । ଆଜି ଆପଣ ଆପଣଙ୍କର ଦୁଇ ଜଣ ଭକ୍ତଙ୍କୁ କୃତାର୍ଥ କରିବା ପାଇଁ ମିଥିଳାପୁରୀ ଯିବେ, ଏହି କଥା ଆମେ ସମାଧି ଦ୍ୱାରା ଜାଣି ଆପଣଙ୍କ ପାଖକୁ ଆସିଛୁ । **ଭକ୍ତ ଓ ଭଗବାନ ଦୁହିଁଙ୍କର ପ୍ରେମ ଯେତେବେଳେ ପୂର୍ଣ୍ଣ ହୃଦୟରେ ଉଭୟ ଉଭୟଙ୍କ ସହିତ ମିଳିତ ହୋଇଯାଏ ସେତେବେଳେ ଏକ ଅପୂର୍ବ ଆନନ୍ଦ ସୃଷ୍ଟି ହୁଏ, ଏକ ଅବର୍ଣ୍ଣନୀୟ ସୁଖ ହୁଏ** - ଏହାର ଅନୁଭୂତି ନିମନ୍ତେ ଆମେ ଆସିଛୁ । ତେଣୁ ଆମେ ବି ଆପଣଙ୍କ ସାଙ୍ଗେ ସାଙ୍ଗେ ମିଥିଳାପୁରୀକୁ ଯିବୁ । ସେଠାକୁ ଯାଇ ଆପଣ କିପରି ଆପଣଙ୍କ ଭକ୍ତଙ୍କୁ ଦର୍ଶନ ଦେଉଛନ୍ତି ତାହା ଦେଖିବୁ ।"

ମୁନିମାନଙ୍କର ଏପରି କଥା ଶୁଣି ଭଗବାନ ହସି ହସି କହିଲେ, " ହେ ମୁନିଗଣ ! ମିଥିଳାପୁରୀକୁ ଯିବାପାଇଁ ଯଦି ଆପଣମାନେ ସମସ୍ତେ ଇଚ୍ଛା କରୁଛନ୍ତି ତେବେ ନିଶ୍ଚୟ ଚାଲନ୍ତୁ । ଏହା ମୋର ପରମ ସୌଭାଗ୍ୟ ।" ଏ କଥା ଶୁଣି ମୁନିମାନେ ଆକାଶ ମାର୍ଗରେ ଯୋଗଦ୍ୱାରା ଉଡ଼ି ଉଡ଼ି ଭଗବାନଙ୍କ ରଥ ସହିତ ଚାଲିଲେ । ସେତେବେଳେ ଭଗବାନ୍ ରଥରେ ବସି ଏପରି ଦୃଶ୍ୟ ହେଉଥିଲେ ସତେ ଯେପରି ସୂର୍ଯ୍ୟଦେବ ତାଙ୍କର ବିଶାଳ ରଥରେ ବସି, ଶୁକ୍ର, ବୃହସ୍ପତି, ଆଦି ଗ୍ରହଗଣଙ୍କ ସହିତ ଯାଉଛନ୍ତି । ଯେଉଁ ଯେଉଁ ରାଜ୍ୟଦେଇ ଯାଉଥାନ୍ତି ସେହି ସେହି ରାଜ୍ୟର ପ୍ରଜାମାନ ଆଗକୁ ଆସି ସ୍ୱାଗତ ସତ୍କାର କରୁଥାନ୍ତି; ଅର୍ଘ୍ୟ ଦେଇ ପୁଷ୍ପମାଲ୍ୟ ପିନ୍ଧାଇ ତାଙ୍କ ପ୍ରତି ସେମାନଙ୍କର ଭକ୍ତି ପ୍ରଦର୍ଶନ କରୁଥାନ୍ତି । ଭଗବାନ୍ ଆନର୍ତ୍ତ, ଧନ୍ୱ, କୁରୁ, ଜାଙ୍ଗଲ, କଙ୍କ, ମତ୍ସ୍ୟ, ପାଞ୍ଚାଳ, କୁନ୍ତି, ମଧୁ, କୋଶଳ, ଅର୍ଣ୍ଣ ତଥା ଅନ୍ୟାନ୍ୟ

ଅନେକ ରାଜ୍ୟ ଦେଇ ଗଲେ । ସେ ଯେଉଁ ରାଜ୍ୟଦେଇ ଯାଉଥାନ୍ତି ସେହି ରାଜ୍ୟରେ କୋଳାହଳ ହୋଇଯାଉଥାଏ । ଅନେକ ଦିନ ଧରି ଭଗବାନଙ୍କର ଯଶ ଶୁଣି ଶୁଣି ଲୋକମାନେ ତାଙ୍କ ଦର୍ଶନ ନିମନ୍ତେ ଅତି ଉତ୍କଣ୍ଠିତ ଥିଲେ । ତେଣୁ ଦୂର ଦୂରାନ୍ତରରୁ ଅନେକ ନରନାରୀ ଆସି ପଥ ଦୁଇପାର୍ଶ୍ୱରେ ଧାଡ଼ିବାନ୍ଧି ଠିଆହୋଇଯାଉଥାନ୍ତି । ଆଉ ନିଜ ନିଜର ନୟନରୂପୀ ପାନପାତ୍ରରେ ଭଗବାନଙ୍କର ଉଦାର ହାସ୍ୟ, ଆଉ ମନୋହର ମୁଖାରବିନ୍ଦ ମକରନ୍ଦକୁ ଅପଲକ ଭାବରେ ପାନ କରିବାରେ ଲାଗିଥାନ୍ତି । ଭଗବାନଙ୍କର ଦେବଦୁର୍ଲଭ ଦର୍ଶନ ଦିବ୍ୟ ଅଂଜନ ଭଳି, ଯାହା ଆଖିର କଜ୍ୱଳ ରୂପରେ ତିମିରରୂପୀ ଅଜ୍ଞାନକୁ ଦୂରକରି ଦିବ୍ୟାଲୋକ ପ୍ରଦାନ କରୁଥାଏ, ସେହି ଅପୂର୍ବ ଦର୍ଶନ ରୂପୀ କଜ୍ୱଳ ଲଗାଇବା ଦ୍ୱାରା ଯେଉଁ ସବୁ ଦେଶବାସୀଙ୍କର ଅଜ୍ଞାନ ଦୃଷ୍ଟି ନଷ୍ଟ ହୋଇଯାଇଥାଏ, ସେହି ନରନାରୀଙ୍କ ଉପରେ କୃପା ଦୃଷ୍ଟି ବୃଷ୍ଟି କରି କରି ମନ୍ଦ ମନ୍ଦ ହାସ୍ୟ ପ୍ରକାଶ କରି ମାଧବ ଯାଉଥିଲେ । ମାର୍ଗରେ ଠିଆ ହୋଇଥିବା ନରନାରୀମାନେ ଜଗତବନ୍ଧ୍ୟ ଭଗବାନଙ୍କର ଯଶରାଶିକୁ ସୁମଧୁର ସ୍ୱରରେ ଯଶୋଗାନ କରୁଥିଲେ । ଭକ୍ତଙ୍କ ଦ୍ୱାରା ବୋଲା ଯାଉଥିବା ସେହି ସୁଯଶ ଦଶଦିଗରେ ବିସ୍ତାର କରି ତାକୁ ପବିତ୍ର କରିଦେଉଥିଲା । ଭଗବାନ ତାଙ୍କର ଆଶ୍ରିତଙ୍କୁ ନିଜର ଅନୁପମ ଅନୁକମ୍ପା ଦ୍ୱାରା ଅଭୟ ପ୍ରଦାନ କରି କରି ଯାଉଥିଲେ । ଏହିଭଳି ଧୀରେ ଧୀରେ, ମାର୍ଗରେ ବିଶ୍ରାମ କରି କରି ଭଗବାନ ବିଦେହ ନଗରରେ ପହଞ୍ଚିଗଲେ ।

ରାଜା ଶ୍ରୁତଦେବ ଭଗବାନଙ୍କର ଆଗମନ ଖବର ପାଇ ଅନେକ ଆଗରୁ ତାଙ୍କର ସ୍ୱାଗତ ସତ୍କାର ନିମନ୍ତେ ପ୍ରସ୍ତୁତ ହେଉଥିଲେ । ଭଗବାନ ଋଷିମୁନିଙ୍କ ସହିତ ନଗର ନିକଟରେ ପହଞ୍ଚି ଗଲେଣି ବୋଲି ଦୂତଙ୍କ ଠାରୁ ଯେମିତି ଶୁଣିଲେ, ସେ ନିଜର ମନ୍ତ୍ରୀ ପରିଷଦ, ଘରଲୋକ ଓ ପୁରୋହିତଙ୍କୁ ସାଙ୍ଗରେ ଧରି ନଗର ବାହାରକୁ ଗଲେ । ରାଜାଙ୍କର ସେବକ ସକଳ ପ୍ରକାର ପୂଜା ସାମଗ୍ରୀ ନେଇଥିଲେ । ପୁରବାସୀଙ୍କ ଭିତରୁ ଏପରି ଜଣେ କେହି ନଥିଲେ ଯାହାଙ୍କ ହାତରେ କିଛି ନଥିଲା । ବସ୍ତୁତଃ କେହି ରିକ୍ତ ହସ୍ତରେ ଯାଇ ନଥିଲେ । କାହା ହାତରେ ଫଳ ଥିଲା ତ ଆଉ କାହା ହାତରେ ଫୁଲ । ଯାହାର ଯେପରି ସାମର୍ଥ୍ୟ ଥିଲା ସେ ସେହି ଭଳି ପୂଜା ସମଗ୍ରୀ ନେଇଥିଲେ । 'ଭଗବାନଙ୍କର ଦର୍ଶନ ହେବ' ଏହି କଥାକୁ ମନରେ ରଖି ସମସ୍ତେ ଅତ୍ୟନ୍ତ ପ୍ରସନ୍ନ ଥିଲେ । ଭିଡ଼ ଖୁବ୍ ହୋଇଥିଲା । ଏହି ଭିଡ଼ରେ ନିର୍ଧନ, ଦୀନ, ହୀନ, ଶ୍ରୁତଦେବ ବି ଗୋଟିଏ କୋଣରେ ଲୁଚି ବସିଥିଲେ । ସମସ୍ତେ ଦେଖୁ ଥାଆନ୍ତି, ମୁନିଋଷିଙ୍କ ଗହଣରେ ଭଗବାନ ବାସୁଦେବ ବିରାଟ ଗରୁଡ ଧ୍ୱଜ ରଥରେ ବସି ଆସୁଛନ୍ତି । ସମସ୍ତେ ପ୍ରସନ୍ନତାର ସହିତ ଉଚ୍ଚ ସ୍ୱରରେ ଜୟ ଜୟକାର କରିବାରେ ଲାଗିଲେ । ଭଗବାନଙ୍କ ସହିତ ନାରଦ, ବ୍ୟାସ, ଶୁକଦେବ ଆଦି ମହାନ୍ ମୁନିମାନେ ଆସୁଥିବା ସମସ୍ତେ ଜାଣିଥିଲେ ।

ଏମାନଙ୍କୁ ଭଗବାନଙ୍କ ପାଖରେ ଦେଖି ଲୋକମାନେ ଶ୍ରଦ୍ଧା-ଭକ୍ତିର ସହିତ ଦୁଇ ହାତ ଯୋଡ଼ି ମୁଣ୍ଡିଆମାରି ପ୍ରଣାମ କରିବାରେ ଲାଗିଲେ । ସମସ୍ତେ ଅତି ପ୍ରସନ୍ନ ଥାଆନ୍ତି । ସେତେବେଳେ ମହାରାଜ ବହୁଳାଶ୍ୱ ମନେ ମନେ ଭାବିଲେ-ଭଗବାନ ବାସୁଦେବ ମୋ ଉପରେ ହିଁ କୃପାକରିବାକୁ ଯାଇ ମିଥିଳାପୁରୀକୁ ଆଗମନ କରିଛନ୍ତି । ଏଣେ ଶ୍ରୁତଦେବ ବି ସେହି କଥା ଭାବୁଥାଆନ୍ତି ଯେ ବିଦେହ ନଗରରେ ଏକମାତ୍ର ମୋତେ ହିଁ କୃତାର୍ଥ କରିବା ପାଇଁ କୃପାଳୁ କୃଷ୍ଣ ଆସିଛନ୍ତି ।

ଭଗବାନଙ୍କୁ ଦେଖିବା କ୍ଷଣି ମହାରାଜ ବହୁଳାଶ୍ୱ ଏକ ଯଷ୍ଟିଦଣ୍ଡ ତୁଲ୍ୟ ଲମ୍ବ ହୋଇ ତଳେ ସାଷ୍ଟାଙ୍ଗ ପ୍ରଣାମ କରି ଲୋଟିପଡ଼ିଲେ । ସେହି ପାଖରେ ବିପ୍ରଶ୍ରେଷ୍ଠ ଶ୍ରୁତଦେବ ସାଷ୍ଟାଙ୍ଗ ପ୍ରଣାମ କରୁଥିଲେ ଅତି ଶ୍ରଦ୍ଧା-ଭକ୍ତିର ସହିତ । ପ୍ରଣାମ କରିବା ପରେ ପରେ ଶ୍ରୁତଦେବ ବ୍ରାହ୍ମଣ ଭଗବାନଙ୍କୁ ନିଜ ଘରକୁ ଆସିବାପାଇଁ ଡାକିବା ସମୟରେ, ମହାରାଜ ବହୁଳାଶ୍ୱ ମଧ୍ୟ ନିମନ୍ତ୍ରଣ କରୁଥିଲେ ରାଜନବର ଭିତରକୁ ଯିବା ପାଇଁ । ଦୁହେଁ ବସ୍ତୁତଃ ଏକ ସମୟରେ ହିଁ ନିମନ୍ତ୍ରଣ କରିଥିଲେ । ଏଥର ଭଗବାନ ବଡ଼ ଅଖାଡୁଆ ପରିସ୍ଥିତିରେ ପଡ଼ିଗଲେ । ଯଦି ବ୍ରାହ୍ମଣ ଘରକୁ ପ୍ରଥମେ ଯିବେ ନାହିଁ ତେବେ ବ୍ରାହ୍ମଣ ଭାବିବେ-'ମୋତେ ଦୀନ, ହୀନ, ନିର୍ଦ୍ଧନ ଜାଣି ଭଗବାନ ପ୍ରତ୍ୟାଖ୍ୟାନ, ଅବହେଳା କଲେ ।' ରାଜାର ଘରକୁ ଯଦି ପ୍ରଥମେ ନଯାଏ ତେବେ ରାଜା ଭାବିବେ, ମୋତେ ଭଗବାନ ଅପମାନ କଲେ । ଦୁହେଁ ଭଗବାନଙ୍କର ଅନନ୍ୟ ଭକ୍ତ । ଏବେ କରିବେ କ'ଣ ? ଭଗବାନ ଚିନ୍ତା କରି ଦୁହିଁଙ୍କ ନିମନ୍ତ୍ରଣ ଏକା ସହିତ ଗ୍ରହଣ କଲେ । ଦୁହିଁଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ ଦୁଇଟି ରୂପ ଗ୍ରହଣ କରିନେଲେ । ସମସ୍ତ ମୁନିଋଷିଙ୍କୁ ବି ଦୁଇ ଦୁଇ କରିଦେଲେ । ଗୋଟିଏ ରୂପରେ ଭଗବାନ ସମସ୍ତ ମୁନିଋଷିଙ୍କ ସହିତ ବ୍ରାହ୍ମଣ ଘରକୁ ଗଲେ, ଆଉ ଗୋଟିଏ ରୂପରେ ସେମାନଙ୍କୁ ସାଙ୍ଗରେ ଧରି ରାଜାଙ୍କ ଘରକୁ ଗଲେ ।'

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ମୁଁ ଏବେ ପ୍ରଥମେ ମହାରାଜ ବହୁଳାଶ୍ୱଙ୍କ ଆତିଥ୍ୟ ବର୍ଣ୍ଣନା କରୁଛି । ଏହାପରେ ଦ୍ୱିଜଶ୍ରେଷ୍ଠ ଶ୍ରୁତଦେବଙ୍କ ଆତିଥ୍ୟ ବର୍ଣ୍ଣନା କରିବି । ମହାରାଜ ବହୁଳାଶ୍ୱ ଭାବୁଥିଲେ, 'ମୋ ଠାରେ ଭକ୍ତି ନାହିଁ, ଅନୁରକ୍ତି ନାହିଁ । ବିପ୍ରଶ୍ରେଷ୍ଠ ଶ୍ରୁତଦେବ ପ୍ରକୃତରେ ଜଣେ ଭକ୍ତ । ଶ୍ରୁତଦେବ ମୋ ଅପେକ୍ଷା ଶ୍ରେଷ୍ଠ, ସେ ସର୍ବସଦ୍‌ଗୁଣ ସମ୍ପନ୍ନ । ତାଙ୍କ ନିମନ୍ତ୍ରଣ ରକ୍ଷାକରି ଭଗବାନ ନିଶ୍ଚୟ ତାଙ୍କ ଘରକୁ ଯିବେ । କାରଣ ମାଧବ ହେଉଛନ୍ତି ଭକ୍ତପ୍ରିୟ । ସେ ଯେଉଁଠାରେ ଭକ୍ତି ଦେଖନ୍ତି ସେହିଠାକୁ ଯାଆନ୍ତି ।' କିନ୍ତୁ ସେ ଯେତେବେଳେ ଦେଖିଲେ ଯେ ଭଗବାନ ବ୍ରାହ୍ମଣ ଶ୍ରୁତଦେବଙ୍କ ଘରକୁ ନଯାଇ ସମସ୍ତ ମୁନିଋଷିଙ୍କ ସହିତ ତାଙ୍କ ଘରକୁ ଆସୁଛନ୍ତି ସେତେବେଳେ ତାଙ୍କର ଆନନ୍ଦର ସୀମା ରହିଲା

ନାହିଁ । ଭଗବାନଙ୍କର ଭକ୍ତବତ୍ସଳତା ଆଉ କୃପାଳୁତାକୁ ମନେପକାଇ ତାଙ୍କ ହୃଦୟ ଉଲ୍ଲସିତ ହୋଇ ଉଠିଲା । ସେତେବେଳେ ମହାମନସ୍ୱୀ ମହାରାଜଙ୍କ ନେତ୍ରଯୁଗଳରୁ ପ୍ରେମାଶ୍ରୁ ନିର୍ଗତ ହେବାରେ ଲାଗିଲା । ସେ ଭାବିବାରେ ଲାଗିଥିଲେ 'ଯେଉଁ ପରମାତ୍ମା ପରଂବ୍ରହ୍ମ ପରମେଶ୍ୱରଙ୍କ ଦର୍ଶନ ତ ଦୂରର କଥା, ଯାହାଙ୍କ ନାମ ସ୍ମରଣ କରିବା କଠିନ, ସେ ସ୍ୱୟଂ ଆଜି ମୋ ଘରକୁ ତାଙ୍କ ଚରଣ ରଜରେ ପବିତ୍ର କରୁଛନ୍ତି । ଆଜି ମୁଁ ଧନ୍ୟ ହୋଇଗଲି, କୃତାର୍ଥ ହୋଇଗଲି । ମଣିଷ ଜନ୍ମର ସର୍ବଶ୍ରେଷ୍ଠ ଫଳ ଆଜି ମୁଁ ପାଇଗଲି ।' ଏହି ଭଳି କଥା ଭାବି ଭାବି ମହାରାଜ ଜନକ ମୁନିରଷିମାନଙ୍କ ଗହଣରେ ଭଗବାନଙ୍କୁ ନିଜ ଘରକୁ ନେଇଗଲେ । ଘରେ ପହଞ୍ଚିବା ପରେ ମହାରାଜ ଭଗବାନଙ୍କୁ ଆଉ ଋଷିମାନଙ୍କୁ ଯଥାଯୋଗ୍ୟ ଆସନରେ ବସାଇଦେଲେ । ଏହାପରେ କୁଟୁମ୍ବ ସହିତ ଆସି ସମସ୍ତଙ୍କୁ ପ୍ରଣାମ କଲେ । ସୁବର୍ଣ୍ଣ ପାତ୍ରରେ ମୁନିମାନଙ୍କର ଏବଂ ଭଗବାନଙ୍କର ଲୋକବନ୍ଦିତ ଚରଣ ଧୋଇଦେଲେ । ଆଉ ଏହି ପରମ ପୁଣ୍ୟମୟୀ ପାଦୋଦକକୁ ସମସ୍ତେ ପାନ କଲେ । ମସ୍ତକ ଉପରେ ସିଞ୍ଚନ କଲେ । ଏହାପରେ ସମସ୍ତଙ୍କୁ ଗନ୍ଧ, ପୁଷ୍ପ, ମାଲ୍ୟ, ଧୂପ, ଦୀପ, ବସ୍ତ୍ର, ଅଳଙ୍କାର, ଅର୍ଘ୍ୟ, ଗୋ ତଥା ବୃଷଭ ଆଦି ଅର୍ପଣ କରି ବିଧିବତ୍ ପୂଜା କଲେ । ପୂଜା ପରେ ନାନାପ୍ରକାର ଷଡରସଯୁକ୍ତ ବ୍ୟଂଜନରେ ସମସ୍ତଙ୍କୁ ତୃପ୍ତ କଲେ । ଏହାପରେ, ଆନନ୍ଦରେ, ବସିବା ପରେ ଭଗବାନଙ୍କର ପରମ ମୃଦୁଳ ତଥା ଜଗତକୁ ପବିତ୍ର କରୁଥିବା ପାଦଯୁଗଳକୁ ନିଜର କୋଳରେ ଧାରଣ କରି ତଥା ଧୀରେ ଧୀରେ ଚାପି ଚାପି ମହାରାଜ ବହୁଳାଶ୍ୱ କହିଲେ, ' ହେ ଅଶରଣ ଶରଣ ! ହେ ଭକ୍ତବତ୍ସଳ ! ହେ ଶରଣାଗତ ପ୍ରତିପାଳକ ! ହେ ବିଭୋ ! ଆପଣ ସକଳ ପ୍ରାଣୀଙ୍କର ଆତ୍ମା ଓ ସାକ୍ଷୀ । ଆପଣଙ୍କର ଅନ୍ୟ କାହାର ପ୍ରକାଶ, ତେଜ କି ଆଲୋକର ଆବଶ୍ୟକ ନାହିଁ । ଆପଣ ସ୍ୱୟଂ ପ୍ରକାଶ ସ୍ୱରୂପ । ଆପଣଙ୍କର ପ୍ରକାଶରେ ଏହି ସମସ୍ତ ଦୃଶ୍ୟ ପ୍ରପଞ୍ଚ ପ୍ରକାଶିତ । ସଂସାରରେ ଯେତେସବୁ ଚେଷ୍ଟା ଅଛି ସମସ୍ତ ଆପଣଙ୍କ ପ୍ରେରଣାରେ ହିଁ ପ୍ରେରିତ । ଆପଣ ନିତ୍ୟତୃପ୍ତ, ଆପଣଙ୍କର କୌଣସି ବସ୍ତୁ ନିମନ୍ତେ ଅପେକ୍ଷା ନଥାଏ । ତେବେ ବି ଆପଣ ହେଉଛନ୍ତି ଶରଣଗତ ରକ୍ଷକ, ଦୀନଦୟାଳୁ । ଆଉ ଏଇଥିପାଇଁ ଆମଭଳି ଦୀନଙ୍କୁ ଆଜି ଆପଣ ଆପଣଙ୍କର ଦେବଦୁର୍ଲଭ ଦର୍ଶନ ପ୍ରଦାନ କରିଛନ୍ତି । ପ୍ରଭୁ ! ଆପଣଙ୍କର ଶରଣାଗତ ବତ୍ସଳତା ସମ୍ବନ୍ଧରେ ଆମେ ଆଉ ଅଧିକ କ'ଣ କହିପାରିବୁ ?'

ଶ୍ରୀଭଗବାନ କହିଲେ, '' ରାଜନ୍ ! ତୁମେ ମୋର ଅନନ୍ୟ ଭକ୍ତ । ତୁମର ଚିତ୍ତ ସବୁବେଳେ ମୋ ଠାରେ ଥାଏ । ଭକ୍ତ ତ ମୋର ଯେତେ ପ୍ରିୟ ମୋ ବଡ଼ଭାଇ ବଳରାମ ବି ସେତେ ପ୍ରିୟ ନୁହନ୍ତି । ମୋ ପାଦ ସେବା ପ୍ରତିକ୍ଷଣରେ କରୁଥିବା ଲକ୍ଷ୍ମୀ ବି ମୋର ସେତେ ପ୍ରିୟ ହୋଇନଥାନ୍ତି । ମୋର ପୁଅ ବ୍ରହ୍ମା ବି ମୋର ସେତେ ପ୍ରିୟ ହୋଇପାରିନାହାନ୍ତି । ଅନନ୍ୟ ଭଗବଦ୍ ଭକ୍ତ ମୋର ଅତି ପ୍ରିୟ । ଏଣୁ ହେ ରାଜନ୍ ! ମୁଁ ତୁମକୁ ଦେଖିବାକୁ ହିଁ ଆସିଛି ।''

ଭଗବାନଙ୍କର ମୁହଁରୁ ଏପରି କଥା ଶୁଣି ମହାରାଜଙ୍କ ଆଖିରୁ ପ୍ରେମାଶ୍ରୁ ବହିବାରେ ଲାଗିଲା । ସେ ଗଦ୍‌ଗଦ୍ କଣ୍ଠରେ କହିଲେ, ''ହଁ ପ୍ରଭୁ ! ସେଇଥିପାଇଁ ଆପଣଙ୍କୁ ସମସ୍ତେ ଦୀନାନାଥ ଦୀନବନ୍ଧୁ କୁହନ୍ତି । ଆପଣ ଆପଣଙ୍କ ନାମକୁ ସାର୍ଥକ କରିବା ପାଇଁ, ସତ୍ୟରେ ରୂପାନ୍ତରିତ କରିବା ପାଇଁ ତ ଆମ ଦୁହିଁଙ୍କୁ ଦର୍ଶନ ଦେବା ପାଇଁ ଆସିଛନ୍ତି । ଆପଣଙ୍କ ଦୟାଳୁତାକୁ ଯେଉଁମାନେ ଅନୁଭବ କରି ସାରିଛନ୍ତି ସେମାନେତ କଦାପି ଆପଣଙ୍କ ପାଦ ପଦ୍ମକୁ ଭୁଲି ପାରନ୍ତି ନାହିଁ । ହେ ଆପ୍ତକାମ ! ଆପଣଙ୍କ ନିମନ୍ତେ କୌଣସି ବସ୍ତୁ ଅଦେୟ ନୁହେଁ । ଯେଉଁମାନେ ସେମାନଙ୍କର ସର୍ବସ୍ୱ ଆପଣଙ୍କ ଚରଣାରବିନ୍ଦରେ ସମର୍ପଣ କରିଦେଇଛନ୍ତି ସେପରି ଅନନ୍ୟ ଉପାସକ, ନିଷ୍କିଞ୍ଚନ, ଶାନ୍ତ, ଦାନ୍ତ, ଭଗବଦ୍ ଭକ୍ତଙ୍କୁ ଆପଣ ସବୁକିଛି ଦେଇଦେବାପାଇଁ ଆଦୌ ସଂକୋଚ କରନ୍ତି ନାହିଁ । ଏପରିକି ଆପଣ ଆପଣଙ୍କର ସ୍ୱରୂପ ମଧ୍ୟ ପ୍ରଦାନ କରିଦିଅନ୍ତି ।

ଭଗବାନ କହିଲେ, '' ରାଜନ୍ ! ପୃଥ୍ୱୀ ସହିତ ସମସ୍ତ ଦେବତାଙ୍କର ପ୍ରାର୍ଥନାରେ ଭୂ-ଭାର ଲାଘବ କରିବା ପାଇଁ ମୁଁ ଯଦୁକୁଳରେ ଅବତାର ଗ୍ରହଣ କରିଛି ।''

ମହାରାଜ ବହୁଳାଶ୍ୱ କହିଲେ, '' ପ୍ରଭୁ ! ଭୂ-ଭାର ଲାଘବ କରିବା ଆପଣଙ୍କ ଅବତାରର ଅତି ଗୌଣ କାରଣ; ପୃଥ୍ୱୀର ଭାର ଆପଣଙ୍କ ସଂକଳ୍ପ ମାତ୍ରରେ ଲାଘବ ହୋଇ ପାରେ । ଆପଣ ଏହି ଜନ୍ମ-ମରଣ ରୂପୀ ଚକ୍କୀର ଦୁଇଫାଳରେ ପେଷି ହେଉଥିବା ପ୍ରାଣୀଙ୍କ ଉପରେ ଅନୁଗ୍ରହ କରିବା ନିମିତ୍ତ, ଶାନ୍ତିରୂପୀ ପୟ ବିନା ପିପାସିତ ପ୍ରାଣୀଙ୍କୁ ଶାନ୍ତି ରୂପୀ ସୁଧା ପାନ କରାଇବା ପାଇଁ, ତଥା ତ୍ରିଲୋକର ପାପରାଶିକୁ ନଷ୍ଟ କରିପାରୁଥିବା ଆପଣଙ୍କ ସୁଯଶକୁ ବିସ୍ତାର କରିବା ପାଇଁ ଏହି ଧରାଧାମରେ ଅବତରଣ କରିଛନ୍ତି । ଆପଣଙ୍କର ଯେଉଁ ଅଲୌକିକ, ପରମ ସୁଖଦ, ଶ୍ରୁତିମଧୁର ଚରିତ କରନ୍ତି, ତାହାକୁ ବ୍ୟାସ ବାଲ୍ମୀକି ଆଦି କବିଗଣ ନିଜ ନିଜର ଲଳିତ ଭାଷାରେ ବର୍ଣ୍ଣନା କରିବେ । ଆପଣଙ୍କର ସେହି ଜଗତ ପବିତ୍ରକାରିଣୀ ଯଶକୁ ପ୍ରାଣୀମାନେ ଶ୍ରବଣ କରି କୃତାର୍ଥ ହୋଇ ରହିବେ । ସମସ୍ତଙ୍କର ଅନ୍ତଃକରଣ ବିଶୁଦ୍ଧ ହୋଇଯାଏ । ହେ ଭୂମନ ! ଆପଣ ପୁଣ୍ୟଶ୍ଳୋକ, ଅକୁଣ୍ଠବୁଦ୍ଧି, ନର-ନାରାୟଣଙ୍କ ରୂପ ଧାରଣ କରି ଆପଣ ଅନବରତ ବଦରୀଧାମରେ ଶାନ୍ତି ତପ କରୁଥାଆନ୍ତି । ଏପରି ଶାନ୍ତ ସ୍ୱରୂପ ଆପଣ ଶ୍ରୀମନ୍ନାରାୟଣଙ୍କ ପାଦପଦ୍ମରେ ମୁଁ ବାରମ୍ବାର ପ୍ରଣାମ କରୁଛି ।

''ହେ କୃପାସିନ୍ଧୁ ! ଏହି ଦୀନ, ହୀନ, ମଳିନମତୀ ଅଧମର ପ୍ରାର୍ଥନା ଏହା ଯେ ଆପଣ କିଛି କାଳ ପର୍ଯ୍ୟନ୍ତ ଏହି ତେଜସ୍ୱୀ, ତପସ୍ୱୀ ମୁନିଋଷିଙ୍କ ସହିତ ଦାସର ଆତିଥ୍ୟ ସ୍ୱୀକାର କରିବା ହୁଅନ୍ତୁ । ଆଉ ଆପଣଙ୍କ ପାଦପଦ୍ମର ପବିତ୍ର ରେଣୁରେ ନିମିବଂଶକୁ ପାବନ କରନ୍ତୁ ।''

ମହର୍ଷି ସୂତ କହିଲେ, '' ହେ ମୁନିଗଣ ! ଏହିଭଳି ମହାରାଜ ବହୁଳାଶ୍ୱଙ୍କର ବିନୀତ ପ୍ରାର୍ଥନା ଶୁଣି ଲୋକପାଳକ ଭଗବାନ୍ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ମହାରାଜଙ୍କୁ ଏବଂ ମିଥିଳାପୁରୀର ନରନାରୀଙ୍କୁ ଆନନ୍ଦ ପ୍ରଦାନ କରି କରି କିଛି ଦିନ ରାଜାଙ୍କ ଆତିଥ୍ୟ ଗ୍ରହଣ କରି ରହିଲେ । ଏଥର, ଦ୍ୱିତୀୟ ରୂପରେ ଯେଉଁଭଳି ଭଗବାନ୍ ଶ୍ରୁତଦେବ ବ୍ରାହ୍ମଣଙ୍କର ଆତିଥ୍ୟ ଗ୍ରହଣ କରିଥିଲେ, ସେହି ସରସ ସୁନ୍ଦର କଥାକୁ ମୁଁ କହୁଛି ଆପଣମାନେ ଶ୍ରଦ୍ଧାପୂର୍ବକ ତାହା ଶ୍ରବଣ କରନ୍ତୁ ।''

### ଛପ୍ପୟ

*ଦୋଉନିନେ ଇକ ସଂଗ ନିମନ୍ତ୍ରିତ ଶ୍ରୀହରି କୀନ୍ହେ ।*
*ଦୋଉନି କରନ କୃତାର୍ଥ ରୂପ ଦ୍ୱୈ ହରି ଧରି ଲୀନ୍ହେ ।।*
*ଏକ ରୂପ ତେଂ ଗୟେ ରଷିନି ସଙ୍ଗ ନୃପ ମହଲନିମହଁ ।*
*ଅପର ରୂପ ଧରି ଗୟେ ଦ୍ୱିଜନି ଲୈ ବିପ୍ର ଭବନମହଁ ।।*
*ଭୂପତି ହରି ପଦ ଗୋଦ ଧରି, ସୁହରାବେଂ ପୁନି ପୁନି କହେଂ ।*
*କରେଂ କୃପା କରୁଣେଶ କଛୁ, କାଲ ଜନକପୁର ମହଁ ରହେଂ ।।*



# ଶ୍ରୁତଦେବଙ୍କ ଘରେ ଶ୍ରୀହରି

**ଶ୍ରୁତଦେବୋଽଚ୍ୟୁତଂ ପ୍ରାପ୍ତଂ ସ୍ୱଗୃହାଞ୍ଜନକୋ ଯଥା ।**
**ନତ୍ୱା ମୁନୀନ୍ ସୁସଂହୃଷ୍ଟୋ ଧୁନ୍ୱନ୍ ବାସୋ ନନର୍ତଂ ହ ।।☆**
(ଶ୍ରୀଭା.୧୦ମ ସ୍କ,୮୬ଅ,୩୮ ଶ୍ଲୋକ)

### ଛପ୍ପୟ

*ଇତ ଦ୍ୱିଜ ଦେଖେ ଦେବ ଦୀନକେ ଦ୍ୱାରେ ଆୟେ ।*
*ଚରନ କମଲ ସିର ନାଇ ବିନୟଯୁତ ବଚନ ସୁନାୟେ ।।*

---

☆ ଆନନ୍ଦମନେ ହୃଷୀକେଶ । ଶ୍ରୁତଦେବ ଗୃହେ ପ୍ରବେଶ ।।
ସ୍ୱଗୃହେ ଗୋବିନ୍ଦ ଆଗମେ । ଦେଖି ଶ୍ରୁତଦେବ ବିଭ୍ରମେ ।।
ନମି ଶ୍ଳୋକବିନ୍ଦେ ଶୁଦ୍ଧଚିତ୍ତେ । ଉତ୍ତରୀ ତୋଳି ବେନି ହସ୍ତେ ।।
ଭାବେ ସୁମନେ ନୃତ୍ୟ କରି । ଆନନ୍ଦେ ବୋଲେ ହରିହରି ।।
(ଭାଗବତ: ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ: ୯୨ ଅ )

*ନିତ୍ୟ ନିରଞ୍ଜନ ନାଥ ନିରନ୍ତର ନିକଟ ହମାରେ ।*
*ଅତି ଅନୁକମ୍ପା କରୀ ଅଛ ଅନୁଚର ଉଦ୍ଧାରେ ।।*
*କରେଂ କହା କରୁନାୟତନ! ବିଧିବତ ବାତ ବତାଇ ଦେଂ ।ଂ*
*ହୋହିଂ ଦ୍ରବିତ ଜାତେଂ ତୁରତ, ସାଧନ ସୁଖଦ ସିଖାଇ ଦେଂ ।।*

ଅପୂର୍ଣ୍ଣ ପୁରୁଷର ସାଧନ ଅପୂର୍ଣ୍ଣ ହୋଇଥାଏ, କଥା ବା ବଚନ ଅପୂର୍ଣ୍ଣ ହୋଇଥାଏ, ଶିକ୍ଷା ଅପୂର୍ଣ୍ଣ ହୋଇଥାଏ । ଯିଏ ପୂର୍ଣ୍ଣକୁ ପ୍ରାପ୍ତ ହୋଇଯାଇଛି, ଯାହାଙ୍କର 'ଋଷି' ସଂଜ୍ଞା ହୋଇଯାଇଛି, କେବଳ ସେମାନଙ୍କର ବାକ୍ୟ ବା ବଚନ ପ୍ରାମାଣିକ ବୋଲି ଗୃହୀତ ହୋଇଥାଏ । କିନ୍ତୁ ବେଳେ ବେଳେ ଋଷିମାନଙ୍କର ବାକ୍ୟରେ ବିଭିନ୍ନତା ଦେଖାଦିଏ । ଏଇଥିପାଇଁ ଭଗବାନ୍ ସ୍ୱୟଂ ସାକ୍ଷାତ୍ ରୂପରେ ଅବତରିତ ହୋଇ ଉପଦେଶ ଦେଇଥାନ୍ତି, ସାଧନ ବତାନ୍ତି ଆଉ ନିଜର ଅନୁଚରଙ୍କୁ ଉଦ୍ଧାରର ମାର୍ଗ ବତାଇ ଦେଉଥାନ୍ତି । ଭଗବାନ **ହେଉଛନ୍ତି ଜଗଦ୍‌ଗୁରୁ । ସେ ହିଁ ଅନେକ ରୂପ ଧାରଣ କରି, ଗୁରୁହୋଇ, ଟଳମଳ ହେଉଥିବା ଜୀବନ ଡଙ୍ଗାକୁ ଅପର ପାର୍ଶ୍ୱକୁ ପାରି କରି ନିଅନ୍ତି । ଯାହା ପାଖରେ** ଶ୍ରଦ୍ଧାରୂପୀ ସମ୍ବଳ ଥାଏ ସେ ସହଜରେ ପାରିହୋଇଯାଏ । ଯିଏ ସଂଶୟାତ୍ମା ତଥା ଅଶ୍ରଦ୍ଧାଳୁ, ଯିଏ ନିଜକୁ ସବ୍‌ଜାନତା ବୋଲି ଭାବୁଥାଏ, ସେ ସବୁବେଳେ ଉବୁଟୁବୁ ହେଉଥାଏ । ତା ପାଇଁ କୂଳ ଦୂରକୁ ଚାଲିଯାଏ । **ଶ୍ରଦ୍ଧା ଆଉ ବିଶ୍ୱାସକୁ ବି ଭଗବାନ ଦେଇଥାନ୍ତି ।**

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଗୋଟିଏ ରୂପରେ ଭଗବାନ୍ ମହାରାଜ ବହୁଲାଶ୍ୱଙ୍କ ସହିତ ଗଲେ, ଆଉ ଦ୍ୱିତୀୟ ରୂପରେ ଶ୍ରୁତଦେବ ବ୍ରାହ୍ମଣଙ୍କ ଘରକୁ ଗଲେ । ଋଷିମାନଙ୍କର ବି ତ ସେ ଦୁଇଟି ରୂପ କରିଦେଇଥିଲେ । ରାଜା ଆଉ ବ୍ରାହ୍ମଣ ଉଭୟଙ୍କୁ ଏପରି ଜଣାଯାଉଥିଲା ଯେ ଭଗବାନ ମୁନିଋଷିଙ୍କ ସହିତ ତାଙ୍କ ଘରକୁ ଆସିଛନ୍ତି । ଶ୍ରୁତଦେବ ଯେତେବେଳେ ଜାଣିଲେ ଯେ ଭଗବାନ ବଡ଼ ବ୍ରାହ୍ମଣ୍ୟ ପ୍ରିୟ, ବ୍ରାହ୍ମଣ ଦେବ, ସେ ଏଡ଼େ ବଡ଼ ଧର୍ମାତ୍ମା, ଯଶସ୍ୱୀ, କୁଳୀନ, ସଦାଚାରୀ, ମହାନ୍ ବୈଭବଶାଳୀ ମହାରାଜଙ୍କୁ ଛାଡ଼ି ମୋ ଭଳି ଦୀନ, ହୀନ, ନିର୍ଧନ ବ୍ରାହ୍ମଣର ଘରକୁ ଯାଉଛନ୍ତି, ସେତେବେଳେ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଋଷିମୁନିଙ୍କ ସହିତ ଭଗବାନ୍ ବାସୁଦେବଙ୍କର ଚରଣାରବିନ୍ଦ ଯେତେବେଳେ ତାଙ୍କ ଘରେ ପଡ଼ିଲା ସେ ଅତି ପ୍ରେମରେ ବିହ୍ୱଳ ହୋଇଗଲେ, ଆଉ ନିଜର ଉତରୀୟକୁ ପବନରେ ଉଡ଼ାଇ ଉନ୍ମାଦ ନୃତ୍ୟ କରିବାରେ ଲାଗିଲେ । ସେତେବେଳେ ସେ ତାଙ୍କର ଦେହଜ୍ଞାନ ଭୁଲି ଯାଇଥିଲେ । କିଛି ସମୟପରେ ସେ ପ୍ରକୃତିସ୍ଥ ହୋଇ ପ୍ରଭୁଙ୍କ ପାଦପଦ୍ମରେ ପ୍ରଣାମ କଲେ ତଥା ସମସ୍ତ ମୁନିଋଷିଙ୍କର ବି ଚରଣ ବନ୍ଦନା କଲେ । ବ୍ରାହ୍ମଣ ନିଜ ଘରେ ଭଗବାନଙ୍କୁ ଦେଖି ଟିକିଏ ବିଚଳିତ ହୋଇଯାଇଥିଲେ । ସେ କ'ଣ କରିବେ,

କ'ଣ ନକରିବେ କ'ଣ କରିବା ଉଚିତ ଏହା ସ୍ଥିର କରିପାରୁ ନଥିଲେ । ସେ ଦୌଡ଼ିଯାଇ ଅନେକ ଗୁଡ଼ିଏ କୁଶାସନକୁ ଧରି ଆସିଲେ । ଏବଂ ଭାବିବାରେ ଲାଗିଲେ-ଭଗବାନ ଉଚ୍ଚରେ ବସିବା ଉଚିତ । ଏପରି ଭାବି ସେ କେଉଁଠାରୁ ଗୋଟିଏ ପିଢ଼ା ନେଇ ଆସିଲେ, ଚଟାଇ ପକାଇ ଦେଲେ । ଏବଂ ବାରମ୍ବାର କହିବାରେ ଲାଗିଲେ, '' ପ୍ରଭୁ ! ଏହି ଦାସ ଅତି ଦୀନ, ହେ ସ୍ୱାମୀ ! ଆପଣଙ୍କୁ ନିଶ୍ଚୟ କଷ୍ଟ ହେଉଥିବ । କିନ୍ତୁ ମୁଁ ଅତି ଅସମର୍ଥ । ଆପଣଙ୍କ କୃପାରେ ହିଁ କେବଳ ବଞ୍ଚିଛି । ହେ ମଙ୍ଗଳମୂର୍ତ୍ତି ! ମାର୍ଗରେ ଆପଣଙ୍କୁ କୌଣସି ଶ୍ରମ ହୋଇନାହିଁ ତ ?''

ବ୍ରାହ୍ମଣ ଏହି ଭଳି ସ୍ୱାଗତ କରି କରି ପ୍ରେମପୂର୍ଣ୍ଣ ସ୍ନେହସିକ୍ତ ଗଦ୍‌ଗଦ୍ କଣ୍ଠରେ ଏହିପ୍ରକାର କହିବାରେ ଲାଗିଥିଲେ । ଏପରି ସମୟରେ ବ୍ରାହ୍ମଣୀ କମଣ୍ଡଳୁରେ ଜଳପୂର୍ଣ୍ଣ କରି ଆଣିଲେ । ସେ କହିଲେ, ' ଭଗବାନଙ୍କର ପାଦ ତ ଧୋଇଦିଅ ।'

ଏପରି କଥା ବ୍ରାହ୍ମଣୀଙ୍କଠାରୁ ଶୁଣି ଶ୍ରୁତଦେବ ବ୍ରାହ୍ମଣ ଘାବରା ହୋଇଗଲେ । ସେ ବିଚଳିତ ସ୍ୱରରେ କହିପକାଇଲେ,''ହାୟ.! ମୁଁ ତ ପୂରା ଭୁଲିଯାଇଥିଲି । ଆଣ, ଆଣ, ଏଇ ଚରଣାରବିନ୍ଦରୁ ତ ଜଗଦ୍-ଉଦ୍ଧାରିଣୀ ଭଗବତୀ ଗଙ୍ଗା ପ୍ରକଟ ହୋଇଛନ୍ତି । ଆମ ଘରକୁ ଗଙ୍ଗା ତ ସ୍ୱତଃ ଆସିଯାଇଛନ୍ତି ।'' ଏପରି କହି ବିପ୍ରବର କୁଟୁମ୍ବ ସହିତ ଭଗବାନଙ୍କର ଚରଣ ଧୌତ କଲେ । ସେହି ଚରଣୋଦକରେ ମହାଭାଗ୍ୟବାନ ବ୍ରାହ୍ମଣ ଶ୍ରୁତଦେବ ନିଜକୁ ତଥା ନିଜର ପରିବାର ବର୍ଗଙ୍କୁ ଅଭିଷିକ୍ତ କରିଦେଲେ । ମସ୍ତକରେ ଧାରଣ କରି ତାହାକୁ ନିଜର ଘରେ, ଚାରିଆଡ଼େ ଛିଞ୍ଚିଦେଲେ । ଆଜି ପ୍ରଭୁଙ୍କର ପାଦପଦ୍ମର ସ୍ପର୍ଶରେ ତାଙ୍କର ସମସ୍ତ ପାପ ନାଶ ହୋଇଗଲା । ପ୍ରଭୁଙ୍କ ପାଦପଦ୍ମ ପ୍ରକ୍ଷାଳନ କରି ନିଜକୁ କୃତ୍ୟ କୃତ୍ୟ ମନେକରିବାରେ ଲାଗିଲେ । ଭଗବାନଙ୍କର ଦର୍ଶନ, ପୂଜନ କରିବା ଦ୍ୱାରା ତାଙ୍କର ସମସ୍ତ ମନୋରଥ ପରିପୂର୍ଣ୍ଣ ହୋଇଯାଇଥିଲା ।

ପଦପ୍ରକ୍ଷାଳନ ପରେ ପରେ ସେ ସୁନ୍ଦର ସୁନ୍ଦର କନ୍ଦମୂଳ, ଫଳ, ତୁଳସୀ-ଜଳ, ଫୁଲ, ଗନ୍ଧ, ଖସରେ ସୁବାସିତ ଜଳ, କସ୍ତୁରୀ, କୁଶ-କମଳ ତଥା ଅନ୍ୟାନ୍ୟ ଅନେକ ବସ୍ତୁ ଯାହା ତାଙ୍କର ସହଜ ଲବ୍ଧ ହୋଇଥିଲା, ତହିଁରେ ଭଗବାନଙ୍କର ସାତ୍ତ୍ୱିକୀ ପୂଜା କଲେ । ସମା, ତ୍ରିହ୍ଲୀ ଆଦି ସାତ୍ତ୍ୱିକ ଋଷିଅନ୍ନ ଭୋଗ କଲେ । ସେ ବାରମ୍ବାର ନିଜ ଭାଗ୍ୟକୁ ନିନ୍ଦା କରି କରି ଭାବୁଥିଲେ - ''ମୁଁ ବଡ଼ ପତିତ । ଗୃହରୂପୀ ଅନ୍ଧକୂପରେ ପଡ଼ିଯାଇଛି । ମୋ ଭଳି ଦରିଦ୍ର ଭାଗ୍ୟହୀନ ବିପ୍ରବନ୍ଧୁର ଏପରି ଭାଗ୍ୟୋଦୟ ସମ୍ଭବ କିପରି ହେଲା ! ଭଗବାନ୍ ଓ ତାଙ୍କର ଶ୍ରେଷ୍ଠ ଭକ୍ତମାନଙ୍କ ସହିତ ମୋର ଦର୍ଶନ କିପରି ହୋଇଗଲା । ଏହି ମୁନି ଋଷିମାନେ ସ୍ୱୟଂ ତୀର୍ଥ ସ୍ୱରୂପ । ତୀର୍ଥରେ ତୀର୍ଥତ୍ୱ ସ୍ଥାପିତ କରି ଏମାନେ ପରିଭ୍ରମଣ କରୁଥାନ୍ତି । ଏମାନଙ୍କର ପାଦ ଧୂଳି ଯେଉଁଠାରେ ପଡ଼ିଯାଏ ସେହି ସ୍ଥାନ ତୀର୍ଥ ସ୍ଥାନ ନ ହୋଇଥିଲେ ବି ତୀର୍ଥ ସ୍ଥାନ

ହୋଇଯାଏ । ଏମାନଙ୍କ ମନରେ ମାଧବଙ୍କର ମଙ୍ଗଳମୟୀ ମୂର୍ତ୍ତି ସବୁବେଳେ ବିରାଜମାନ କରୁଥାଏ । ମହାନ୍ ଠାରୁ ହେଲେ ଅତି ମହାନ୍ ଏହି ମୁନିଶ୍ୱରଙ୍କର ଦର୍ଶନ ମୋତେ କିମିତି ମିଳିଗଲା ! ଭଗବାନ୍ ମୋ ଉପରେ ଅହେତୁକୀ କୃପା ପ୍ରଦାନ କରିଛନ୍ତି । **ଶ୍ରୀହରିଙ୍କ କୃପା ବିନା ସନ୍ଥଙ୍କ ଦର୍ଶନ ଅତି ଦୁର୍ଲଭ ହୋଇଥାଏ ।**

ଭାଗ୍ୟବାନ୍ ବ୍ରାହ୍ମଣ ଶ୍ରୁତଦେବ ନିଜ ଭାଗ୍ୟକୁ ପ୍ରଶଂସା କରି କରି ଏପରି ଭାବି ଭାବି ଭଗବାନଙ୍କୁ ପ୍ରାର୍ଥନା ନିବେଦନ କରିବାରେ ଲାଗିଲେ । ସେତେବେଳେ କୁଟୁମ୍ବ ପରିବାରର ଆବାଳବୃଦ୍ଧବନିତା ତଥା ନିଜର ସ୍ତ୍ରୀ ସେଠାରେ ଉପସ୍ଥିତ ଥିଲେ । ମୁନି-ଋଷିମାନେ ବିରାଜମାନ କରୁଥିଲେ । ଶ୍ରୁତଦେବଙ୍କର ସାତ୍ତ୍ୱିକ ଆତିଥ୍ୟ ସତ୍କାର ସ୍ୱୀକାର କରି ସର୍ବେଶ୍ୱର ଶ୍ରୀହରି ସୁଖପୂର୍ବକ ବସିଥିଲେ । ଆନନ୍ଦରେ ସ୍ମିତ ହାସ୍ୟ ପ୍ରକାଶ କରି ବସିଥିବା ଭଗବାନଙ୍କର ଚରଣ ସ୍ପର୍ଶ କରି ବ୍ରାହ୍ମଣ କହିଲେ, '' ହେ ପ୍ରଭୁ ! ମୁଁ କୃତାର୍ଥ ହୋଇଗଲି । ଧନ୍ୟ ହୋଇଗଲି ।''

ଭଗବାନ କହିଲେ, '' ହେ ବିପ୍ରବର ! ତୁମେ ହେଉଛ ମୋର ବଡ଼ ଭକ୍ତ । ମୁଁ ଭାବିଲି ମିଥିଳାପୁରୀକୁ ଯାଇ ତୁମକୁ ଟିକିଏ ଦେଖନ୍ତି । ତେଣୁ ଆଜି ମୁଁ ଚାଲିଆସିଲି ।''

ଭଗବାନଙ୍କ ଶ୍ରୀମୁଖରୁ ଏପରି କଥା ଶୁଣି ଶ୍ରୁତଦେବ କହିଲେ, '' ପ୍ରଭୁ ! ଯିବା ଆସିବା କରିବା ଆପଣଙ୍କ ପକ୍ଷରେ ସମ୍ଭବ କିପରି ହୋଇଥାଏ ! ମୋତେ ଆପଣ ମହାପୁରୁଷଙ୍କ ଦର୍ଶନ ନୂତନ ହୋଇଥାଇ ପାରେ ! କିନ୍ତୁ ଆପଣ ତ ସନାତନ, ସର୍ବଗତ, ସମସ୍ତଙ୍କର ଆଦି କାରଣ । ଯେଉଁଦିନଠାରୁ ଆପଣ ନିଜର ଶକ୍ତିରେ ଏହି ସଂପୂର୍ଣ୍ଣ ଜଗତକୁ ରଚନା କରିଛନ୍ତି, ଆଉ ଏହାକୁ ରଚନା କରି ସ୍ୱୟଂ ସମ୍ପୂର୍ଣ୍ଣ ପ୍ରତ୍ୟେକ ଅଣୁ ପରମାଣୁରେ ପ୍ରବେଶ କରିଛନ୍ତି, ଆପଣ ତ ସମସ୍ତଙ୍କ ସହିତ ରହିଛନ୍ତି ! ଏପରି କୌଣସି ବସ୍ତୁର ଅସ୍ତିତ୍ୱ ନାହିଁ ଯେଉଁଥିରେ ଆପଣ ନ ଥାନ୍ତି, ଆପଣ ତହିଁରେ ଲୁଚି ରହି ନଥାନ୍ତି ।''

ଭଗବାନ୍ କହିଲେ, '' ଭାଇ ! ମୁଁ ପରା ତୁମ ସାମନାରେ ବସିଛି । ଏଠାରେ ବସିଥିବା ବେଳେ ମୁଁ ପୁଣି ସବୁଥିରେ ଲୁଚି ରହିଛି ବୋଲି କହୁଛ କିପରି ? ଏଡ଼େ ବିଶାଳ ଜଗତକୁ ମୁଁ କିପରି ତିଆରି କଲି ?''

ଶ୍ରୁତଦେବ କହିଲେ, '' ପ୍ରଭୁ ! ଆପଣ ଦେଶକାଳର ସୀମାରେ ସୀମିତ ରହି ନଥାନ୍ତି । ଆପଣ ଏହି ଜଗତର ଏକମାତ୍ର ଅଧିଶ୍ୱର । ଆପଣଙ୍କ ପ୍ରେରଣାରେ, ଇଚ୍ଛାରେ, ସଂକଳ୍ପ ମାତ୍ରରେ, ଶକ୍ତି ତଥା ସାମର୍ଥ୍ୟରେ ସବୁ ହୋଇଥାଏ । ଯେପରି ଗୋଟିଏ ପୁରୁଷ ଏକ ଛୋଟ ଗୃହରେ ଶୋଇଥାଏ, ସ୍ୱପ୍ନରେ ସେ ହାତୀ, ଘୋଡ଼ା, ରଥ, ପଦାତିକ, ଚତୁରଙ୍ଗିଣୀ ସେନାକୁ କଳ୍ପନା କରେ, ବିରାଟ ରାଜା ହୋଇଯାଏ, ଘର, ସ୍ତ୍ରୀ, କୁଟୁମ୍ବ, ବୈଭବ, ସେନା, ସେବକ

ସମସ୍ତଙ୍କୁ କଳ୍ପନା ସେ ନିଜେ ସ୍ୱପ୍ନ ଜଗତରେ କରି ପକାଏ । ସ୍ୱପ୍ନରେ ସେ ଯେତେ ସବୁ ଦେଖେ ସେ ସମସ୍ତର ସେ ଦ୍ରଷ୍ଟା ହୋଇଥାଏ । ନିଜକୁ ନିଜେ ରଚନା କରି ନିଜକୁ ନିଜେ ତହିଁରେ ରହିଥାଏ । ଏ ସବୁ ତ ହେଉଛି ଅବିଦ୍ୟାର କାରଣ । ଠିକ୍ ଏହିଭଳି ଆପଣ ଆପଣଙ୍କ ମାୟା ଦ୍ୱାରା ଏହି ଚିତ୍ର ବିଚିତ୍ର ସଂସରର ରଚନା କରି ଏହାର ପ୍ରତ୍ୟେକ ବସ୍ତୁରେ ପ୍ରବିଷ୍ଟ ହୋଇଯାଆନ୍ତି, ଆଉ ଅନେକ ରୂପରେ ଦୃଶ୍ୟ ହୁଅନ୍ତି । ହୃଦୟରେ ବିରାଜମାନ ଥିଲେ ସୁଦ୍ଧା ଅଜ୍ଞାନ ବଶତଃ ପ୍ରାଣୀ ଆପଣଙ୍କୁ ଦେଖି ପାରନ୍ତି ନାହିଁ । ହୃଦୟରେ ଆପଣଙ୍କୁ ଅନୁଭବ କରନ୍ତି ନାହିଁ ।''

ଏପରି କଥା ଶୁଣି ଜଣେ ମୁନି ହସି ହସି କହିଲେ, '' ହେ ବିପ୍ରବର ! ଭଗବାନ୍ ଯଦି ସମସ୍ତଙ୍କର ଅନ୍ତଃକରଣରେ ଅଛନ୍ତି, ତେବେ ସମସ୍ତଙ୍କୁ ସେ ଦର୍ଶନ ହୁଅନ୍ତି ନାହିଁ କାହିଁକି ?''

ଏହା ଶୁଣି ଶ୍ରୁତଦେବ ଟିକିଏ ଲାଜେଇ ଯାଇ କହିଲେ, '' ହେ ବ୍ରହ୍ମନ୍ ! ମୁଁ ବା କ'ଣ ଜାଣିଛି ? ମୁଁ କେବଳ ଆପଣମାନଙ୍କ ଭଳି ଗୁରୁଜନଙ୍କଠାରୁ ଯାହା ଶୁଣିଛି, ଦର୍ପଣରେ ମୁହଁ ଦେଖାଯାଏ, କିନ୍ତୁ ତହିଁରେ ଧୂଳି ଜମିଯାଇଥିଲେ ଦର୍ପଣ ଥାଇ ସୁଦ୍ଧା ତହିଁରେ ମୁହଁ ଦେଖି ହୁଏ ନାହିଁ । ତହିଁରେ କେଉଁଠାରୁ କିଛି ଆଣି ମୁଖ ଦେଖିବାର ଶକ୍ତି ସ୍ଥାପିତ କରିବାର ଆବଶ୍ୟକତା ନାହିଁ । କେବଳ ତହିଁରେ ଲାଗିଥିବା ଧୂଳି ଝାଡ଼ିଦେଲେ ମୁହଁ ସ୍ୱଷ୍ଟ ଦେଖାଯାଏ, ମୁହଁ ନିର୍ମଳ ଦେଖି ହୁଏ । ଠିକ୍ ଏହିଭଳି ସମସ୍ତଙ୍କର ହୃଦୟରେ ଅନ୍ତର୍ଯ୍ୟାମୀ ରୂପରେ ଅଚ୍ୟୁତ ବସିଛନ୍ତି । କିନ୍ତୁ ଅନ୍ତଃକରଣ ଉପରେ ଅଜ୍ଞାନର ମାୟା ମୋହ ରୂପୀ ଧୂଳି ଜମି ଯାଇଛି । ଅନବରତ ଭଗବାନଙ୍କର ଭାଗବତୀ କଥାକୁ ଶ୍ରବଣ କରିଲେ, ତାଙ୍କର ସୁମଧୁର ଜଗତମଙ୍ଗଳକାରୀ ନାମକୀର୍ତ୍ତନ କରିଲେ, ତାଙ୍କୁ ପ୍ରେମର ସହିତ ପୂଜାକଲେ, ତାଙ୍କୁ ବାରମ୍ବାର ପ୍ରଣାମ କରୁଥିଲେ, ତଥା ନିଜ ନିଜ ଭିତରେ ତାଙ୍କ କଥା ହେଉଥିଲେ ସେହି ଧୂଳି ଝାଡ଼ି ହୋଇଯାଏ । ଅନ୍ତଃକରଣ ରୂପୀ ଦର୍ପଣ ନିର୍ମଳ ହୋଇଯାଏ । ସେହି ନିର୍ମଳ ଅନ୍ତଃକରଣରେ ଏହି ଅଖିଳେଶ୍ୱରଙ୍କର ଦର୍ଶନ ହୋଇଥାଏ ।''

ଭଗବାନ୍ କହିଲେ, '' ଭାଇ ! ମୁଁ ଯେତେବେଳେ ତୁମର ଏତେ ପାଖରେ ଅଛି, କିଛି ନା କିଛି ମୋର ଆଭାସ ସମସ୍ତଙ୍କୁ ହେଉଥିବା ଉଚିତ ।''

ଶ୍ରୁତଦେବ ବ୍ରାହ୍ମଣ କହିଲେ, '' ପ୍ରଭୁ ! ଆଭାସ ହୁଏ କେଉଁଠାରୁ ? ଲୋକମାନେ ତ ଆପଣଙ୍କୁ ଦେଖିବାକୁ ଚାହୁଁନାହାନ୍ତି । କାହାର ଚିତ୍ତ ସ୍ତ୍ରୀ ଠାରେ ଆସକ୍ତ, କାହାର ପିଲାଙ୍କଠାରେ, କାହାର ଧନରେ, ତ ଆଉ କାହାର ପରିବାରରେ । ଏହିପରି ସମସ୍ତଙ୍କର ଚିତ୍ତ ଲୌକିକ, ବୈଦିକ କର୍ମ ପ୍ରତି ଆସକ୍ତ ହୋଇରହିଥିବା ହେତୁ ବିକ୍ଷିପ୍ତ-ଭଳି

ହୋଇଯାଇଥାଏ । ତହିଁ ଆପଣଙ୍କର ପ୍ରତିବିମ୍ବ, ଆଭାସ ହେବ କିପରି । ଏପରି କର୍ମରେ ଆସକ୍ତ ଥିବା ଅନ୍ତଃକରଣରେ ଆପଣ ଥାଇ ସୁଦ୍ଧା ସେଠାରୁ ବହୁତ ଦୂର ହୋଇଯାଆନ୍ତି । ଅନ୍ତଃକରଣର ଯେଉଁ ସବୁ ଅହଙ୍କାରାଦି ଶକ୍ତି ଅଛି ତାହାକୁ ଗ୍ରହଣ କରିନେବା ପାଇଁ କେହି ଆପଣଙ୍କୁ କହିଲେ ହୁଏତ ଆପଣ ତାହା ଗ୍ରହଣ କରି ନେଇ ପାରନ୍ତି; ତଥାପି ଶ୍ରଦ୍ଧାଭକ୍ତିର ସହିତ ଯିଏ ଆପଣଙ୍କର ଗୁଣଗାନ କରୁଥାଏ, ଆପଣଙ୍କର ଜଗତପବିତ୍ର କାରିଣୀ ମଧୁମୟ ସରସ ନାମକୁ ଯିଏ କୀର୍ତ୍ତନ କରୁଥାଏ, ଆପଣ ତାର ଅତି ସମୀପସ୍ଥ ରୁହନ୍ତି, ସେପରି ଲୋକକୁ ଆପଣଙ୍କର ଆଭାସ କେବଳ ହୁଏ ନାହିଁ, ଆପଣଙ୍କର ସାକ୍ଷାତ୍ ଦର୍ଶନ ହୋଇଥାଏ ।

''ପ୍ରଭୁ ! ଆପଣ ଆତ୍ମଜ୍ଞାନୀଙ୍କୁ ନିଜର ପରମଧାମ ପ୍ରଦାନ କରନ୍ତି । ଯେଉଁମାନେ ଏହି ନାଶବାନ୍ ଶରୀରକୁ ଆତ୍ମା ବୋଲି ମନେକରନ୍ତି, ଏହାର ପାଳନ ପୋଷଣ ପରମ ପୁରୁଷାର୍ଥ ବୋଲି ମନେକରନ୍ତି, ସେପରି ଅନାତ୍ମାଭିମାନୀଙ୍କୁ ଆପଣ ଆତ୍ମାଠାରୁ ଭିନ୍ନ ବାରମ୍ବାର ଜନ୍ମ-ମରଣ ପ୍ରଦାନକାରୀ ସଂସାର ପ୍ରାପ୍ତି କରାଉଥାନ୍ତି । **ପ୍ରକୃତି ହେଉଛି ଏହି ସଂସାରର କାରଣ, ମହତ୍ତତ୍ୱ, ଅହଂତତ୍ତ୍ୱାଦି ଏହାର କାର୍ଯ୍ୟ ।** ଆପଣ ଏ ସମସ୍ତ କାର୍ଯ୍ୟ ଆଉ କାରଣର ଶାସକ । ଆପଣ ହେଉଛନ୍ତି ପୁରୁଷୋତ୍ତମ । ଆପଣଙ୍କ ମାୟା ଜ୍ଞାନକୁ ଆଚ୍ଛାଦନ କରିଦେଇଥାଏ । ଏପରି ନିତ୍ୟ ଆନନ୍ଦସ୍ୱରୂପ ଆପଣ ସଚ୍ଚିଦାନନ୍ଦ ପ୍ରଭୁଙ୍କ ପାଦପଦ୍ମରେ ମୁଁ ପ୍ରଣାମ କରୁଛି ।''

ଭଗବାନ କହିଲେ, '' ହେ ବିପ୍ରବର ! ଆପଣ ଅତି କଷ୍ଟରେ ଜୀବନ ଯାପନ କରୁଛନ୍ତି । ଅଯାଚିତ ବୃତ୍ତିରେ ନିର୍ବାହ କରୁଛନ୍ତି ?''

ବ୍ରାହ୍ମଣଶ୍ରେଷ୍ଠ ଶ୍ରୁତଦେବ କହିଲେ, '' **ପ୍ରଭୁ ! ଖାଇବା ପିଇବା ଓ ଶରୀର ଘୋଡ଼ାଇବାରେ କି ପ୍ରକାର କଷ୍ଟ ହୋଇଥାଏ ! ଆପଣଙ୍କୁ ଭୁଲି ଯିବା, ଆପଣଙ୍କୁ ବିସ୍ମରଣ ହୋଇଯିବା ସବୁଠାରୁ ବଡ଼ କ୍ଳେଶ ।** ଆପଣଙ୍କର ସ୍ମରଣ ନିତ୍ୟନିରନ୍ତର ହେଉଥିଲେ ତାହାଠାରୁ ବଳି ସୁଖ ଆଉ କିଛି ନଥାଏ । ପ୍ରାଣୀମାନେ ସେ ପର୍ଯ୍ୟନ୍ତ କ୍ଳେଶ ପାଉଥାଆନ୍ତି ଯେପର୍ଯ୍ୟନ୍ତ କ୍ଳେଶହାରୀ ଆପଣ ଦୃଷ୍ଟିଗୋଚର ହୋଇ ନଥାନ୍ତି । ଆପଣଙ୍କର ଦର୍ଶନ ଯେଉଁଠାରେ ହୋଇଯାଏ ସେଠାରେ ଦୁଃଖ, କ୍ଳେଶ, ଶୋକ ତଥା ସନ୍ତାପ ସମସ୍ତ ନଷ୍ଟ ହୋଇଯାଏ । ଏବେ ହେ ପ୍ରଭୁ ! ଆପଣଙ୍କର ସର୍ବଶ୍ରେଷ୍ଠ ସେବା କ'ଣ ତାହା ଜାଣିବା ପାଇଁ ଆମେ ଇଚ୍ଛାକରୁଛୁ ।''

ବ୍ରାହ୍ମଣଶ୍ରେଷ୍ଠ ଶ୍ରୁତଦେବଙ୍କର ଏପରି ଅତ୍ୟନ୍ତ ପ୍ରେମପୂର୍ଣ୍ଣ ସୁମଧୁର କଥା ଶୁଣି ଶରଣାଗତ ଭୟଭଂଜନ ଭଗବାନ୍ ହସି ହସି ଅତି ପ୍ରେମର ସହିତ ବ୍ରାହ୍ମଣଙ୍କର ହାତ ଧରିପକାଇ କହିବାରେ ଲାଗିଲେ, '' ହେ ବ୍ରହ୍ମନ୍ ! ମୋ ଆଗମନ ଠାରୁ ଅଧିକ ଶ୍ରେୟସ୍କର ହେଉଛି ଏହି ତେଜସ୍ୱୀ,

ତପସ୍ୱୀ, ମୁନିମାନଙ୍କର ଆଗମନ । ଏମାନେ ସମସ୍ତେ ମଙ୍ଗଳମୂର୍ତ୍ତି । ଯାହା ଉପରେ ଏମାନେ ଅତ୍ୟନ୍ତ କୃପା କରନ୍ତି ସେପରି ଲୋକର ଗୃହକୁ ଏମାନେ ଯାଇଥାନ୍ତି । ଏମାନଙ୍କର ଆଗମନ ତୁମେ ତୁମର ଅଭ୍ୟୁଦୟର କାରଣ ବୋଲି ଜାଣ । ଏମାନେ ଏମାନଙ୍କର ପଦରଜରେ ସଂପୂର୍ଣ୍ଣ ଲୋକକୁ ପବିତ୍ର କରି ବିଚରଣ କରୁଥାନ୍ତି । ଏଇମାନେ ସମସ୍ତଙ୍କୁ ପବିତ୍ର କରିଥାନ୍ତି ।''

ବ୍ରାହ୍ମଣ ଶ୍ରୁତଦେବ କହିଲେ, '' ହେ ଭଗବାନ୍ ! ଆପଣ ଠିକ୍ କହିଛନ୍ତି । ଏହି ଦ୍ୱିଜଗଣଙ୍କୁ ଭୂସୁର କୁହାଯାଏ, ଯେପରି ଦେବତାଙ୍କୁ ସ୍ୱର୍ଗରେ ସୁର କୁହନ୍ତି । ଯେପରି ଦେବତାମାନେ ସେମାନଙ୍କୁ ପୂଜାକରୁଥିବା ଲୋକଙ୍କୁ ଶୁଦ୍ଧ କରିପକାନ୍ତି । କାଶୀ, ପ୍ରୟାଗ, ପୁଷ୍କର ତଥା କୁରୁକ୍ଷେତ୍ର ଆଦି ପୁଣ୍ୟକ୍ଷେତ୍ର ସଂସ୍ପର୍ଶରେ ଆସୁଥିବା ଲୋକଙ୍କୁ ପବିତ୍ର କରିଥାନ୍ତି- ଯେପରି ନୈମେଷାରଣ୍ୟ, ହରଦ୍ୱାର, ଗଙ୍ଗା, ଯମୁନା ଆଦି ପୁଣ୍ୟ ଦର୍ଶନ, ସ୍ପର୍ଶନ, ପୂଜନ, ସ୍ନାନ, ତଥା ସେବନକାରୀଙ୍କୁ ପବିତ୍ର କରିଥାଏ, ସେହିଭଳି ଏହି ଭୂସୁର ପୂଜାକାରୀଙ୍କୁ ପବିତ୍ର କରି ଦେଇ ଥାଆନ୍ତି ?''

ଭଗବାନ କହିଲେ, '' ଯେପରି ଦେବତାମାନେ ପୁଣ୍ୟକ୍ଷେତ୍ର ତଥା ତୀର୍ଥାଦି ଦର୍ଶନ, ସ୍ପର୍ଶ ତଥା ପୂଜାକାରୀଙ୍କୁ ପବିତ୍ର କରିଦେଇ ଥାନ୍ତି, ସେହିଭଳି ଏହି ମୁନିଋଷିମାନେ ପବିତ୍ର କରିଥାନ୍ତି, କିନ୍ତୁ ଏମାନଙ୍କଠାରେ ଗୋଟିଏ ବିଶେଷ ଗୁଣ ଅଛି । ଦେବତାମାନେ ଅତି ଧୀରେ ଧୀରେ, ଅନେକ ଦିନ ପର୍ଯ୍ୟନ୍ତ ସେବା କରିବା ପରେ ପ୍ରସନ୍ନ ହୁଅନ୍ତି ଓ ପବିତ୍ର କରନ୍ତି । କିନ୍ତୁ ଏହି ସାଧୁମାନେ କେବଳ ଦୃଷ୍ଟିମାତ୍ରକେ ହିଁ ପବିତ୍ର କରିପକାନ୍ତି । ସାଧୁଙ୍କର ଦର୍ଶନ ମାତ୍ରକେ ପୁଣ୍ୟର ଅଭ୍ୟୁଦୟ ହୋଇଥାଏ ।'' (ଶ୍ଳୋକ ୮୬/୫୨)

ଶ୍ରୁତଦେବ କହିଲେ, '' ପ୍ରଭୁ ! ଆପଣ ସର୍ବାନ୍ତର୍ଯାମୀ ସର୍ବସମର୍ଥ ହୋଇ ସୁଦ୍ଧା ବ୍ରାହ୍ମଣଙ୍କର ଏତେ ଅଧିକ ପ୍ରଶଂସା କାହିଁକି କରୁଛନ୍ତି ? ଆପଣଙ୍କ ଆଗରେ ବ୍ରାହ୍ମଣ କ'ଣ ? ବ୍ରହ୍ମାଙ୍କର ମୁଖରୁ ବ୍ରାହ୍ମଣଙ୍କର ଉତ୍ପତ୍ତି ହୋଇଛି; ଆଉ ବ୍ରହ୍ମା ହେଉଛନ୍ତି ଆପଣଙ୍କର ପୁତ୍ର । ସେପରି ସ୍ଥଳରେ ଆପଣ ବ୍ରାହ୍ମଣଙ୍କର ଏପରି ପୂଜା କାହିଁକି କରୁଛନ୍ତି ?''

ଏପରି କଥା ଶୁଣି ଭଗବାନ କହିଲେ, '' ହେ ବ୍ରହ୍ମନ୍ ! ବେଦ ହେଉଛି ମୋ ସ୍ୱରୂପ । ସେହି ବେଦକୁ ଯିଏ ଧାରଣ କରନ୍ତି ସେମାନେ ବ୍ରାହ୍ମଣ । ଏହି ବ୍ରାହ୍ମଣଙ୍କୁ କାହାଙ୍କ ସହିତ ସମତା କରାଯାଇ ପାରିବ ? ବ୍ରାହ୍ମଣ ଘରେ ଜନ୍ମ ହେବା ହେଉଛି ମହାନ୍ ପୁଣ୍ୟ କାର୍ଯ୍ୟ । କାରଣ ବ୍ରାହ୍ମଣ ଜନ୍ମ ହିଁ ଶ୍ରେଷ୍ଠ ଜନ୍ମ । ତା ଉପରେ ଯଦି ତପସ୍ୟା, ବ୍ରହ୍ମବିଦ୍ୟା, ସନ୍ତୋଷ ଓ ମୋ ଭକ୍ତି ଯୁକ୍ତହୋଇଥାଏ ତାହାହେଲେ ଆଉ କହିବାକୁ କ'ଣ ଅଛି ? ବ୍ରାହ୍ମଣଙ୍କୁ ମୁଁ ମୋର ଦେବତା ରୂପେ ଗ୍ରହଣ କରିଛି । ଏଣୁ ମହାମନୀଷୀମାନେ ମୋତେ ବ୍ରହ୍ମଣ୍ୟଦେବ ବୋଲି

କୁହନ୍ତି । ବ୍ରାହ୍ମଣ ମୋର ଏତେ ପ୍ରିୟ ଯେ ମୋର ଏହି ଚତୁର୍ଭୁଜ ରୂପ ସେତେ ପ୍ରିୟ ଲାଗେ ନାହିଁ । (୮୬/୫୫) ଏପରିକି ଲକ୍ଷ୍ମୀ, ବ୍ରହ୍ମା ତଥା ହଳଧର ସଙ୍କର୍ଷଣାଦି ବି ସେତେ ପ୍ରିୟ ନୁହନ୍ତି । ମୁଁ ସର୍ବଦେବମୟ । ସମସ୍ତ ଦେବତା ମୋତେ ନିଜ ନିଜର ଅଧିଦେବ ବୋଲି ମାନନ୍ତି । କିନ୍ତୁ ସେହି ଦେବତାଙ୍କ ଠାରେ ଦେବତ୍ୱ ସ୍ଥାପନ କରିଥାଏ ବେଦ; ଆଉ ବ୍ରାହ୍ମଣ ସେହି ବେଦକୁ ନିଜ ହୃଦୟରେ ଧାରଣ କରିଥାନ୍ତି । **ବ୍ରାହ୍ମଣ ହେଉଛନ୍ତି ସର୍ବ ବେଦମୟ ।** ଏଣୁ ବେଦକୁ ଧାରଣ କରୁଥିବା ବିପ୍ର ସାଧାରଣ ପୁରୁଷ ନୁହନ୍ତି । ଯେଉଁ ମୂର୍ଖ ପୁରୁଷ ବ୍ରାହ୍ମଣଙ୍କର, ଗୁରୁଙ୍କର, ତଥା ସମସ୍ତଙ୍କ ହୃଦୟରେ ଆତ୍ମା ରୂପରେ ବିରାଜମାନ କରୁଥିବା ମୋତେ ଅବହେଳା କରନ୍ତି ସେମାନେ ଗୁଣରେ ଦୋଷ ଦର୍ଶନକାରୀ ଛିଦ୍ରାନ୍ୱେଷୀ ହିଁ ଅଟନ୍ତି । ଏପରି ଦ୍ୱିଜଦ୍ୱେଷୀ, ଗୁରୁଦ୍ୱେଷୀ ଆଉ ଆତ୍ମଦ୍ୱେଷୀ ଯଦି ମୋ ପ୍ରତିମାରେ ପୂଜ୍ୟବୁଦ୍ଧି ରଖି ପୂଜା ବି କରେ ତେବେ ତାକୁ ପୂଜାର ସମୁଚିତ ଫଳ ପ୍ରାପ୍ତ ହୁଏ ନାହିଁ । କାରଣ ତା ବୁଦ୍ଧିରେ ଭେଦ ଭାବ ଥାଏ । ବିପ୍ରଙ୍କ ହୃଦୟରେ ଏପରି ଭେଦ ଭାବ ନଥାଏ । ସେମାନେ ମୋତେ ସାକ୍ଷାତ୍କାର କରି ଚିତ୍ତରେ ଏହା ନିଶ୍ଚୟ କରିଥାନ୍ତି ଯେ **ସମସ୍ତ ଚରାଚର ଜଗତ ହେଉଛି ହରିମୟ । ହରିଙ୍କ ଅତିରିକ୍ତ ସଂସାରରେ ଆଉ କିଛି ନାହିଁ । ଯେତେ ସବୁ ଏହି ମହତତ୍ତ୍ୱ, ଅହଂ ତତ୍ତ୍ୱ, ପଞ୍ଚଭୂତ, ଇନ୍ଦ୍ରିୟାଦି ପ୍ରକୃତିର କାର୍ଯ୍ୟ ଦେଖାଯାଏ ଏ ସମସ୍ତ ହେଉଛି ଭଗବାନଙ୍କର ରୂପ ।** ମୋ ସହିତ ଯେତେ ମହର୍ଷି ଆସିଛନ୍ତି ସେମାନେ ସମସ୍ତେ ଏହା ଜାଣନ୍ତି । ଏଣୁ ତୁମେ ଏହି ମହର୍ଷିମାନଙ୍କୁ ମୋର ରୂପ ବୋଲି ଗ୍ରହଣ କର । ଏମାନଙ୍କୁ ପୂଜା କରିବାରେ ସାମାନ୍ୟମାତ୍ର ଭେଦ ଭାବ ରଖ ନାହିଁ । ଏମାନଙ୍କ ପୂଜା କରିବା ହେଉଛି ମୋର ସର୍ବଶ୍ରେଷ୍ଠ ପୂଜା । ଏମାନଙ୍କର ପୂଜା ଯେଉଁଠାରେ ହୁଏ, ତୁମେ ଜାଣି ନିଅ ଯେ ମୋର ପୂଜା ସେହିଠାରେ ହୋଇଗଲା । କେହି ବେଦଜ୍ଞ ବ୍ରାହ୍ମଣଙ୍କୁ ଅପମାନ କରି ମୋ ପୂଜା ଅତି ଧୂମ୍‌ଧାମରେ କଲେ ମୁଁ ତାହା ଗ୍ରହଣ କରେ ନାହିଁ । ତେଣୁ ତୁମେ ଏହି ମହର୍ଷିଙ୍କୁ 'ମୁଁ' ବୋଲି ଜାଣି ଏମାନଙ୍କୁ ସବୁବେଳେ ସେବା ପୂଜା କର । ଏହା ହିଁ ମୋର ଆଦେଶ, ଏହାହିଁ ମୋର ଉପଦେଶ, ଏହା ହିଁ ସାଧନ ଓ ଏହା ହିଁ ସାଧ୍ୟ ।''

ମହର୍ଷି ସୂତ କହୁଛନ୍ତି; '' ହେ ମୁନିଗଣ ! ଭଗବାନ୍ ଯେଉଁଭଳି ବିପ୍ରଙ୍କ ମହିମା ସୂଚକ ଉପଦେଶ ବିପ୍ରଶ୍ରେଷ୍ଠ ଶ୍ରୁତଦେବଙ୍କୁ ଦେଲେ, ଠିକ୍ ସେହିଭଳି ଉପଦେଶ ମହାରାଜ ଜନକଙ୍କୁ ମଧ୍ୟ ପ୍ରଦାନ କଲେ । ଦୁହେଁ ଭଗବାନଙ୍କର ଶ୍ରୀମୁଖରୁ ଏପରି ରହସ୍ୟମୟ ଉପଦେଶ ପାଇ କୃତାର୍ଥ ହୋଇଗଲେ । ଦୁହେଁ ଶ୍ରଦ୍ଧାଭକ୍ତି ଆଉ ଅନୁରାଗ ସହିତ ଭଗବାନ ବାସୁଦେବଙ୍କର ତଥା ମହର୍ଷିଙ୍କର ଅଭେଦ ବୁଦ୍ଧିରେ ପୂଜା କଲେ । ଏହି ଭଳି ଏକାନ୍ତ ଭାବରେ ଆରାଧନା କରିବା ପରେ ପରିଶେଷରେ ସେହି ଦୁହିଁଙ୍କୁ ପରମପଦ ପ୍ରାପ୍ତ ହୋଇଗଲା । ହେ ମୁନିଗଣ !

ଭଗବାନ ବଡ଼ ଦୟାଳୁ । ସେ ଭକ୍ତଙ୍କ ପାଖରେ ନିଜର ମହାନତାକୁ ଭୁଲି ଯାଆନ୍ତି । ସେ ଯେ ଜଗତପତି, ଏହା ତାଙ୍କର ସ୍ମରଣ ରହେନାହିଁ । ଭକ୍ତ ତାଙ୍କୁ ଭଜନ କରେ ଆଉ ସେ ନିଜେ ଭକ୍ତଙ୍କୁ ଭଜନ କରୁଥାନ୍ତି । ଭକ୍ତ ତାଙ୍କୁ ତାର ସ୍ୱାମୀ, ସର୍ବସ୍ୱ ବୋଲି ମାନେ, ସେ ସ୍ୱୟଂ ଭକ୍ତଙ୍କୁ ଭକ୍ତି କରିବାରେ ଲାଗିଥାନ୍ତି । ଆପଣମାନେ ବିଚାର କରନ୍ତୁ ତ ! ସ୍ୱାମୀଙ୍କୁ ଦର୍ଶନ କରିବାପାଇଁ ସ୍ୱୟଂ ସେବକ ଯାଏ; କିନ୍ତୁ ଭଗବାନ ଯାହାକୁ ନିଜର ଅନନ୍ୟ ଭକ୍ତ ଦେଖନ୍ତି ତାକୁ ଦର୍ଶନ କରିବା ପାଇଁ ସେ ସ୍ୱୟଂ ଯାଆନ୍ତି ।  ଧ୍ରୁବ ଅତି ସାନ ପିଲା । ସେ ଯିଦ୍ କଲା । ଭଗବାନଙ୍କୁ ଅସହ୍ୟ ବୋଧ ହେଲା । ସେ ବାଳକ ଭକ୍ତ ଧ୍ରୁବକୁ ଦର୍ଶନ କରିବା ପାଇଁ ଗରୁଡ଼ ଉପରେ ବସି ସେଠାକୁ ଗଲେ । ସେହିଭଳି ରାଜା ଜନକ ଓ ଶ୍ରୁତଦେବ ବ୍ରାହ୍ମଣଙ୍କୁ ଦେଖିବା ପାଇଁ ଭଗବାନ ମିଥିଳାପୁରୀକୁ ଆସିଥିଲେ । ଦୁଇଟି ଏକା ସମାନ ରୂପ ଧାରଣ କରି କିଛି ଦିନ ପାଇଁ ମିଥିଳାରେ ବି ରହିଥିଲେ । ପୁଣି ବ୍ରାହ୍ମଣଙ୍କୁ ସାଙ୍ଗରେ ଧରି ମିଥିଳାପୁରୀରୁ ଦ୍ୱାରକାକୁ ପ୍ରତ୍ୟାବର୍ତ୍ତନ କଲେ । ହେ ମୁନିଗଣ ! ଭଗବାନଙ୍କର ଭକ୍ତ ବତ୍ସଳତା ସମ୍ବନ୍ଧରେ ମୁଁ ଏହି କଥା କହିଲି । ଏବେ ଆପଣମାନେ ଆଉ କ'ଣ  ଶୁଣିବାକୁ ଚାହୁଁଛନ୍ତି ?''

ମହର୍ଷି ଶୌନକ କହିଲେ,''ହେ ସୂତ ! ଏବେ ଆପଣ କୁହନ୍ତୁ, ଏତେ କଥା ଶୁଣିବା ପରେ ମହାରାଜ ପରୀକ୍ଷିତ ଶୁକଦେବଙ୍କୁ କ'ଣ ପଚାରି ଥିଲେ ?''

ମହର୍ଷି ସୂତ କହିଲେ, ''ହେ ମହର୍ଷି ! ମହାରାଜ ପରୀକ୍ଷିତ ଯେତେବେଳେ ଭଗବାନଙ୍କର ଏହି ଉପଦେଶ ଶୁଣିଲେ, ଯାହା ଭଗବାନ ଶ୍ରୁତଦେବ ବିପ୍ରଙ୍କୁ କହିଥିଲେ ଯେ ବ୍ରାହ୍ମଣ ବେଦକୁ ଧାରଣ କରନ୍ତି, ତେଣୁ ସେ ସର୍ବବେଦମୟ । ବେଦର ଶ୍ରୁତିସମୂହ ହିଁ ବ୍ରହ୍ମର ପ୍ରତିପାଦନ କରନ୍ତି । ସେତେବେଳେ ରାଜାଙ୍କର ଆଶଙ୍କା ହେଲା ଯେ ଶ୍ରୁତିମାନେ ତ ଗୁଣମୟୀ, ତାହା ନିର୍ଗୁଣ ବ୍ରହ୍ମର କିପରି ପ୍ରତିପାଦନ କରନ୍ତି । ବ୍ରହ୍ମ ତ ସତ୍-ଅସତ୍, କାର୍ଯ୍ୟ - କାରଣ ଦୁହିଁଙ୍କ ଉପରେ, ଗୁଣ ରହିତ, ଏହାର ସାକ୍ଷାତ୍ ବର୍ଣ୍ଣନ ତ ସମ୍ଭବ ହୁଏ ନାହିଁ । ସେତେବେଳେ ଶ୍ରୁତିମାନେ ଏହାର ବର୍ଣ୍ଣନା କିପରି କରନ୍ତି ?''

ଅଭିମନ୍ୟୁ ପୁତ୍ର ମହାରାଜ ପରୀକ୍ଷିତ ଏପରି ପ୍ରଶ୍ନ ପଚାରିବାରୁ ମୋ ଗୁରୁଦେବ ବେଦ ସ୍ତୁତି ଶୁଣାଇଲେ । ସେ ଯେଉଁଭଳି ନିଖିଳ ପ୍ରପଞ୍ଚ ଶକ୍ତି ସମୂହ ସହିତ ସଂପୂର୍ଣ୍ଣ ଜଗତକୁ ନିଜଠାରେ ଲୀନ କରି ଶୟନ କରିଥିବା ପରମାତ୍ମାଙ୍କର ଯେଉଁଭଳି ଶ୍ରୁତିମାନେ ସ୍ତୁତି କରିଛନ୍ତି ତାହାର ବର୍ଣ୍ଣନା କଲେ । ଏହା ଅତି ଗୂଢ଼ ଓ ଜ୍ଞାନମୟୀ ପ୍ରସଙ୍ଗ । ଏହାର ବର୍ଣ୍ଣନା ମୁଁ ଅନ୍ୟତ୍ର କେତେବେଳେ ଯଥା ସ୍ଥାନରେ ସ୍ତୁତି ପ୍ରକରଣରେ କରିବି । ଏବେ ଆପଣମାନେ ଯଦି ଚାହାନ୍ତି ତେବେ ଗୋଟିଏ ହାସ୍ୟପ୍ରସଙ୍ଗ ଶୁଣାଇବି ଯେଉଁଥିରେ ଭୋଳାବାବା ତାଙ୍କ ଭୋଳାପଣିଆ ଦର୍ଶାଇଥିଲେ । ଆଉ ଏପରି ଶଙ୍କଟମୟ ପରିସ୍ଥିତି ହୋଇଯାଇଥିଲା ଯେ ଭଗବାନ ବିଷ୍ଣୁ ଯାଇ ତାଙ୍କୁ ବଞ୍ଚାଇବାକୁ ପଡ଼ିଲା । ମହାରାଜ ପରୀକ୍ଷିତ ପଚାରିବାରୁ ମୋ ଗୁରୁଦେବ ଏହି ପ୍ରାଚୀନ ଇତିହାସ ବର୍ଣ୍ଣନା କରିଥିଲେ ।''

ଏପରି କଥା ଶୁଣି ଶୌନକ କହିଲେ, '' ହଁ ମହର୍ଷି ସୂତ ! ଆପଣ ଆମକୁ ଏହି କଥା ନିଂଚୟ ଶୁଣାନ୍ତୁ । ଭଗବାନଙ୍କର କଥା ଶୁଣିବାକୁ ଆମକୁ ଖୁବ୍ ଭଲ ଲାଗୁଛି ।''

ମହର୍ଷି ସୂତ କହିଲେ, '' ଠିକ୍ ଅଛି ତାହାହେଲେ । ତେବେ ମୁଁ ସେହି ପ୍ରସଙ୍ଗ ଶୁଣାଉଛି । ଆପଣମାନେ ସାବଧାନତାର ସହିତ ଶ୍ରବଣ କରନ୍ତୁ ।''

**ଛପ୍ପୟ**

*ହଁସି ହରି ବୋଲେ-ବିପ୍ର ବେଦ ଜଗ ମାହିଁ ପ୍ରଚାରେଁ ।*
*ଶମ, ଦମ, ସଂଯମ, ନିୟମ ସାଧି ତିନକୂଁ ତେ ଧାରେଁ ॥*
*ମେରେ ହ୍ଣ ତେ ପୂଜ୍ୟ କରେଁ ଜୋ ଅର୍ଚନ ତିନିକୋ ।*
*ସମଦରସୀ ହ୍ୱେଂ ଜାୟ ଭକ୍ତ ହୋବେ ଜୋ ଉନିକୋ ॥*
*ଯୋ ସିବ ଦୀହ୍ନୀ ଦ୍ୱିଜ ନୃପହିଁ, କଛୁ ଦିନ ରହି ପୁନି ପୁର ଗୟେ ।*
*ସୁନୋ କଥା ଅବ ଶମ୍ଭୁ କୀ, ବିକଲ ଅସୁର ବର ଦୈ ଭୟେ ॥*



# ହରିହର ଭକ୍ତିରେ ପ୍ରଭେଦତା

**ଦେବାସୁରମନୁଷ୍ୟେଷୁ ଯେ ଭଜନ୍ତ୍ୟ ଶିବଂ ଶିବମ୍ ।**
**ପ୍ରାୟସ୍ତେ ଧନିନୋ ଭୋଜା ନ ତୁ ଲକ୍ଷ୍ମ୍ୟାଃ ପତିଂ ହରିମ୍ ॥☆**

(ଶ୍ରୀ ଭା: ୧୦ ମ ସ୍କ. ୮୮ ଅ. ୧ମ ଶ୍ଲୋକ)

**ଛପ୍ପୟ**

*ପୂଛେ ଶୁକ ତେଂ ଭୂପ, ପ୍ରଭୋ ! ହର ମରଘଟ ବାସୀ ।*
*ଚିତା ଭସ୍ମ ତନୁ ମଲେଂ ଦିଗମ୍ବର ବିଷୟ ଉଦାସୀ ॥*

---

☆ ପରୀକ୍ଷ ଶୁକ ମୁଖ ଚାହିଁ । ବୋଲଇ ଶିରେ କର ଦେଇ ॥
ଭୋ ମୁନି ସଂଶୟ ମୋ ମନେ । ଛେଦନ କର ସୁପ୍ରସନ୍ନେ ॥
ଦେବ ଅସୁର ନର ମଧ୍ୟେ । ଯେ ସେବା କରେ ରୁଦ୍ରପାଦେ ॥
ତାହାଙ୍କ ଘରେ କମଳିନୀ । ସକଳ ନିଧି ସଙ୍ଗେ ଘେନି ॥
ଖଟଇ ଭୃତ୍ୟପ୍ରାୟ ହୋଇ । ଅନେକ ସୁଖ ସେ ଭୁଞ୍ଜଇ ॥
କମଳା କାନ୍ତ ଯେ ମୁରାରି । ପ୍ରାଣୀ ତାହାଙ୍କୁ ସେବା କରି ॥
ସକଳ ଦୁଃଖେ ହୋନ୍ତି ଦୁଃଖୀ । ସ୍ୱଜନେ ତାହାଙ୍କୁ ଉପେକ୍ଷି ॥

ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ.୯୪ ଅ.

ତିନିକେ ସବଇ ଭକ୍ତ ଧନୀ ମାନୀ ଭୋଗୀ ଅତି ।
ବନେ ଠନେ ହରି ରହେ ସୁଘର ସୁନ୍ଦର କମଳାପତି ।।
ଲକ୍ଷ୍ମୀପତି ପ୍ରିୟ ଧନ ରହିତ, ଶୈବ ଧନୀ ବନ ଜାତ ହେ ।
ବୈଷ୍ଣବ ବନି ମାଁଗତ ଫିରହିଁ, ୟହ କା ଉଲଟା ବାତ ହେ ।।

ଯାହାର ଯେଉଁ ବସ୍ତୁ ଅତି ପ୍ରିୟ ସେ ସେହି ବସ୍ତୁ ଅନ୍ୟକୁ ଦେବାପାଇଁ ସଂକୋଚ କରେ । ଯେଉଁ ବସ୍ତୁ ଅଧିକ ଥାଏ, ଚିହ୍ନା ପରିଚୟ ଲୋକ ମାଗିଲେ ଆମେ ବିନା ସଂକୋଚରେ ତାହା ଦେଇ ଦେଉ । ଯାହାର ଯେଉଁ ବସ୍ତୁ ପାଇବା ପାଇଁ ଉତ୍କଟ ଇଚ୍ଛା ହୁଏ, ସେହି ବସ୍ତୁକୁ ସେ ସର୍ବଶ୍ରେଷ୍ଠ ବୋଲି ମନେକରେ । କେହି ଜଣେ ଅତି ତୃଷିତ ହୋଇଥିଲେ, ଶୋଷ ହେତୁ ଯାହାର ଗଳା ଶୁଖି ଯାଉଥାଏ, ତାକୁ ଯଦି ଅତି ସୁମଧୁର ସଂଗୀତ ଶୁଣାଯାଏ, ଆଖିକୁ ସୁନ୍ଦର ଦେଖାଯାଉଥିବା ଭଳି ନୃତ୍ୟ ଦେଖାଯାଏ, ତେବେ ତାକୁ କୌଣସି କଥା ଭଲ ଲାଗେ ନାହିଁ । ସେ ଜଳ ଦରକାର କରେ । ଯେଉଁଠାରେ ଯେଉଁଭଳି ହେଉ ଧନ ମିଳୁଥିଲେ ତାହା ପାଇବା ପାଇଁ ଯତ୍ନବାନ ହୁଏ । ଭକ୍ତି ବା ମୁକ୍ତି ଯିଏ ଇଚ୍ଛା କରେ, ତାହା ଯେପରି ମିଳିପାରିବ ସେଥି ନିମନ୍ତେ ସେ ସାଧନ କରେ ।

ମହର୍ଷି ସୂତ କହୁଛନ୍ତି, ,'' ହେ ମୁନିଗଣ ! ବେଦ-ସ୍ତୁତି ଶୁଣିବା ପରେ ପରେ ମହାରାଜ ପରୀକ୍ଷିତ ମୋ ଗୁରୁଦେବ ଭଗବାନ ଶୁକଙ୍କୁ ପଚାରିଲେ, 'ପ୍ରଭୁ ! ମୋର ଗୋଟିଏ ପ୍ରଶ୍ନ ଅଛି, ଆପଣ କୃପାକରି ଅନୁମତି ଦେଲେ ତାହା ପଚାରନ୍ତି ।'

ଶ୍ରୀ ଶୁକଦେବ କହିଲେ, '' ରାଜନ୍ ! ତୁମେ କ'ଣ କେବେ ଅକାରଣରେ ସଂଶୟ କରିପାର ? ତୁମର ସଂଶୟ ନିଶ୍ଚୟ ଲୋକକଲ୍ୟାଣକାରୀ ହିଁ ହୋଇଥିବ । ତୁମେ ନିର୍ଭୟରେ ତାହା ମୋତେ ପଚାର ।''

ମହାରାଜ ପରୀକ୍ଷିତ ପଚାରିଲେ, '' ହେ ବ୍ରହ୍ମନ୍ ! ତିନିଜଣ ଦେବତା ହେଉଛନ୍ତି ବ୍ରହ୍ମା, ବିଷ୍ଣୁ ଆଉ ମହେଶ୍ୱର । ଦିନେ ବ୍ରହ୍ମା ଓ ବିଷ୍ଣୁ ଏକାଠି ସାଙ୍ଗହୋଇ ଯାଉଥିଲେ । ବାଟରେ ସେମାନେ ଏକ ସୁବୃହତ୍ ଜ୍ୟୋର୍ତିମୟ ଲିଙ୍ଗ ଦେଖିଲେ । ସେହି ଲିଙ୍ଗର ନା ଆଦି ଥିଲା ନା ଅନ୍ତ । ତା'ର ଉତ୍ପତ୍ତି ସ୍ଥାନ ଦେଖିବା ପାଇଁ ଭଗବାନ ପାତାଳକୁ ଗଲେ, ଆଉ ତାର ଶୀର୍ଷସ୍ଥାନ ଦେଖିବା ପାଇଁ ବ୍ରହ୍ମା ହଂସରେ ଚଢ଼ି ଆକାଶରେ ଚାଲିଲେ । ବ୍ରହ୍ମା ଆକାଶରେ ଏହାର ଶୀର୍ଷସ୍ଥାନ କଳନା କରିପାରିଲେ ନାହିଁ । ସେ କେତକୀକୁ ସାକ୍ଷୀରୂପେ ଅବସ୍ଥାପିତ କରି ଫେରି ଆସିଲେ । ସେ ଫେରିଆସି କହିଲେ, 'ମୁଁ ଶୀର୍ଷ ସ୍ଥାନକୁ ଦେଖି ଆସିଛି, କେତକୀକୁ ସାକ୍ଷୀରୂପେ ରଖିଆସିଛି ।' ପରବର୍ତ୍ତୀ ସମୟରେ ଯେତେବେଳେ ସତ୍ୟାସତ୍ୟ ଜଣା ପଡ଼ିଲା ସେତେବେଳେ ବ୍ରହ୍ମା ଅଭିଶାପ ପାଇଲେ ଓ ଜଗତରେ ସବୁକାଳ ପାଇଁ ଅପୂଜ୍ୟ ରହିଗଲେ ।

ସେଥିଯୋଗୁଁ ପୁଷ୍କର କ୍ଷେତ୍ର ବ୍ୟତୀତ ଅନ୍ୟ କେଉଁଠାରେ ବ୍ରହ୍ମାଙ୍କର ସ୍ୱତନ୍ତ୍ର ମନ୍ଦିର ନାହିଁ । ଏବେ ତ୍ରିଦେବଙ୍କ ମଧ୍ୟରେ ଏକମାତ୍ର ଶିବ ପୂଜନୀୟ ରହିଲେ ଓ ଅନ୍ୟ ଜଣେ ହେଲେ ଭଗବାନ୍ ବିଷ୍ଣୁ । ଅନେକ ଲୋକ ଶୈବ ହେଲେ ଓ ଅନ୍ୟମାନେ ବିଷ୍ଣୁଙ୍କ ପୂଜକ ବୈଷ୍ଣବ ହେଲେ । ବୈଷ୍ଣବଙ୍କ ଅପେକ୍ଷା ଶୈବଙ୍କ ସଂଖ୍ୟା ଅଧିକ । କେବଳ ମନୁଷ୍ୟଙ୍କ ଭିତରେ କାହିଁକି, ଅସୁର ଓ ରାକ୍ଷସଙ୍କ ଭିତରେ ମଧ୍ୟ ସମସ୍ତେ ଶିବଙ୍କ ଉପାସକ ଶୈବ ହିଁ ଦେଖାଯାଆନ୍ତି । ଦେବତା, ମନୁଷ୍ୟ, ଯକ୍ଷ, ଗନ୍ଧର୍ବ ତଥା ଭୂତ-ପ୍ରେତ, ପିଶାଚ ସମସ୍ତେ ଶିବଙ୍କ ଆରାଧନା କରନ୍ତି । ଯଦିଓ ଶିବ ଧନୀ ନୁହନ୍ତି । ବାହନ ମଧ୍ୟରେ ନା ତାଙ୍କର ବିମାନ ଅଛି ନା ରଥ । ଗୋଟିଏ ଅତି ବୁଢ଼ା ବଳଦ, ତା ଉପରେ ନିଜେ ଚଢ଼ି ଯାଆନ୍ତି, ପାର୍ବତୀଙ୍କୁ ବସାନ୍ତି । ଶରୀରରେ ବସ୍ତ୍ର ନଥାଏ, ପାହାଡ଼ ଉପରେ ବି ଦିଗମ୍ବର ଇ ଥାଆନ୍ତି । ଶୀତ ନ ଲାଗିବା ଉଦ୍ଦେଶ୍ୟରେ ଶରୀରରେ ସବୁବେଳେ ଭସ୍ମ ବୋଳି ହୋଇ ଥାନ୍ତି । ସେହି ଭସ୍ମ ବି କୌଣସି ପବିତ୍ର ସ୍ଥାନର କି ଯଜ୍ଞକୁଣ୍ଡର ନୁହେଁ, ଶଶ୍ମାନର, ଯେଉଁଠାରେ ମରିଯାଇଥିବା ମଣିଷମାନେ ପୋଡ଼ା ହୁଅନ୍ତି । ସେହି ସ୍ଥାନର ଭସ୍ମ ବୋଳି ହୋଇଥାଆନ୍ତି । ତାଙ୍କର କଙ୍କଣ, କୁଣ୍ଡଳ, ମୁକୁଟ ଆଦି ସୁନାର କିମ୍ବା ରୁପାର ହୋଇ ନଥାଏ । ବିଷଧର ସର୍ପମାନେ ଏହି ସମସ୍ତ ଆଭୂଷଣ ହୋଇଥାନ୍ତି । ତାଙ୍କ କଣ୍ଠରେ ମୋତିର, ମୁକ୍ତାର କି ସୁଗନ୍ଧିତ ପୁଷ୍ପର ମାଳା ନ ଥାଏ । ନରମୁଣ୍ଡର ମାଳା ସେ ପିନ୍ଧିଥାନ୍ତି । ତାଙ୍କ ଘରେ ସୁନା ରୁପାର ବାସନକୁସନ ନ ଥାଏ । କେତେକ ଖପ୍ପର ମାତ୍ର ପଡ଼ିଥାଏ । ଏହିପରି ବିଷୟ ଭୋଗ-ବିରକ୍ତ ବିଚିତ୍ର ବେଷ ଧାରଣ କରିଥିବା ଭୋଳାନାଥଙ୍କର ଯେତେ ଭକ୍ତଙ୍କୁ ଆମେ ଦେଖୁଛେ, ସେମାନେ ସମସ୍ତେ ପ୍ରାୟତଃ ସକଳ ପ୍ରକାର ବିଷୟ ଭୋଗ ସମ୍ପନ୍ନ ଆଉ ଧନୀ ହୋଇଥାନ୍ତି ।

" ଏହାର ବିପରୀତ କଥା ଆମେ ବିଷ୍ଣୁ ଭଗବାନଙ୍କ ଠାରେ ଦେଖିବାକୁ ପାଉ । ଭଗବାନ ବିଷ୍ଣୁ ସବୁବେଳେ ସୁନ୍ଦର ସୁସଜ୍ଜିତ ରହିଥାନ୍ତି । ତାଙ୍କ କଣ୍ଠରେ କୌସ୍ତୁଭମଣିର ଦିବ୍ୟ ମାଳ, କିରୀଟ-ମୁକୁଟ, କନକ-କୁଣ୍ଡଳ, ନୂପୁର, ବାହୁବନ୍ଧ, ହାର, ବନମାଳ, କଙ୍କଣ, ମୁଦ୍ରିକା, କଡ଼ା, କଟିବନ୍ଧ ଓ ଆହୁରି ଅନେକ ମୂଲ୍ୟବାନ ଆଭୂଷଣ ଶରୀରର ସମସ୍ତ ଅଙ୍ଗପ୍ରତ୍ୟେଙ୍ଗରେ ଶୋଭା ପାଉଥାଏ । ସେ ଯେଉଁ ଅପୂର୍ବ ସୁନ୍ଦର ପୀତାମ୍ବର ପରିଧାନ କରିଥାନ୍ତି ତାହା ମଧ୍ୟ ରେଶମ ବସ୍ତ୍ରର ହୋଇଥାଏ । ବିଷ୍ଣୁ ଭଗବାନଙ୍କର ସମସ୍ତ ବସ୍ତ୍ରାଭୂଷଣ ଅମୂଲ୍ୟ ହୋଇଥାଏ । ସେ ଗରୁଡ଼ ଉପରେ ବିରାଜମାନ କରୁଥାନ୍ତି । ସମ୍ପତ୍ତିର ଅଧିଷ୍ଠାତ୍ରୀ ଦେବୀ ସାକ୍ଷାତ୍ ଲକ୍ଷ୍ମୀ ଯାହାଙ୍କର ଅର୍ଦ୍ଧାଙ୍ଗିନୀ, ଏପରି ସର୍ବସମର୍ଥ ଲକ୍ଷ୍ମୀପତିଙ୍କ ଭକ୍ତଗଣ ପ୍ରାୟତଃ ଦୀନ, ହୀନ, ନିର୍ଦ୍ଧନ ଦେଖାଯାଆନ୍ତି । ସେମାନଙ୍କ ପାଖରେ ଭୋଗ ସାମଗ୍ରୀ ନଥାଏ । ସେମାନେ କୌଣସି ପ୍ରକାର ମାଗି-ଯାଚି ଜୀବନ ନିର୍ବାହ କରୁଥାନ୍ତି । ଏହାର କାରଣ କ'ଣ ହୋଇପାରେ ? ଲକ୍ଷ୍ମୀପତିଙ୍କ ଉପାସକମାନେ ଲକ୍ଷ୍ମୀ-ସମ୍ପନ୍ନ ହେବାକଥା । ଆଉ ଦିଗମ୍ବରଙ୍କ ଉପାସକ ଅକିଞ୍ଚନ

ନିସ୍ପୃହ ହେବାକଥା । କିନ୍ତୁ କଥା ପ୍ରତିକୂଳ ହୋଇଥାଏ । ଇଷ୍ଟ ଯେଉଁଭଳି ହୋଇଥାନ୍ତି, ତାହାର ବିରୁଦ୍ଧ ଧର୍ମୀ ସ୍ୱଭାବଯୁକ୍ତ ଭକ୍ତ ହୋଇଥାନ୍ତି କିପରି ? ହେ ମହର୍ଷି ! କୃପାକରି ମୋର ଏହି ସନ୍ଦେହ ମୋଚନ କରିବା ହୁଅନ୍ତୁ ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ମୋର ପୂଜ୍ୟ ଗୁରୁଦେବଙ୍କୁ ମହାରାଜ ପରୀକ୍ଷିତ ଏହିପରି ଆଶଙ୍କାଯୁକ୍ତ ପ୍ରଶ୍ନ ପଚାରିଲେ, ସେତେବେଳେ ମୋର ପୂଜ୍ୟ ଗୁରୁଦେବ କିଛି ସମୟ ପର୍ଯ୍ୟନ୍ତ ମୌନ ରହିଗଲେ । ଏହାପରେ ଅତି ଗମ୍ଭୀର ସ୍ୱରରେ କହିଲେ, 'ଦେଖନ୍ତୁ, ରାଜନ୍ ! ପ୍ରକୃତିରୁ ମହତତ୍ତ୍ୱର ଉତ୍ପତ୍ତି ହେଲା । ମହତ୍ତତ୍ତ୍ୱରୁ ଅହଙ୍କାରର ଉତ୍ପତ୍ତି ହେଲା । ସେହି ଅହଂତତ୍ତ୍ୱର ସାତ୍ତ୍ୱିକ, ରାଜସ ଓ ତାମସ ଏପରି ତିନି ଭେଦ ହେଲା । ଏହି ତ୍ରିବିଧ ଅହଂକାରରୁ ବି ଦଶଇନ୍ଦ୍ରିୟ ପାଞ୍ଚ ମହାଭୂତ ଆଉ ଏକ ମନ-ଏହି ଭଳି ଷୋହଳ ବିକାର ହେଲା । **ଏ ସମସ୍ତ ହେଉଛି ପ୍ରକୃତିର ବିକୃତି** । ଏ ସମସ୍ତର ପୃଥକ୍ ପୃଥକ୍ ଅଧିଷ୍ଠାତୃ ଦେବତା ଅଛନ୍ତି । ନିତ୍ୟ-ନିରନ୍ତର ନିଜର ମାୟାଶକ୍ତି ସମ୍ପନ୍ନ ସଦା(ଅନବରତ) ଶିବ (ପ୍ରାଜ୍ଞ) ଭଗବାନ୍ ରୁଦ୍ର ଏହି ତ୍ରିବିଧ ଅହଙ୍କାରର ଅଧିଷ୍ଠାତୃ-ଦେବ । ଏହି ସମସ୍ତ ବିକାରର (ଷୋହଳ ବିକାରଗୁଡିକର) ଅଧିଷ୍ଠାତୃ-ଦେବଙ୍କ ଭିତରୁ କୌଣସି ଜଣଙ୍କର ଉପାସନା କରାଗଲେ ଉପାସକ ସମଗ୍ର (ସଂପୂର୍ଣ୍ଣ) ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇଥାଏ । ଉଦାହରଣ ସ୍ୱରୂପ ନେତ୍ରର ଅଧିଷ୍ଠାତୃ ଦେବ ହେଉଛନ୍ତି ସୂର୍ଯ୍ୟ । ସୂର୍ଯ୍ୟଙ୍କ ଉପାସକମାନେ ତେଜ ପ୍ରାପ୍ତ ହୋଇଥାନ୍ତି । ନାକର ଅଧିଷ୍ଠାତୃ ଦେବ ଅଶ୍ୱିନୀକୁମାର । ଏହାଙ୍କର ଉପାସନା ଯେ କରେ ସେ ନୀରୋଗ ଓ ଦୀର୍ଘାୟୁ ହୁଏ । ଏହିଭଳି ସମସ୍ତ ବସ୍ତୁ ମିଳିଯାଏ । ଅହଙ୍କାରରୁ ହିଁ ତ ସଂପୂର୍ଣ୍ଣ ସଂସାରର ଉତ୍ପତ୍ତି ହୋଇଛି । ଏହାର ଅଧିଷ୍ଠାତୃ-ଦେବ ହେଉଛନ୍ତି ଭଗବାନ୍ ରୁଦ୍ର । ରୁଦ୍ରଙ୍କ ଉପାସନା କରାଗଲେ ସଂପୂର୍ଣ୍ଣ ଐଶ୍ୱର୍ଯ୍ୟର ଗତି ପ୍ରାପ୍ତ ହେବା ସ୍ୱାଭାବିକ୍ ।

''ତ୍ରିଦେବଙ୍କ ମଧ୍ୟରୁ ବିଷ୍ଣୁ ଭଗବାନ ଚରଣର ଅଧିଷ୍ଠାତୃ-ଦେବ । ତାଙ୍କର ଉପାସନା ଯେଉଁମାନେ କରନ୍ତି ସେମାନଙ୍କୁ ବି ଅର୍ଥ ପ୍ରାପ୍ତ ହୋଇଥାଏ; ମାତ୍ର ଯିଏ ପ୍ରକୃତିର ପରେ (ଉର୍ଦ୍ଧ୍ୱରେ) ପୁରାଣପୁରୁଷ ଶ୍ରୀମନ୍ନାରାୟଣଙ୍କୁ ଉପାସନା କରନ୍ତି ସେମାନଙ୍କୁ ପ୍ରକୃତିର ଉର୍ଦ୍ଧ୍ୱରେ ଥିବା ପଦାର୍ଥ ପ୍ରାପ୍ତ ହୋଇଥାଏ । ଏହା ହେଉଛି ସାତ୍ତ୍ୱିକ, ରାଜସିକ ଆଉ ତାମସିକ ପ୍ରକୃତିର ଗୁଣ । ଭଗବାନ୍ ଶ୍ରୀହରି ଏହି ତିନିଗୁଣର ଉର୍ଦ୍ଧ୍ୱରେ ରହିଥାନ୍ତି । **ଯିଏ ଯାହାଙ୍କୁ ଉପାସନା କରେ ସେ ତାହାଙ୍କ ଭଳି ହୋଇଯାଏ** । ଏହି ମାୟିକ ଗୁଣ-ରହିତ ନିର୍ଗୁଣ ବ୍ରହ୍ମଙ୍କୁ ଯେଉଁମାନେ ଉପାସନା କରନ୍ତି ସେମାନେ ନିର୍ଗୁଣ ହେବା ସ୍ୱାଭାବିକ । ଧନ, ଐଶ୍ୱର୍ଯ୍ୟ, ପଦ, ପ୍ରତିଷ୍ଠା ତଥା ସମସ୍ତ ସାଂସାରିକ ଭୋଗ -ଏ ସମସ୍ତ ହେଉଛି ପ୍ରକୃତି ଅନ୍ତର୍ଗତ । ଯାହାର ମନରେ ଏହି ପ୍ରାକୃତ ପଦାର୍ଥ ପ୍ରତି ପ୍ରେମ ଥାଏ, ସେ ଅପ୍ରାକୃତ ପରମାତ୍ମା ପ୍ରେମ କିପରି କରିପାରିବ ?

**ଯେ ପର୍ଯ୍ୟନ୍ତ ଏହି ଧନ ଐଶ୍ୱର୍ଯ୍ୟ ଆଦି ପ୍ରାକୃତ ପଦାର୍ଥ ପ୍ରତି ବୈରାଗ୍ୟ ନ ହୋଇଛି, ସେ ପର୍ଯ୍ୟନ୍ତ ପୁରୁଷ ପ୍ରକୃତି ପରର (ଉର୍ଦ୍ଧ୍ୱର) କଥା ଚିନ୍ତା କରି ନପାରେ ।** ପ୍ରାଣୀ ଧନ ସଂଗ୍ରହ ଯେ ପର୍ଯ୍ୟନ୍ତ କରେ ଯେତେବେଳ ପର୍ଯ୍ୟନ୍ତ ତାର ବିଶ୍ୱାସ ଭଗବାନଙ୍କ ଉପରେ ହୋଇନଥାଏ । ପ୍ରାରବ୍ଧବଶତଃ ଯାହା ମିଳେ, ସେଥିରେ ପେଟ ଭରଣ କରିବା । ପେଟ ଯେତିକି ମାତ୍ରରେ ପୂରଣ ହୁଏ ସେତିକି ମାତ୍ର ସଂଗ୍ରହ କରିବା ହିଁ ହେଉଛି ନ୍ୟାୟ ସଂଗତ । ଯଦିଓ ପେଟ ପୂରଣ କରିବା ବି ଏକ ପ୍ରକାର ସଂଗ୍ରହ; କିନ୍ତୁ ସେତିକି ସଂଗ୍ରହ ଆବଶ୍ୟକ ହୋଇଥାଏ । ଜଣେ ସେତିକି ସଂଗ୍ରହ କରିବା ଶାସ୍ତ୍ରାନୁମୋଦିତ । ଯିଏ ଏହାଠାରୁ ଅଧିକ ସଂଗ୍ରହ କରିବାକୁ ଇଚ୍ଛାକରେ ସେହି ଇଚ୍ଛା (ତାହା) ନ୍ୟାୟ ସଂଗତ ନୁହେଁ । ଏପରି ଯିଏ (ଯେଉଁମାନେ) ସଂଗ୍ରହ କରନ୍ତି ସେମାନେ ପ୍ରକୃତି ମଣ୍ଡଳକୁ ପାରି (ଉର୍ଦ୍ଧ୍ୱକୁ ଯିବା) ହୋଇ ପାରନ୍ତି ନାହିଁ । ସେ ଯେତେ ଉପାସନା କରୁ ପଛେ, ତାର ଲୟ (ଅଭିନିବେଶ) ପ୍ରକୃତିରେ ହିଁ ହୋଇଥାଏ । ଏ ପ୍ରସଙ୍ଗରେ ଧର୍ମରାଜ ଯୁଧିଷ୍ଠିର ଓ ଷଡୈଶ୍ୱର୍ଯ୍ୟସମ୍ପନ୍ନ ଯଦୁକୁଳ ନନ୍ଦନ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ମଧ୍ୟରେ ହୋଇଥିବା ସମ୍ବାଦ ମୁଁ ତୁମକୁ ଶୁଣାଉଛି । ଏହା ଶୁଣିଲେ ଏହି ବିଷୟ ସ୍ପଷ୍ଟ ହୋଇଯିବ ଓ ତୁମର ସକଳ ସଂଶୟର ସମାଧାନ ହୋଇଯିବ ।

ମହାରାଜ ପରୀକ୍ଷିତ ପଚାରିଲେ, '' ହେ ଭଗବାନ୍ ! ମୋ ପିତାମହ ଧର୍ମରାଜ ଯୁଧିଷ୍ଠିର ଏହି କଥା ଭଗବାନ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ କେଉଁଠାରେ କେବେ ପଚାରିଥିଲେ କୃପାକରି ଏହି ପୁଣ୍ୟପ୍ରଦ ଉପାଖ୍ୟାନକୁ ଆପଣ ମୋତେ ନିଶ୍ଚୟ ଶୁଣାନ୍ତୁ ।''

ଶ୍ରୀ ଶୁକଦେବ କହିଲେ, '' ରାଜନ୍ ! ମହାଭାରତ ଯୁଦ୍ଧ ପରେ ଯେତେବେଳେ ଧର୍ମରାଜ ଯୁଧିଷ୍ଠିର ରାଜସୂୟ ଯଜ୍ଞ କଲେ, ଏହା ସମାପ୍ତ ହୋଇଯିବା ପରେ ଭାଗବତ ଧର୍ମ ଶ୍ରବଣ କରିବା ଉଦ୍ଦେଶ୍ୟରେ ସେ ଭଗବାନ୍‌ଙ୍କୁ ଏହି ପ୍ରଶ୍ନ ପଚାରିଥିଲେ, ଯେ 'ହେ ପ୍ରଭୁ ! ବିଶେଷ କରି ଦେଖିବାକୁ ମିଳେ, ଆପଣଙ୍କ ଭକ୍ତ ସଂସାରରେ ସବୁବେଳେ ଦୁଃଖ ଭୋଗ କରୁଥାନ୍ତି । ବିଶେଷ କରି ସେମାନଙ୍କର ଦ୍ରବ୍ୟ ସମୂହର ଅଭାବ ସବୁବେଳେ ଥାଏ । ଆପଣ ଲକ୍ଷ୍ମୀପତି ହୋଇ ସୁଦ୍ଧା ଏମାନଙ୍କୁ କାହିଁକି ନିର୍ଦ୍ଧନ କରି ରଖିଥାନ୍ତି ?'

ଧର୍ମରାଜ ଯୁଧିଷ୍ଠିରଙ୍କର ଏପରି ପ୍ରଶ୍ନ ଶୁଣି ଭଗବାନ ଯଦୁନନ୍ଦନ ଶ୍ରୀକୃଷ୍ଣ ହସିବାରେ ଲାଗିଲେ । ସେ ହସି ହସି କହିଲେ, ''ରାଜନ୍ ! ମୁଁ ଜାଣି ଶୁଣି ମୋ ଭକ୍ତଙ୍କୁ ନିର୍ଦ୍ଧନ କରିଦିଏ । ମୋତେ କେହି ଭକ୍ତି କଲେ ମୁଁ ତାକୁ କୃପା କରେ । ମୋ କୃପା ପ୍ରାପ୍ତି ପ୍ରତ୍ୟକ୍ଷ ପ୍ରମାଣ ହେଉଛି, ଯେ ମୁଁ ମୋ ଭକ୍ତର ଧୀରେ ଧୀରେ ସମସ୍ତ ଧନ ଅପହରଣ କରିଦିଏ । ତାକୁ ଦରିଦ୍ର, ନିକିଞ୍ଚନ କରିଦିଏ ।''

ଧର୍ମରାଜ ପଚାରିଲେ, '' ମଣିଷଙ୍କୁ ନିର୍ଦ୍ଧନ କରିବାରେ ଆପଣଙ୍କ କୃପା କିପରି କାର୍ଯ୍ୟକରେ । ନିର୍ଦ୍ଧନ ଜୀବନ ଅତି କଷ୍ଟକର ହୋଇଥାଏ । ଲୋକମାନେ ନିର୍ଦ୍ଧନତାର ଅଧୀନ ହୋଇ ବଡ଼ ବଡ଼ ପାପ କରି ପକାନ୍ତି ।''

ଏପରି କଥା ଶୁଣି କୃଷ୍ଣଚନ୍ଦ୍ର କହିଲେ, ''ନା ରାଜନ୍ ! ସଦାଚାରୀ ପୁରୁଷର ପ୍ରାଣ କଣ୍ଠାଗ୍ରତ ହୋଇଗଲେ ସୁଦ୍ଧା ସେ ଧର୍ମ ଛାଡେ ନାହିଁ । ଧନର ଦରିଦ୍ରତା ଖରାପ ହୋଇନଥାଏ, ଖରାପ ହୋଇଥାଏ ମନର ଦରିଦ୍ରତା । ଯେ ମନରେ ଦରିଦ୍ର ନୁହେଁ, ଧନ ପାଖରେ ନଥିଲେ ବି ସେ ସବୁଠାରୁ ବଡ଼ ଧନୀ ହୋଇଥାଏ । ଯିଏ ମନର ଦରିଦ୍ର ତାକୁ ଯେତେ ଧନ ଦେଲେ ବି ତା ପାଖରେ ଯେତେ ଧନ ଥିଲେ ବି, ସେ ଦରିଦ୍ର ହିଁ ରହିଥାଏ । ଯାହା ପାଖରେ ଧନ ଥାଏ ସେ ଅତି ଅଭିମାନୀ ହୋଇଥାଏ । ସେ କେବଳ ଧନିକଙ୍କ ସହିତ ସମ୍ବନ୍ଧ ରଖେ । ଧନ ଯୋଗୁଁ ତାକୁ ସମସ୍ତେ ସମ୍ମାନ କରନ୍ତି । ଫଳରେ ତାର ଅଭିମାନ ଆହୁରି ବଢ଼େ । ଏବଂ ସେ ଗୁରୁଜନଙ୍କର, ସାଧୁସନ୍ଥଙ୍କର, ଏପରିକି ମୋତେ ମଧ୍ୟ ଅପମାନ କରିବାକୁ ସଂକୋଚ କରେନାହିଁ । ଧନୀ ପୁରୁଷର ଏକମାତ୍ର ତାର ଧନ ଉପରେ ଭରସା, ବିଶ୍ୱାସ ରହିଥାଏ । ସେ ଯେଉଁଆଡ଼େ ଯାଏ ଧନକୁ ସାଙ୍ଗରେ ଧରି ଯାଏ । ଧନକୁ ଛାଡ଼ି (ବିନା ଧନରେ) ପାଦେ ବୋଲି ଆଗକୁ ଯାଏ ନାହିଁ । ତା'ର ମୋ ଉପରେ ଭରସା ନହୋଇ ଧନ ଉପରେ ଭରସା ରହିଥାଏ । ସେ ଅତି ଅଭିମାନରେ କହେ, 'ମୁଁ ଚାନ୍ଦୀର ଯୋତାମାରି ଯାହା ହାତରେ ଯାହା କରିବା କଥା କରିପାରେ ।' ଯଦି ମୋ ଭକ୍ତର ମୋର (ମୁଁ) ଚୈତନ୍ୟଘନ ଉପରେ ବିଶ୍ୱାସ ନ ହୋଇ ଜଡ଼ ଧନ ଉପରେ ବିଶ୍ୱାସ ହୁଏ, ତେବେ ସେ ମୋର ଭକ୍ତି କିପରି କରିବ ? ବିଷୟ ଭୋଗରେ ବିଜଡ଼ିତ ରହିବା ଦ୍ୱାରା ଯଦି ଭକ୍ତି ହେଉଥାନ୍ତା ତେବେ ମନୁ, ପ୍ରିୟବ୍ରତ, ଉତ୍ତାନପାଦ, ତଥା ଅନ୍ୟାନ୍ୟ ସପ୍ତଦ୍ୱୀପବତୀ ପୃଥିବୀର ସମ୍ରାଟ୍ ରାଜ୍ୟସମ୍ପତ୍ତି ତ୍ୟାଗକରି ବଣକୁ କାହିଁକି ଯାଇଥାନ୍ତେ ? ଏଇଥିପାଇଁ ମୁଁ ଭକ୍ତଙ୍କ ଧନ ଅପହରଣ କରିଥାଏ । ଯେତେବେଳେ ସେ ନିର୍ଦ୍ଧନ ହୋଇଯାଏ, ଧନ ବିନା ତାକୁ ଦୁଃଖ ପରେ ଦୁଃଖ ଭୋଗ କରିବାକୁ ପଡ଼େ (ହୋଇଥାଏ) । ଏହି ସଂସାର ହେଉଛି ସ୍ୱାର୍ଥପର । ଯେ ପର୍ଯ୍ୟନ୍ତ ପଇସା ପାଖରେ ଥାଏ, ସେ ପର୍ଯ୍ୟନ୍ତ ସମସ୍ତେ ତା ସହିତ ସମ୍ବନ୍ଧ ଯୋଡ଼ିରଖିବାକୁ ଲାଳାୟିତ ଥାଆନ୍ତି । ଯେତେବେଳେ ସେ ନିର୍ଧନ ହୋଇଯାଏ, ତାର ଆତ୍ମୀୟ ସ୍ୱଜନମାନେ, ବନ୍ଧୁବାନ୍ଧବ ମାନେ ତାକୁ ପରିତ୍ୟାଗ କରିଦିଅନ୍ତି । ତା କଥା କେହି ବି ପଚାରନ୍ତି ନାହିଁ । ପ୍ରଥମେ (ପୂର୍ବେ) ଯେଉଁମାନେ ତାକୁ ଖୁବ୍ ଆଦର କରୁଥିଲେ, ସେଇମାନେ ଏବେ ତାକୁ ଦେଖି ନଦେଖିଲା ଭଳି ମୁହଁ ମୋଡ଼ି ଦିଅନ୍ତି । ଫଳରେ ସେ ନିଜକୁ ଅତି ଅପମାନିତ ହେଉଥିବା ବୋଧକରେ । ସେ ଅନୁଭବ କରେ ଯେ, ମୋର ଧନ ନ ଥିବାରୁ ସର୍ବତ୍ର ମୋର ଅପମାନ ହେଉଛି । ଏଣୁ ମୁଁ

ମୋର ସମସ୍ତ ଶକ୍ତି ଲଗେଇ ଧନ ଉପାର୍ଜନ କରିବି । ଧନ ପ୍ରାପ୍ତି ପାଇଁ ସବୁପ୍ରକାର ଉଦ୍ୟୋଗ କରିବି । ଏପରି ଭାବି ସେ ଉଦ୍ୟୋଗ କରେ, କିନ୍ତୁ ଏଥିରେ ସେ ଅସଫଳତା ପ୍ରାପ୍ତ ହୁଏ । ଅସଫଳ ହେଲେ ବି ସେ ଅଧିକରୁ ଅଧିକ ଉଦ୍ୟୋଗ କରିବାରେ ଲାଗେ । ଏବଂ ଅଧିକରୁ ଅଧିକ ଅସଫଳତାର ଶୀକାର ହୁଏ । ଏହିଭଳି ବାରମ୍ବାର ଉଦ୍ୟୋଗ କରି ହତାଶ ହେବାପରେ ଧନ ସଂଗ୍ରହ ଚେଷ୍ଟାରୁ ବିରତ ହୋଇଯାଏ । ଏବଂ ବିରକ୍ତ ହୋଇ ଜଣେ ସମଦର୍ଶୀ ସାଥୀ ଖୋଜେ ।

''ସଂସାରରେ ନିର୍ଧନର ସାଥୀ କିଏ ଦିଏ ? କେବଳ ସାଧୁ, ସନ୍ଥ ଓ ଭଗବଦ୍ ଭକ୍ତ ହିଁ ଏପରି ହୋଇଥାନ୍ତି, ଯେଉଁମାନେ ଧନୀ, ନିର୍ଦ୍ଧନ ସମସ୍ତଙ୍କୁ ପ୍ରେମ କରନ୍ତି । ସମସ୍ତଙ୍କୁ ସ୍ନେହପୂର୍ବକ ପାଖରେ ବସାନ୍ତି । ସେତେବେଳେ ସେ ସମ୍ପତ୍ତି ବିମୁଖ ସାଧୁଙ୍କ ଶରଣାଗତ ହୁଏ । ଯାହା ପାଖରେ ବିଷୟ-ଭୋଗର ସମସ୍ତ ପ୍ରକାର ସାମଗ୍ରୀ ଥାଏ, ସେ ବିରକ୍ତ ସାଧୁ ସନ୍ଥଙ୍କ ପାଖକୁ ଯିବ କାହିଁକି ? ଯଦି ବା ଯାଏ, ତେବେ ସାଧୁବେଶଧାରୀ ଧନିକ ଲୋକ ପାଖକୁ ଯାଏ, ଯିଏ ତା ଭଳି ଆଡ଼ମ୍ବରରେ ରହୁଥାଏ । ଆଶ୍ରମ ମଠ କରିଥାଏ, ପରମାର୍ଥଙ୍କ ନାମରେ ବ୍ୟବସାୟ କରୁଥାଏ, ମିଛ-ସତ କହୁଥାଏ, ନାନା ପ୍ରକାର ମନଭୁଲାଣିଆ କଥା କହି ଲୋକଙ୍କ ମନକୁ ଭୁଲାଇବାରେ ଲାଗିଥାଏ । ସେ ହିଁ ତ ତାର ଭାଇ କିମ୍ବା ବନ୍ଧୁ । ଶୁଣ୍ଡିର ସାକ୍ଷୀ ମାତାଲ ନ୍ୟାୟ ।କେହି ତୁଳା ଛୁଞ୍ଚି ସୂତାର ବ୍ୟାପାର କରୁଛି ତ ଆଉ କେହି ପରମାର୍ଥ ନାମରେ ଦଲାଲୀ କରୁଛି । ଏପରି ନାମକୁ ମାତ୍ର ସାଧୁ ତ ବ୍ୟବସାୟୀ ହୋଇଥାନ୍ତି । ଏପରି ସାଧୁ ବ୍ୟବସାୟୀମାନେ ବି ନିର୍ଦ୍ଧନକୁ ପଚାରନ୍ତି ନାହିଁ । ସେଠାରେ ମଧ୍ୟ ଧୋବଧାବଳିଆ ଗୋରା ଧନିକଙ୍କର ପୂଜା ହେଉଥାଏ । ଧନ ଉପାର୍ଜନ ନିମନ୍ତେ ଚେଷ୍ଟାରୁ ବିରତ, ବିରକ୍ତ ଲୋକକୁ ଏ ସଂସାରରେ କେବଳ ବିରକ୍ତ, ଅକିଞ୍ଚନ ଭଗବଦ୍‌ଭକ୍ତ ହିଁ ଆଶ୍ରୟ ଦେଇଥାଏ । ସେହିପରି ଲୋକହିଁ ତାକୁ ଧୈର୍ଯ୍ୟ ଦେଇଥାଏ । ଏପରି ଜଣେ ଭକ୍ତଙ୍କ ସହିତ ଯେତେବେଳେ ଯୋଗାଯୋଗ ହୋଇଯାଏ, ସଂପର୍କ ହୋଇଯାଏ, ସେତେବେଳେ ମୁଁ ତା ପ୍ରତି କୃପା କରେ ।''

''ସାଧୁମାନେ ଯେଉଁଠି ଥିଲେ ବି କେବଳ ଗୋଟିଏ କଥା ଚର୍ଚ୍ଚା କରନ୍ତି । ସେମାନେ ବସିବା, ଉଠିବା, ଚାଲିବା, ବୁଲିବା ସମୟରେ କେବଳ ଭଗବାନଙ୍କର ହିଁ କଥା ହେଉଥାନ୍ତି । ସେମାନେ କେବଳ ଭଗବାନ୍‌ଙ୍କର ନାମକୁ କୀର୍ତ୍ତନ କରୁଥାନ୍ତି, ଭଗବାନ୍‌ଙ୍କର ଗୁଣଗାନ କରୁଥାନ୍ତି । ସେମାନଙ୍କ ସାଙ୍ଗରେ ରହି ରହି, ସେମାନଙ୍କର କଥା ଶୁଣି ଶୁଣି ଏମାନଙ୍କୁ ପରମସୂକ୍ଷ୍ମ, ଚିନ୍ମାତ୍ର, ସତ୍ୟସ୍ୱରୂପ ଆଉ ଅନନ୍ତ ପରବ୍ରହ୍ମ ପ୍ରାପ୍ତି ହୋଇଥାଏ ।

''ଏହିଭଳି, ମୋର ଆରାଧନା କରିବା ସହଜ, ସରଳ ନୁହେଁ । ଯିଏ ମୋର ଭଜନ କରିବାକୁ ଚାହେଁ, ସେ ସର୍ବ ପ୍ରଥମ ତାର ମୁଣ୍ଡଟିକୁ କାଟି ହାତ ପାପୁଲିରେ ରଖିଦେଇଥିବା

ଦରକାର । ସେ ସ୍ଥିର ନିଶ୍ଚିତ ଜାଣିଥିବା ଦରକାର ଯେ 'ମୋତେ ପ୍ରତ୍ୟେକ ପଦରେ ନିର୍ଧନତା ଜନିତ ଦୁଃଖ କ୍ଳେଶ ଭୋଗ କରିବାକୁ ହେବ । କଣ୍ଟକମୟ ଶଯ୍ୟାରେ ଶୟନ କରିବାକୁ ହେବ ।' ଲୋକମାନେ ଏହା ଜାଣି ଡରିଯାଆନ୍ତି । ସେମାନେ ଭାବନ୍ତି-ଅମୁକ ଲୋକ ବାର ବର୍ଷ ଧରି ରାମ-ରାମ ହେଉଛି, ତାକୁ କ'ଣ ମିଳିଚି କି ! ଏ ଦ୍ୱାରରୁ ସେ ଦ୍ୱାରକୁ ଯାଇ ଭିକ ମାଗି ମାଗି ବଡ଼ କଷ୍ଟରେ ଦିନ କଟାଉଛି । କିନ୍ତୁ ଅମୁକ ମାତ୍ର ଛ'ମାସ ସାଧନାରେ ଭୂତଙ୍କୁ ସାଧି କରିଦେଇଛି, ନିଜ ହାତମୁଠାରେ ରଖିପାରିଛି । ଏବେ ସିଏ ଯାହା ଚାହୁଁଛି ତାହା ଭୂତ ତତ୍‌କ୍ଷଣାତ୍ ଆଣି ଯୋଗାଇ ଦେଉଛି । ଏଣୁ ଭଗବଦ୍‌ଭକ୍ତିକୁ ଛାଡ଼ି ଭୂତ, ପ୍ରେତ୍, ପିଶାଚ ତଥା ଅନ୍ୟାନ୍ୟ ଧନ ପ୍ରଦାନକାରୀ ଦେବୀଦେବତାଙ୍କ ପୂଜା କରିବା ଉଚିତ ।' ଏପରି କଥା ଭାବି ସେମାନେ ଶୀଘ୍ର ପ୍ରସନ୍ନ ହୋଇ ପାରୁଥିବା ଦେବଦେବୀଙ୍କର ପୂଜା କରନ୍ତି । ଦେବତା ଯେତେବେଳେ ତାଙ୍କୁ ବର ମାଗିବା ପାଇଁ କୁହନ୍ତି, ସେତେବେଳେ ସେମାନେ ଧନ, ଐଶ୍ୱର୍ଯ୍ୟ, ଦୀର୍ଘାୟୁ, ସାଂସାରିକ ଭୋଗ ତଥା ଅନେକ ପ୍ରକାର ପରପୀଡ଼ନକାରୀ ଶକ୍ତିର ଯାଚନା କରନ୍ତି । ଆଉ ଏପରି ଲୋକଙ୍କୁ ପୂଜାରେ ପ୍ରସନ୍ନ ହୋଇଥିବା ଦେବତା ଧନ ବୈଭବ ଆଦି ମଧ ଦିଅନ୍ତି । ପରିଣାମରେ ଏପରି ହୁଏଯେ, ସେମାନେ ଧନ ବୈଭବ ପ୍ରାପ୍ତ ହୋଇ ଉନ୍ମତ୍ତ ହୋଇଯାଆନ୍ତି । **ଶାସ୍ତ୍ରରେ ଲେଖାଅଛି, ଖଳର ଶକ୍ତି କେବଳ ପରକୁ ପୀଡ଼ା ଦେବା ପାଇଁ ହିଁ ବ୍ୟବହୃତ ହୋଇଥାଏ ।** ସେତେବେଳେ ସେହି ଧନର ମଦରେ ଅନ୍ଧ ହୋଇଥିବା ଉଦ୍ଧତ ପ୍ରମତ୍ତ ପୁରୁଷ ତାକୁ ବର ପ୍ରଦାନ କରିଥିବା ଦେବତାଙ୍କୁ ବି ଅପମାନିତ କରିବାକୁ କୁଣ୍ଠିତ ହୁଏନାହିଁ ।

''ରାବଣ ଶିବଙ୍କଠାରୁ ବର ଲାଭ କରିଥିଲା । ଆଉ ସେହି ବରର ପ୍ରଭାବରେ ସେ ଶିବଙ୍କ ସହିତ କୈଳାସପର୍ବତକୁ ଉଠାଇବାକୁ ଚେଷ୍ଟା କରିଥିଲା । ବାଣାସୁର ଶିବଙ୍କୁ ପୂଜାକରି ସହସ୍ର ବାହୁ ତଥା ଅପ୍ରମିତ ବଳ ପ୍ରାପ୍ତ ହୋଇଥିଲା । ଏହାପରେ ସେ ଶିବଙ୍କ ସହିତ ଯୁଦ୍ଧ କରିବାପାଇଁ ପ୍ରସ୍ତୁତ ହୋଇଗଲା । ଏଣୁ, ମୁଁ ମୋ ଭକ୍ତଙ୍କୁ ଧନ-ବୈଭବ ଦିଏ ନାହିଁ । କେବଳ ଏତିକି ମାତ୍ର ଦିଏ ଯେତିକିରେ ସେ ତାର ଜୀବନ ନିର୍ବାହ କରିପାରିବ । ଅଧିକ ଧନ-ବୈଭବ ହେଲେ ସେଥିରେ ତା ଚିତ୍ତ ମଜ୍ଜିଯିବ ଓ ମୋତେ ସ୍ମରଣ କରିବାରେ ବାଧା ଉପୁଜିବ ।''

ଭଗବାନ ଶ୍ରୀକୃଷ୍ଣ ଧର୍ମରାଜ ଯୁଧିଷ୍ଠିରଙ୍କୁ ଏତିକି କହି ନୀରବ ହୋଇଗଲେ । ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ସମସ୍ତ କଥାକୁ ଅଭିନନ୍ଦନ କଲେ । ତାଙ୍କ ମନରେ ଯେଉଁ ଏକ ମହାନ୍ ସଂଶୟ ଥିଲା ଯେ - ଆମେ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଆମର ସର୍ବସ୍ୱ ବୋଲି ମନେକରୁଥିଲେ ବି ଆମକୁ ଅଧିକାଂଶ ସମୟ ବଣରେ ରହିବାକୁ ପଡ଼ିଲା, ଭିକ୍ଷାବୃତ୍ତି କରି ବଞ୍ଚିବାକୁ ହେଲା, ଅତି କଷ୍ଟରେ ଏତେ ଦିନ ରହିବାକୁ ହେଲା । ଅପର ପକ୍ଷରେ ଦୁର୍ଯ୍ୟୋଧନ ଭଗବାନଙ୍କଠାରେ ଦ୍ୱେଷ ରଖିଥିଲା, ଭଗବାନଙ୍କର ବିରୁଦ୍ଧାଚରଣ କରିଥିଲା, ତେବେ ସୁଦ୍ଧା ଜୀବନର ଶେଷ ପର୍ଯ୍ୟନ୍ତ ରାଜସୁଖ ଭୋଗ କରୁଥିଲା-ଏପରି ସଂଶୟ ଭଗବାନଙ୍କ ଉତ୍ତରରେ ଦୂର ହୋଇଯାଇଥିଲା ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ମହାରାଜ ପରୀକ୍ଷିତ ପଚାରିବାରୁ ଶ୍ରୀ ଶୁକଦେବ ଏହିପରି ଉତ୍ତର ଦେଇଥିଲେ । ଏହାପରେ ସେ କହିଥିଲେ 'ରାଜନ୍ ! ଅଭିଶାପ ଓ ବର ଦେବାରେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ସମାନ । ତିନିହେଁ ଯଥାର୍ଥ ରୂପରେ ସମର୍ଥ ଓ ତିନିହେଁ ଅଭିମତ ଫଳ ପ୍ରଦାନ କରିପାରନ୍ତି । କିନ୍ତୁ ଶିବ ତତ୍କାଳ ବାଞ୍ଛିତ ବର ଦେଇଦିଅନ୍ତି । ସେ ତ ଆଶୁତୋଷ । ସେ ସାମାନ୍ୟ ମାତ୍ର ପୂଜା-ସେବାରେ ପ୍ରସନ୍ନ ହୋଇଯାଆନ୍ତି । ଚଳୁଏ ଜଳ ଚଢ଼ାଇ ଏଣୁ ତେଣୁ ଜଙ୍ଗଲୀ ଫୁଲ କିଛି ତାଙ୍କ ଉପରେ ପକାଇ ଦେଲେ ଭୋଳାନାଥ ପ୍ରସନ୍ନ ହୋଇଯାଆନ୍ତି । ଆମର ବ୍ରହ୍ମା ପିତା ମଧ୍ୟ ଠିକ୍ ଏହିଭଳି । ଯିଏ ଯାହା ମାଗିଲା ତଥାସ୍ତୁ କହି ଦିଅନ୍ତି । କିନ୍ତୁ ଆମର ଏହି ଯେଉଁ ଭଗବାନ୍ ବିଷ୍ଣୁ ଅଛନ୍ତି ଇଏ ସହଜରେ ପ୍ରସନ୍ନ ହୁଅନ୍ତି ନାହିଁ । ଇଏ ଅଳ୍ପ ସେବା-ପୂଜାରେ ସନ୍ତୁଷ୍ଟ ହେଲାବାଲା ନୁହନ୍ତି । ଯେ ପର୍ଯ୍ୟନ୍ତ ଜଣେ ସର୍ବାତ୍ମଭାବରେ ଆତ୍ମସମର୍ପଣ କରେ ନାହିଁ, ସେ ପର୍ଯ୍ୟନ୍ତ ତାଙ୍କୁ ଦର୍ଶନ ବି ଦିଅନ୍ତି ନାହିଁ । ଶିବଙ୍କର ସରଳତାର ସୁଯୋଗ ନେଇ ତାଙ୍କୁ ବେଳେ ବେଳେ ଅତି ଅପ୍ରାସଙ୍ଗିକ ଅବସ୍ଥାରେ ବି ଲୋକମାନେ ପକାଇ ଦିଅନ୍ତି । ତାଙ୍କଠାରୁ ବର ଲାଭ କରି ତାଙ୍କ ଉପରେ ପରୀକ୍ଷା କରନ୍ତି । ଅନେକ ଥର ବର ପ୍ରଦାନ କରିବା ପରେ ସେ ପଶ୍ଚାତାପ ବି କରିଛନ୍ତି । ବୃକାସୁରଙ୍କୁ ବର ଦେଇ ସେ ଅତି ସଂକଟରେ ପଡ଼ିଯାଇଥିଲେ । ସେତେବେଳେ ଭଗବାନ କୌଣସି ପ୍ରକାର ଉପାୟରେ ସେହି ଭୟଙ୍କର ସଂକଟ ଦୂର କରିଥିଲେ ।

ଏପରି କଥା ଶୁଣି ମହର୍ଷି ଶୌନକ ପଚାରିଲେ ,'' ହେ ସୂତ ମହାଶୟ ! ଏଇ ବୃକାସୁର କିଏ ? ଶିବଙ୍କଠାରୁ ଇଏ କି ପ୍ରକାର ବର ପାଇଥିଲା ? କୃପାକରି ଏହି ପ୍ରସଙ୍ଗ ଶୁଣାନ୍ତୁ ।''

ମହର୍ଷି ସୂତ କହିଲେ, ''ଠିକ୍‌ଅଛି । ମୋର ପୂଜ୍ୟ ଗୁରୁଦେବ ମହାରାଜ ପରୀକ୍ଷିତଙ୍କୁ ଏହି ପ୍ରସଙ୍ଗ ଯେଉଁଭଳି କହିଥିଲେ ଠିକ୍ ସେହିଭଳି ମୁଁ ଆପଣମାନଙ୍କୁ ଶୁଣାଉଛି, ଆପଣମାନେ ଦତ୍ତଚିତ୍ତ ହୋଇ ତାହା ଶ୍ରବଣ କରନ୍ତୁ ।''

## ଛପ୍ପୟ

*ବୋଲେ ଶୁକ - ସୁନୁ ନୃପତି ଅଜ ଔଘରଦାନୀ ।*
*ହୋହିଁ ଶୀଘ୍ର ସନ୍ତୁଷ୍ଟ ଲହହିଁ ବର ଖଲ ଅଭିମାନୀ ।।*
*ପାଇ ଅମିତ ଐଶ୍ୱର୍ଯ୍ୟ କରେଂ. ଅପମାନ ସବନି କୋ ।*
*ପ୍ରକୃତି ପରେ ପ୍ରଭୁ ବିଷ୍ଣୁ ଟିକୈ ନହିଁ ଚିତ ଖଲନି କୋ ।।*
*କରୈଁ ବିଷ୍ଣୁ ଜାପୈ କୃପା, ନିଷଞ୍ଚନ ତାକୂଁ କରେଂ ।*
*ସବକୀ ଆଶା ଛୋଡ଼ି ଜବ, ଆବେ ତବ ସବ ଦୁଖ ହରେଂ ।।*



# ବୃକାସୁର କଥା

**ଅତ୍ର ଚୋଦାହରନ୍ତୀମମିତିହାସଂ ପୁରାତନମ୍ ।**
**ବୃକାସୁରାୟ ଗିରିଶୋ ବରଂ ଦତ୍ତ୍ୱାଽଽପ ସଂକଟମ୍ ।।☆**

(ଶ୍ରୀ ଭା : ୧୦ମ. ସ୍କ. ୮୮ ଅ. ୧୩ ଶ୍ଳୋକ)

**ଛପ୍‌ପୟ**

*ସୁନୋ ଏକ ଇତିହାସ ପରେ ହର ସଂକଟ ଦୈ ବର ।*
*ଆଶୁତୋଷ ଶିବ ସମୁଝି କରୈ ତପ ଉଗ୍ର ବୃକାସୁର ।।*
*ତନୁ କୋ କାଟୈ ମାଂସ ଅଗ୍ନି ମେଁ ହୋମୈ ତାକୂଁ ।*
*ବର୍ସୈ ତୀର୍ଥ କେଦାର ଭୟେ ଛୈ ଦିନ ୟୋଂ ବାକୂ ।।*
*ଶିବ ଦରଶନ ଜବ ନହିଁ ଦୟେ, ସତବେଂ ଦିନ ଗହି ଖଡ଼୍‌ଗ ଖଲ ।*
*ଶିର କାଟନ ଲାଗେୟା ଜବହିଁ, ପ୍ରକଟେ ଶଙ୍କର ଶିବ ବିମଲ ।।*

ଏହି ଜଗତ ଏକ ବିଶେଷ ନିୟମର ଅଧୀନରେ ରହି ଚାଲିଥାଏ । ସଂସାରର ନିୟମ ହେଉଛି, ଯିଏ ଯେତେ ଦେଇଥାଏ ସେ ସେତିକି ପାଏ । ନ୍ୟାୟ ପୂର୍ବକ ଯେତିକି ଶ୍ରମ କରିବା ସେତିକି ଆମକୁ ପ୍ରାପ୍ତ ହେବ । ଯିଏ ଏହି ନିୟମକୁ ନ ମାନି କମ୍ ଶ୍ରମ କରେ, ହେଲେ ପାରିଶ୍ରମିକ ଅଧିକ ଚାହେଁ, ସେତେବେଳେ ତାକୁ ଅନ୍ୟାୟର ଆଶ୍ରୟ ନେବାକୁ ହୋଇଥାଏ । **ଅନ୍ୟାୟ ପୂର୍ବକ ପାଇଥିବା ବିଦ୍ୟା ଫଳପ୍ରସୂ ହୋଇନଥାଏ ।** ଯିଏ ଅନିୟମିତ ଲାଭ କରୁଥାଏ, ଉତ୍କୋଚ ନେଇ ଧନ ସଂଗ୍ରହ କରେ, ଉପରେ ଉପରେ ତାହାତ ସୁଖପ୍ରଦ ଜଣାଯାଏ ମାତ୍ର ପରିଣାମତଃ ଅତି ଦୁଃଖଦାୟୀ ହୋଇଥାଏ । କେତେକ ଲୋକ କାହାର କାହାର ସରଳତାରେ, ସାଧୁ ସ୍ୱଭାବର ସୁଯୋଗ ନେଇ ଅନୁଚିତ ଲାଭ ସଂଗ୍ରହ କରି ଖୁବ୍ ପ୍ରସନ୍ନ ହୋଇଥାନ୍ତି, ଆଉ ମନେ ମନେ ସନ୍ତୁଷ୍ଟ ହୋଇ କହି ହୁଅନ୍ତି-''ଦେଖ ! ମୁଁ ତାକୁ କିପରି ବୋକା କରିଦେଇଛି ।'' ସେତେବେଳେ ସେମାନେ ଭାବିପାରନ୍ତି ନାହିଁ ଯେ ''ଆରେ ! ତୁ ନିଜକୁ ନିଜେ ତ ବୋକା ହୋଇଛୁ । କମ୍ ପରିଶ୍ରମ କରି ତୁ ଛନ୍ଦ କପଟ କରି ଯେଉଁ ଅଧିକ ବସ୍ତୁ ସଂଗ୍ରହ କରିଛୁ ସେହି ଛନ୍ଦ-କପଟ ହିଁ ତ ତୋର ସର୍ବନାଶର କାରଣ ହେବ ।''

---

☆ କହିଲେ ଇତିହାସ ବାଣୀ । ତାହାଙ୍କ ମୁଖୁଁ ମୁହିଁ ଶୁଣି ।।
ଜାଣଇ ଈଶ୍ୱର ବେଭାର । ଶୁଣ କହିବା ତୋ ଛାମୁର ।।
ବୃକାସୁରକୁ ପୂର୍ବ କାଳେ । ଈଶ୍ୱର ତାର ତପ ଫଳେ ।।
ପ୍ରସନ୍ନ ହୋଇ ବର ଦେଲେ । ବିଷମ ସଙ୍କଟେ ପଡ଼ିଲେ ।।

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୯୪ ଅ.)

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଏବେ ମୁଁ ଆପଣମାନଙ୍କୁ ବୃକାସୁର ଅସୁର ବୃତାନ୍ତ କହୁଛି । ଦିତିଙ୍କ ବଂଶରେ ଶକୁନି ନାମକ ଜଣେ ବଳ ପ୍ରତାପୀ ଦୈତ୍ୟ ଥିଲା । ସେ ଜଣେ ଶୂରବୀର, ପରାକ୍ରମୀ ଓ ବଳବାନ ଥିଲା । ତାର ଏକମାତ୍ର ପୁଅର ନାମ ହେଉଛି ବୃକାସୁର । ସେ ବି ଖୁବ୍ ବଳବାନ ଥିଲା । ଅସୁରଙ୍କର ଅତି ସ୍ୱାଭାବିକ ଇଚ୍ଛା ହେଉଛି-ସମସ୍ତେ ଆମର ଅଧୀନରେ ରୁହନ୍ତୁ । ଆମ ଶରୀର ଅନନ୍ତ କାଳ ପର୍ଯ୍ୟନ୍ତ ଅମର ରହୁ । ଆମେ ହିଁ ସକଳ କଥା ଭୋଗ କରୁ । ଆମଠାରୁ ଅଧିକ ଭୋଗ ସାମଗ୍ରୀ ଅନ୍ୟ କାହାପାଖରେ ଥିଲେ ତାକୁ ଖାଇ ତା'ଠାରୁ ସବୁ ହରଣ କରି ନେବା । ବୃକାସୁରର ମଧ୍ୟ ଏହିପରି ଇଚ୍ଛା ଥିଲା । ସେ ତେଣୁ ମନେ ମନେ ଭାବିଲା- '' ଆମେ ଅତି ଶୀଘ୍ର ଶ୍ରେଷ୍ଠ ହୋଇ ଯାଆନ୍ତେକି ! ମୋ ଠାରୁ ବଡ଼ ହୋଇ ଇନ୍ଦ୍ର ଅଛି, ବରୁଣ ଅଛି, କୁବେର ଅଛି, ଯମରାଜ ତଥା ଅନ୍ୟାନ୍ୟ ଦିଗପାଳମାନେ ଅଛନ୍ତି । ଇନ୍ଦ୍ରକୁ ତ ସହଜରେ ଜୟ କରିହେବ ନାହିଁ । ତପସ୍ୟା କରି ବର ଲାଭ କଲେ ତାକୁ ଜିତି ହେବ ! ଅନେକ ଲୋକ ଲକ୍ଷେ କି କୋଟିଏ ବର୍ଷ କଠିନ ତପସ୍ୟା କରି ବର ପାଇଛନ୍ତି, ପୁଣି ଅତି ନଗଣ୍ୟ ବର ପାଇଛନ୍ତି । କିନ୍ତୁ ମୁଁ ଶୁଣିଛି, ଆମ ବଂଶରେ ହିରଣ୍ୟକଶିପୁ, ହିରଣାକ୍ଷ ଅତି ଉଗ୍ର ତପସ୍ୟା କରିଥିଲେ । ସେମାନଙ୍କ ମାଂସ ଉଇମାନେ ଖାଇଯାଇଥିଲେ । ଏପରି ତପସ୍ୟା ମୋର କରିବାର ନାହିଁ । ତେବେ କିଛିକାଳ ଉଗ୍ରତପସ୍ୟା କଲେ ମୁଁ ବିଶ୍ୱ ବିଜୟୀ ହୋଇଯିବି ।''

ଏପରି ଅନେକ କଥା ଚିନ୍ତାକରି ସେ ତପସ୍ୟା କରିବା ନିମନ୍ତେ ଉତ୍ତରାଖଣ୍ଡକୁ ଚାଲିଲା । ଉତ୍କଟ ସାଧନା କରିବା ଉଦ୍ଦେଶ୍ୟରେ ଯିଏ ଘରୁ ବାହାରେ ସେପରି ଦୃଢ଼ ନିଶ୍ଚୟ କରିଥିବା ଲୋକଙ୍କୁ ଉପଦେଷ୍ଟା ଗୁରୁ ରୂପରେ ନାରଦ ସର୍ବପ୍ରଥମେ ଭେଟି ଥାନ୍ତି । **ଜୀବଙ୍କୁ ଭଗବାନଙ୍କ ସହିତ ଭେଟ କରାଇଦେବା ହେଉଛି ନାରଦଙ୍କର ଏକମାତ୍ର କାମ ।** ଯେଉଁମାନେ ଭକ୍ତି ଭାବରେ ଭଜନ କରନ୍ତି, ସେମାନଙ୍କୁ ନାରଦ ଭକ୍ତି ଶିଖାନ୍ତି । ଯେଉଁମାନେ କଳହ ପ୍ରିୟ, ଭଗବାନଙ୍କ ସହିତ ଶତ୍ରୁତା କରନ୍ତି, ଦ୍ୱେଷ କରନ୍ତି ସେମାନଙ୍କୁ ଭଗବାନଙ୍କ ବିରୁଦ୍ଧରେ ମତାଇ ଭଗବାନଙ୍କ ସମ୍ମୁଖରେ ପହଞ୍ଚାଇ ଦିଅନ୍ତି । ଜୀବ କୌଣସି ଉପାୟରେ ଭଗବାନଙ୍କ ପାଖରେ ପହଞ୍ଚିଗଲେ ତା'ର ଉଦ୍ଧାର ହୋଇଯିବ ।

''କେଉଁ ଦିଅଁଙ୍କୁ ତପ କରିବି, କେଉଁ ଦିଅଁଙ୍କ ନାମ ବା ମନ୍ତ୍ର ଜପ କରି କରି ତପ କରିବି,'' ଏହିକଥା ମନେ ମନେ ଭାବି ଭାବି ବୃକାସୁର ଯାଉଥିଲା । କାରଣ ସେ ଏପରି ଦେବତାକୁ ଜପ କରିବା ପାଇଁ ଚାହୁଁଥିଲା ଯିଏ ତାକୁ ତତ୍କାଳ ଫଳ ପ୍ରଦାନ କରିବେ । ବିଳମ୍ବରେ ନୁହଁ । ଠିକ୍ ଏହି ସମୟରେ ନାରଦ ଆସୁଥିବା ଦେଖିବାକୁ ପାଇଲା । ନାରଦଙ୍କୁ ପାଖରେ ଦେଖି ସେ କହିଲା ''ଆଜ୍ଞା ! ଦଣ୍ଡବତ ।''

ନାରଦ ସହାସ୍ୟ ବଦନରେ କହିଲେ, ''ବାପା ! ଆନନ୍ଦରେ ରୁହ । ଆଉ, କୁଆଡ଼େ ଯାଉଛ ? ତୁମ ପିତା ଅସୁର ରାଜ ଶକୁନି, ଭଲ ତ ?''

ଏପରି କଥା ଶୁଣି ସାଙ୍ଗେ ସାଙ୍ଗେ ବୃକାସୁର କହିଲା, '' ହଁ ମହାରାଜ ! ସମସ୍ତେ ଭଲ ଅଛନ୍ତି । ମୋତେ ଆପଣ ଗୋଟିଏ କଥା କୁହନ୍ତୁ । ମୁଁ ତପସ୍ୟା କରିବାକୁ ଚାହୁଁଛି ।''

କଥା ମଝିରେ ନାରଦ କହିଉଠିଲେ- ''ଧନ୍ୟ, ଧନ୍ୟ, ବଡ଼ ସୁନ୍ଦର ଇଚ୍ଛା କରିଛ । ତପସ୍ୟା କରିବା ହିଁ ହେଉଛି ସଂସାରର ସାର କଥା । ଏହି ଉତ୍ତରାଖଣ୍ଡ ତପସ୍ୟା ନିମନ୍ତେ ସର୍ବୋତ୍ତମ ସ୍ଥାନ ହୋଇଥିବାରୁ ଏହିଠାରେ ତପସ୍ୟା କର ।''

ବୃକାସୁର କହିଲା, '' ଆଜ୍ଞା ! ତପସ୍ୟା କରିବି ଯେ, କେଉଁ ଦେବତାଙ୍କ ପ୍ରସନ୍ନତା ନିମନ୍ତେ ତପସ୍ୟା କରିବି ତାହାତ ସ୍ଥିର ହୋଇନାହିଁ । ପ୍ରଥମେ ଏହାସ୍ଥିର କରାଯାଉ, ଆଉ ମୁଁ ଅନେକ ବର୍ଷ ଧରି ତପସ୍ୟାରେ ନଷ୍ଟ କରିପାରିବି ନାହିଁ । ସମୟର ସ୍ୱଳ୍ପତା ଦୃଷ୍ଟିରୁ ଚଟାପଟ ପ୍ରସନ୍ନ ହୋଇପାରୁଥିବା ମୋତେ ଏପରି ଦେବତାର ନାମ କୁହନ୍ତୁ ଯିଏ ବେଶୀ ହୀନସ୍ତା କରନ୍ତି ନାହିଁ ପ୍ରସନ୍ନତା ନିମନ୍ତେ । ଅତି କମ୍ ସମୟରେ ଓ ସବୁଠାରୁ ଅଧିକ ମିଳିପାରୁଥିବା ଆବଶ୍ୟକ ।''

ଏପରି କଥା ଶୁଣି ନାରଦ କିଛି ସମୟ ମୌନ ରହିଲେ । ସେ କିଛି ସମୟ ଭାବିବା ପରେ କହିଲେ, '' ସମସ୍ତ ଦେବତାଙ୍କ ଭିତରେ ଭୋଳାନାଥ ଶିବ ହିଁ ଏପରି ଏକମାତ୍ର ଦେବତା ଯିଏ ଅତିଶୀଘ୍ର ପ୍ରସନ୍ନ ହୋଇଯାଆନ୍ତି । ଆଉ ସେ ପ୍ରସନ୍ନ ହେବା ମାତ୍ରେ, ଯାହା ତୁମର ଇଚ୍ଛା ସେପରି ବସ୍ତୁ ତୁମେ ମାଗି ଗ୍ରହଣ କରିପାରିବ । ତାଙ୍କ ପାଖରେ ଅଦେୟ ବୋଲି କିଛି ନାହିଁ ।''

ବୃକାସୁର ପଚାରିଲା, ''ମହାରାଜ ! ବିଷ୍ଣୁ କିପରି ଦେବତା ?''

ତତ୍‌କ୍ଷଣାତ୍ ନାରଦ କହିଲେ, ''ବସ ! ତୁମେ ତାଙ୍କ ନାଁ ଧରନାହିଁ । ସେ ଏପରି ଦେବତା ଯେ, କେହି ଯଦି ତାଙ୍କୁ ଭଜନ କରେ ସେ ତାର ବାର ବଜେଇ ଦିଅନ୍ତି । ତାଙ୍କ ଆଡ଼କୁ ଆଡ଼ ଆଖିରେ ବି ଦେଖିବା ଉଚିତ ନୁହେଁ । ଦେବତାମାନେ ବି ଅନେକ ଅନୁନୟ ବିନୟ ହେଲେ, ଅତ୍ୟଧିକ ସଂକଟରେ ପଡ଼ି ଆକୁଳ ନିବେଦନ କଲେ, ତେବେ ଅନେକ ଦିନ ପରେ ତାଙ୍କର ଏତେ ଟିକିଏ ଦୃଷ୍ଟିପଡ଼େ । ଯାଙ୍କ ପୂଜା ବଡ଼ ଜଟିଳ- ଏ ଦୁଧ ଆଣ, ଦହି ଆଣ, ଘିଅ ଆଣ, ନବାତ ଆଣ, ବସ୍ତ୍ର ଅଳଙ୍କାର ଆଣ- ଏତେ ହିନସ୍ତା ହେବାପରେ ସେ ପଦେ କହନ୍ତି । ଶିବ ହେଉଛନ୍ତି ସବୁଠାରୁ ଭଲ । ପୋସେ ହେବ ପାଣି ଚଢେଇ ଦେଇ , ଏଣୁ ତେଣୁ ଫୁଲ ଦି'ଟା ପକେଇ ଦିଅ ବାସ୍, ତାଙ୍କର ପୂଜା ସରିଗଲା । ସେ ଅଳପ ସମୟ ଭିତରେ ବି ପ୍ରସନ୍ନ ହୋଇଯାଆନ୍ତି ।''

ବୃକାସୁର କହିଲା, ''ମହାରାଜ ! ସପ୍ତାହେ ମାତ୍ର ସମୟ ମୁଁ ଦେଇ ପାରିବି । ସପ୍ତାହକ ଭିତରେ ସେ ପ୍ରସନ୍ନ ହୋଇଯିବେ ତ ?''

ନାରଦ କହିଲେ, ''ଆରେ ! ସପ୍ତାହେ କ'ଣ ହେବ ମ ? ସେ ତ ଯା ଭିତରେ ପ୍ରସନ୍ନ ହୋଇଯିବେ । ତୁ ସିଧା କେଦାରନାଥକୁ ଚାଲିଯା । ସେଠି ପହଞ୍ଚି କେଦାରଗଙ୍ଗାରେ ସ୍ନାନ ହୋଇଯିବୁ, ଆଉ ଶିବଙ୍କ ପୂଜା ଆରମ୍ଭ କରିଦେବୁ । ଯେତେ ଉଗ୍ର ତପସ୍ୟା କରିବୁ ସେତେ ଶୀଘ୍ର ସିଦ୍ଧି ହୋଇଯିବ ।''

ଏପରି କଥା ଶୁଣି ଅସୁର ଆଉ କାଳବିଳମ୍ବ ନକରି, ନାରଦଙ୍କୁ ଛୋଟିଆ ପ୍ରଣାମଟିଏ ପକାଇ ଶୀଘ୍ରତାର ସହିତ କେଦାରକ୍ଷେତ୍ର ଆଡ଼କୁ ଚାଲିଲା । ସେଠାରେ ପହଞ୍ଚିବାକ୍ଷଣି ଗୋଟିଏ ସ୍ଥାନରେ ବସି ତପସ୍ୟା ଆରମ୍ଭ କରିଦେଲା । ସେ ମନେମନେ ଭାବିଲା, ମୋର ଅତି ଶୀଘ୍ର ସିଦ୍ଧିଲାଭ କରିବା ଆବଶ୍ୟକ । ଏଣୁ ମୁଁ ଏପରି ଘୋର ତପସ୍ୟା କରିବି ଯାହା ଆଜି ସୁଦ୍ଧା କେହି ବି କରି ନଥିବେ । ମୋ ତପସ୍ୟା ଦେଖି ଶିବ ଚକିତ ହୋଇଯିବେ ।'

ଅସୁର ଏପରି ସ୍ଥିର କରି ଗୋଟିଏ କୁଣ୍ଡ କଲା । ସେଥିରେ ଅଗ୍ନି ଜାଳିଲା । ପ୍ରଜ୍ୱଳିତ ଅଗ୍ନିକୁ ମହାଦେବଙ୍କର ମୁହଁ ବୋଲି ଭାବି ସେ ତା' ଶରୀରରୁ ମାଂସ ପଳ ପଳ କାଟି ହବନ କରିବାରେ ଲାଗିଲା । ଏପରି କର୍ମ ତ ଅତି ଦୁଷ୍କର ଥିଲା । ଛ ଦିନ ପର୍ଯ୍ୟନ୍ତ ସେ ଏହିପରି ହବନ କରିବାରେ ଲାଗିଲା । ଶିବଙ୍କ କୃପା ପାଇବା ପାଇଁ ସେ ମହାଘୋର ତାମସ ତପ ଏହି ପ୍ରକାର କରିବାରେ ଲାଗିଥିଲା । ସେ'ତ ତତ୍‌କାଳ ସଂସାରର ସବୁକିଛି ପାଇବାକୁ ଲାଳାୟିତ ହୋଇଥିଲା, ଆଉ ସାତଦିନ ଭିତରେ ଅଭିଷ୍ଟ ଦେବତାଙ୍କୁ ସନ୍ତୁଷ୍ଟ କରିଦେବ ବୋଲି ଜାଣିଥିଲା, ଏବେ ଛ' ଦିନ ଅତିବାହିତ ହୋଇଯିବା ପରେ ଶିବଙ୍କ ଆବିର୍ଭାବ ହେବାର କୌଣସି ସୂଚନା ପାଇଲା ନାହିଁ, ତା ମନରେ ନିରାଶାର ଘୋର ବାଦଲ ଘୋଡ଼ାଇ ହୋଇଗଲା । ସେ ମନେ ମନେ ଭାବିଲା, ''ଶିବ ଇମିତି ଶୁଣିବେ ନାହିଁ, ମୁଁ ନିଜେ ନିଜକୁ ଯଜ୍ଞ କୁଣ୍ଡରେ ଆହୂତି ଦେଇଦେବି ।'' ଏପରି ସ୍ଥିରକରି ସେ କେଦାର ଗଙ୍ଗାରେ ସ୍ନାନ କଲା । ଯଜ୍ଞବେଦୀ ପାଖରେ ପହଞ୍ଚି ତାର ତୀକ୍ଷ୍ଣ ତରବାରୀ ବାହାର କଲା । ଆଉ ସେହି ତରବାରୀ ସାହାଯ୍ୟରେ ନିଜର ମୁଣ୍ଡ କାଟିବା ପାଇଁ ଉଦ୍ୟତ ହେଲା । ଠିକ୍ ମୁଣ୍ଡ କାଟିବାକୁ ଯାଉଛି, ଏହି ସମୟରେ ସହସା ପରମ କାରୁଣିକ କନ୍ଦର୍ପ ଭଗବାନ ଆଶୁତୋଷ ଅଗ୍ନିଦେବଙ୍କ ସଦୃଶ ସେହି ହବନ କୁଣ୍ଡରେ ପ୍ରକଟ ହୋଇଗଲେ । ଆଉ ନିଜର ବିଶାଳ ବାହୁପ୍ରସାରିତ କରି ଅସୁରର ଦୁଇ ବାହୁକୁ ଧରିପକାଇଲେ । ପରମ କାରୁଣିକ ଭୂତନାଥ ଶିବଙ୍କର ହସ୍ତ ସ୍ପର୍ଶ ଲାଭ କରିବା କ୍ଷଣି ଅସୁରର ସଂପୂର୍ଣ୍ଣ ଶରୀର ପୂର୍ବଭଳି ସୁସ୍ଥ ସୁନ୍ଦର ହୋଇଗଲା । ଯେଉଁ ଅଙ୍ଗ ଗୁଡ଼ିକୁ ସେ ଅଗ୍ନିରେ ବିସର୍ଜନ କରିଦେଇଥିଲା, ସେହି ସେହି ଅଙ୍ଗ ସହସା ପରିପୁଷ୍ଟ ଓ ବଳିଷ୍ଠ ହୋଇଗଲା ।

ପାର୍ବତୀପତି ଶ୍ରୀ ମହାଦେବ ହସି ହସି ଅସୁରକୁ କହିଲେ, ''ଆରେ ! ଅସୁରବର ! ତୁ ଏପରି ଦୁଃସାହସ କାହିଁକି କରୁଛୁ ?''

ଅସୁର ହାତ ଯୋଡ଼ି କହିଲା, '' ପ୍ରଭୁ ! ଆପଣ ମୋତେ ଦର୍ଶନ ଦେଲେ ନାହିଁ, ଏଣୁ ମୁଁ ଏପରି କରୁଥିଲି ଆପଣଙ୍କ ପ୍ରସନ୍ନତା ନିମନ୍ତେ ।''

ଶିବ କହିଲେ,'' ଆରେ ଭାଇ ! ମୋ ପ୍ରସନ୍ନତା ନିମନ୍ତେ ଏପରି କରିବାର କି ଆବଶ୍ୟକ ଥିଲା ? ମୋ ଭକ୍ତମାନେ ମୋତେ ପୋସେ ହେବ ଜଳ ପ୍ରଦାନ କଲେ ତ ମୁଁ ପ୍ରସନ୍ନ ହୋଇଯାଏ । ମୋ ପ୍ରସନ୍ନତା ନିମନ୍ତେ ଏପରି ଶରୀରକୁ କ୍ଳେଶ ଦେବାର କୌଣସି ଆବଶ୍ୟକ ନଥିଲା । ଆଚ୍ଛା ହେଉ, ଯାହା ହେବାରତ ହେଲାଣି, ତୁ ଯାହା ଇଚ୍ଛା କରିଛୁ ସେହି ବର ମୋ ଠାରୁ ମାଗିନେ । ତୋତେ ବର ଦେବାପାଇଁ ହିଁ ମୁଁ ଆସିଛି । ସଂକୋଚ କରିବାର କୌଣସି ଆବଶ୍ୟକତା ନାହିଁ ।''

ଅସୁର ମନେ ମନେ ଭାବିଲା, ''ଅନେକ ଅସୁର ଅମର ବର ମାଗିଛନ୍ତି, ହେଲେ ସମସ୍ତେ ମରିଛନ୍ତି; ଅନେକ ଅପରାଜିତ ହେବାପାଇଁ ବର ମାଗିଛନ୍ତି, ହେଲେ ସମସ୍ତେ ପରାଜିତ ହୋଇଯାଇଛନ୍ତି । ମୁଁ ଏବେ ଏପରି ବର ମାଗିବି ଯେପରି କୌଣସି ଶତ୍ରୁ ମୋ ପାଖକୁ ଆସି ପାରିବେ ନାହିଁ । ଯାହା ପାଖରେ ଧନ ରତ୍ନ ଥିବା ଦେଖିବି ସେ ମରିଯିବ । ଏପରି ସ୍ଥିରକରି ସେ ମହାଦେବଙ୍କୁ କହିଲା, ''ପ୍ରଭୁ ! ମୋତେ ଏପରି ବର ପ୍ରଦାନ କରନ୍ତୁ ଯାହା ଫଳରେ ମୁଁ ଯାହା ମୁଣ୍ଡ ଉପରେ ହାତ ରଖିବି ସେ ତତ୍‌କାଳ ମରିଯିବ ।''

ଶିବ ଦେଖିଲେ,ଅସୁର ପ୍ରାଣୀତ ଜଗତକୁ ଭୟ ପ୍ରଦାନ କରିବା ଭଳି ଭୟଙ୍କର ବର ମାଗୁଛି । ଭଗବାନ ଅସୁରର ମନୋଭାବ ଦେଖି ଟିକିଏ ଖିନ୍ନ ହେଲେ, କିନ୍ତୁ କରିବେ ବ କ'ଣ, କଥା ତ ଦେଇ ଦେଇଛନ୍ତି । ଭୋଳାନାଥ ତ ଭକ୍ତକୁ ଦେଖିବା କ୍ଷଣି ବରଦେବା ପାଇଁ ବାହାରି ପଡ଼ନ୍ତି । ବିଷ୍ଣୁ ଭଗବାନ ହୋଇଥାନ୍ତେ, ତେବେ କେତେ ପ୍ରକାର କଥା କହି ମନ ଭୁଲାଇ ଦେଇଥାନ୍ତେ । କିନ୍ତୁ ସଂସାରରେ ସାଦାସିଧା ସରଳ ଲୋକଙ୍କୁ ସମସ୍ତେ ଠକି ଥାନ୍ତି ଯଦିଓ ଠକିଥିବା ଲୋକ ନିଜେ ଠକାମିରେ ପଡ଼େ, ଲାଭ କିଛି ପାଏ ନାହିଁ, ତେବେ ବି ଅନ୍ୟ ସହିତ ଛନ୍ଦ-କପଟ କରିବାକୁ ସେ ହେଳା କରେନାହିଁ । ଆଉ ଶିବ ତ ହେଉଛନ୍ତି ଭୋଳାନାଥ ଭୋଳାବାବା । ସେ ଭାବିଲେ, ''କଥା ଦେଇ ସାରି ଯଦି ମୁଁ ତାକୁ ତାର ଇପ୍ସିତ ବର ନ ଦିଏ ତେବେ ମୋର ଘୋର ଅପକୀର୍ତ୍ତି ହେବ । ଯେପରି ବି ହେଉ, ମୋତେ ତାକୁ ବର ଦେବାକୁ ତ ହେବ ।'' ଏପରି ଭାବି ଉପର ଠାଉରିଆ ହସ ହସି ହସି ଶିବ କହିଲେ, ''ହଉ ଠିକ୍ ଅଛି, ତାହା ହିଁ ହେଉ ।'' ବୃଷଭଧ୍ୱଜ ରାକ୍ଷସକୁ ବର ଦେଲେ ନାହିଁ ଯେ ବିଷଧର ସର୍ପକୁ

କ୍ଷୀର ପିଆଇ ତା ବିଷ ବର୍ଦ୍ଧନ କରିଦେଲେ । ଶିବଙ୍କଠାରୁ ବରଲାଭ କରି ଅସୁର ଅତି ପ୍ରସନ୍ନ ହୋଇଗଲା ।

ଏହି ସମୟରେ ସେ ଜଗତମୋହିନୀ ଜଗତମାତା ଭଗବତୀ ପାର୍ବତୀଙ୍କୁ ବସିଥିବା ଦେଖିଲା । ଅସୁରର ପ୍ରକୃତି ଅବା ବଦଳନ୍ତା କିପରି ? ତା ମନରେ ପାପ ବ୍ୟତୀତ ଅନ୍ୟ କଥା ପଶନ୍ତା ବା କାହିଁକି ? ସେ ମନେ ମନେ ଭାବିଲା, '' ଏହି ପାର୍ବତୀ କେଡ଼େ ସୁନ୍ଦରୀ, କେଡ଼େ ସୁନ୍ଦର ଠାଣିରେ ସତେ ବସିଛନ୍ତି । ଇଏ ଏଡ଼େ ସୁନ୍ଦରୀ ହୋଇଛନ୍ତି, କିନ୍ତୁ ଭୂତନାଥଙ୍କ ପାଲରେ ପଡ଼ିରହିଛନ୍ତି । ଯାଙ୍କ ପାଖରେ ନା ଲୁଗାପଟାଅଛି, ନା ଘରଦ୍ୱାର । ଇଏତ ସବୁବେଳେ ଦିଗମ୍ବର ହୋଇ ଶ୍ମଶାନରେ ବୁଲୁଛନ୍ତି । ଏହି ସୁନ୍ଦରୀ କିନ୍ତୁ ରାଣୀ ହେବା ପାଇଁ ଯୋଗ୍ୟା । ମୁଁ ଯଦି ୟାଙ୍କୁ ପାଆନ୍ତି ତେବେ ୟାଙ୍କୁ ମୁଁ ମୋ ମହଲରେ ରଖନ୍ତି । କିନ୍ତୁ ଭୋଳାବାବା ଥିବା ପର୍ଯ୍ୟନ୍ତ ଇଏ କଦାପି ମୋ ସହିତ ଆସିବେ ନାହିଁ । ତେଣୁ ସର୍ବପ୍ରଥମେ ଏହି ଭୋଳାନାଥଙ୍କ ମୁଣ୍ଡ ଉପରେ ହାତରଖି ତାଙ୍କୁ ଭସ୍ମ କରିଦେବି । ଏପରି କଲେ ଗୋଟିଏ ବାଣରେ ଯୋଡ଼ିଏ ଶିକାର ହୋଇଯିବ । ବରଦାନର ପରୀକ୍ଷା ବି ହୋଇଯିବ । ଏପରି ସ୍ଥିର କରି ମହାଦେବଙ୍କ ମସ୍ତକ ଉପରେ ହାତ ରଖି ତାଙ୍କୁ ଭସ୍ମ କରିଦେବା ପାଇଁ ଆଗକୁ ଚାଲିଲା । ଶିବ ତା ମନକଥା ଜାଣିପାରି କହିଲେ, '' ଆରେ ! ଇଏ କ'ଣ କରୁଛୁ ?''

ଅସୁର କହିଲା, ''କିଛି କରୁନାହିଁ ମହାରାଜ ! ଆପଣଁ ଦେଇଥିବା ବର ପରୀକ୍ଷା କରୁଛି ।''

ଶିବ ରାକ୍ଷସର ଅଭିପ୍ରାୟ ବୁଝିଗଲେ, ଆଉ ସେଠାରୁ ଦୌଡ଼ି ପଳାଇବାରେ ଲାଗିଲେ । ଅସୁର ତ ଇମିତି ସିମିତି ଅସୁର ନଥିଲା । ସେ ଶିବଙ୍କୁ ଗୋଡ଼ାଇବାରେ ଲାଗିଲା । ଶିବଙ୍କ ବର ଲାଭ କରି ସେ ତ ଅଧିକ ଉନ୍ମତ୍ତ । ଆଗରେ ଜଗଦ୍‌ଗୁରୁ ଭୋଳାନାଥ ଦୌଡୁଥିଲେ ଆଉ ପଛେ ପଛେ ତାଙ୍କର ଚେଲା ବୃକାସୁର । ଶିବ ପୃଥିବୀର ସର୍ବତ୍ର ବୁଲିଗଲେ । ରକ୍ଷା ପାଇବାର କୌଣସି ଉପାୟ ନପାଇ ସ୍ୱର୍ଗକୁ ଚାଲିଲେ, ଏହା ପରେ ଆକାଶ ପାତାଳ ତଥା ଦଶ ଦିଗ ବୁଲିଗଲେ । ସେ ଯେଉଁଆଡ଼େ ଯାଉଥିଲେ, ଲୋକମାନେ ବିଚଳିତ-ବିବ୍ରତ ହୋଇଯାଉଥିଲେ । ଶିବଙ୍କ ବରଦାନ କଥା ଶୁଣି ଛାନିଆ ହୋଇଯାଉଥିଲେ ।

ଏପରି ସର୍ବତ୍ର ବୁଲି ବୁଲି କୌଣସିଠାରେ ଆଶ୍ରୟ ନପାଇ ଶେଷରେ ବୈକୁଣ୍ଠପତିଙ୍କ ଶରଣରେ ରକ୍ଷା ମିଳିବ ବୋଲି ମନେମନେ ଭାବିଲେ । ଆଉ ନିତ୍ୟନିରନ୍ତର ପ୍ରକାଶମୟ ସନାତନ ବୈକୁଣ୍ଠଧାମ ଆଡ଼େ ଚାଲିଲେ ।

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ବର୍ତ୍ତମାନ ଯେଉଁ ଭଳି ଅପୂର୍ବ ଉପାୟରେ ଭଗବାନ୍ ଶ୍ରୀହରି ଶିବଙ୍କର ସଂକଟ ଦୂର କଲେ ସେହି ପ୍ରସଙ୍ଗ କହୁଛି ଶୁଣନ୍ତୁ ।''

### ଛପ୍ପୟ

କହେଁ-ଅରେ, ଚେଯ୍ୀଁ ମରୈ ମାଁଗୁ ବର ମତ ଘବରାବୈ ।
ମାଁଗେୟା ବର-କର ଧରୂଁ ଜାସୁ ସିର ସୋ ଭରି ଜାବୈଂ ।।
ଆଶୁତୋଷ ହ୍ୱୈଂ ବିମନ ଦୟୋ ବର ଖଲ ସୁଖ ପାୟୋ ।
ଭୟୋ ବିମୋହିତ ଶିବା ରୂପ ଲଖି ଚିତ ଚଲାୟୋ ।।
କରୂଁ ପରୀକ୍ଷା ଶମ୍ଭୁ ସିର, କର ଧରି ଯଦି ମର ଜାୟଁଗେ ।
ମିଲୈ ସୁନ୍ଦରୀ ଶିବା ଅରୁ, ସବରେ ସୁର ଡର ଜାୟେଁଗେ ।।



# ଶମ୍ଭୁଙ୍କ ସଂକଟ ବିମୋଚନ

**ଯଏବମବ୍ୟାକୃତଶକତ୍ୟୁଦନ୍ୱତଃ**
**ପରସ୍ୟ ସାକ୍ଷାତ୍ ପରମାତ୍ମନୋ ହରେଃ ।**
**ଗିରିତ୍ରମୋକ୍ଷଂ କଥୟେଚ୍ଛୃଣୋତି ବା**
**ବିମୁଚ୍ୟତେ ସଂସୃତିଭିସ୍ତଥାରିଭିଃ ।।☆**

(ଶ୍ରୀ ଭା. ୧୦ମ ସ୍କ. ୮୮ ଅ. ୪୦ ଶ୍ଳୋକ)

### ଛପ୍ପୟ

ଧରନ ଶମ୍ଭୁ ପୈ ହାଥ ବଢ଼୍ୟୋ ଖଲ ହର ଘବରାୟେ ।
ଭାଗେ ମୁଟ୍ଠୀ ବାଂଧି ଲୋକପାଲନି ପୁର ଆୟେ ।।
ବୃକ ହୂ ବର ତେଁ ବଢ଼୍ୟୋ ଭଗେ ସଁଗ ଶିବ କେ ମଗ ମହଁ ।
କୌନ ଅନ୍ୟଥା କରେ ଶମ୍ଭୁ କେ ବର କୂଁ ଜଗ ମହଁ ।।
ଔର ଉପାୟ ନ ଦେଖି ହର, ଭାଗି ଚଲେ ବୈକୁଣ୍ଠପୁର ।
ରମାରମନ ଜହଁ ରମା ସଁଗ, କରହିଁ କଲିତ କ୍ରୀଡ଼ା ସୁଘର ।।

---

☆ କହନ୍ତି ଶୁକ ମହାମୁନି । ଶୁଣ ରାଜନ ଚୂଡ଼ାମଣି ।।
ଗିରିଶ ମୋକ୍ଷ ଯେ ଶୁଣନ୍ତି । ସର୍ବ ଶଙ୍କଟୁ ନିସ୍ତରନ୍ତି ।।
ହରି ମହିମା ଦୃଢ଼ ଚିତ୍ତେ । ସୁଜନେ ଶୁଣ ଭାଗବତେ ।।

ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୯୪ ଅ.

ଲୋକମାନେ ନିଜକୁ ନିଜେ ଖୁବ୍ ବୁଦ୍ଧିମାନ୍ ବୋଲି ଭାବନ୍ତି । ଅନ୍ୟର କୌଣସି ଭୁଲ୍ ଦେଖିଲେ ଖୁବ୍ ହସନ୍ତି, ତାକୁ ମୂର୍ଖ ବୋଲି କହନ୍ତି, ଆଉ କୁହନ୍ତି- '' ଯାର ପରିଣାମ କ'ଣ ହେବ ତୁମେ କିମିତି ଭାବି ପାଇଲ ନାହିଁ ?'' ଏପରି ଅନ୍ୟଙ୍କୁ କହି ମୂର୍ଖ ବୋଲି ପ୍ରମାଣିତ କରନ୍ତି, ''କ'ଣ କରିଥାନ୍ତି, ସେତେବେଳେ ପରା ମୋ ମତି ଏପରି ଭ୍ରଷ୍ଟ ହୋଇଯାଇଥିଲା ଯେ ଭବିଷ୍ୟତରେ ଏପରି ହେବ ବୋଲି ଆଦୌ ଭାବିପାରିଲି ନାହିଁ । ଏପରି ହେବାର ହିଁ ଥିଲା । ଭବିଷ୍ୟତକୁ କିଏ ବଦଳାଇ ପାରିବ ?'' ବାସ୍ତବିକ କଥା ହେଉଛି, ଯେତେବେଳେ ଯାହା ହେବାକୁ ଥାଏ ସେତେବେଳେ ମଣିଷର ମାନସିକ ସ୍ଥିତି ସେହିଭଳି ହୋଇଯାଏ । ସୁନାର ହରିଣ ହୋଇପାରେ ନାହିଁ ବୋଲି ଶ୍ରୀରାମଚନ୍ଦ୍ର କ'ଣ ଜାଣି ନଥିଲେ ? କିନ୍ତୁ ଭବିଷ୍ୟତର ପ୍ରବଳତା ପ୍ରଦର୍ଶନ କରିବାକୁ ଯାଇ ତା ପଛରେ ଗୋଡ଼ାଇ ଥିଲେ । ଭଗବାନଙ୍କର ଏହି ଗୁଣମୟୀ ମାୟା ଏପରି ପ୍ରବଳ ଯେ ବଡ଼ ବଡ଼ ଜ୍ଞାନୀ ମୁନି-ଋଷିମାନେ ଏଥିରେ ବିହ୍ୱଳିତ ହୋଇ ଅକରଣୀୟ କର୍ମ କରିପକାନ୍ତି । ଏପରି ଥରେ ଦୁଇଥର ନୁହେଁ, ଅନେକ ଥର କରିଥାନ୍ତି । ସେହି କର୍ମ ଏକ ଖରାପ କର୍ମ ବୋଲି ଜାଣି ସୁଦ୍ଧା, ଏହି କର୍ମ କଲେ କେବଳ ଦୁଃଖ ପ୍ରାପ୍ତ ହୋଇଥାଏ ବୋଲି ଜାଣି ସୁଦ୍ଧା, ନିବୃତ୍ତ ହୋଇପାରନ୍ତି ନାହିଁ । ଯଥା ସମୟରେ ସେମାନଙ୍କର ଗୋଡ଼ ଖସିଯାଏ । ଜ୍ଞାନୀମାନଙ୍କର ଏପରି ହେଉଥିବା ବେଳେ ଅସୁର ପ୍ରକୃତିର ଲୋକଙ୍କ କଥା ଅଧିକ କ'ଣ କହିବା ! ଭଗବାନଙ୍କର ମାୟା ଲୋକଙ୍କ ଉପରେ ଏପରି ଜାଲ ବିସ୍ତାର କରିଥାଏ ଯେ, ପ୍ରାଣୀ ବିବଶ ହେବାକୁ ବାଧ୍ୟ ହୋଇଯାଏ । ଭଗବାନଙ୍କର ମାୟାରେ ଯେତେବେଳେ ଏପରି ଶକ୍ତି ଅଛି ସେତେବେଳେ ଭଗବାନ୍ ସ୍ୱୟଂ ଯଦି ମୋହନ ରୂପ ଧାରଣ କରି କାହାକୁ ମୋହିତ କରିବାକୁ ଚାହାନ୍ତି ତେବେ କେହି ସେଥିରୁ ଖସି ପାରିବେ କି ? ନା ! ନିଶ୍ଚୟ ବିମୋହିତ ହୋଇଯିବେ । କିନ୍ତୁ ଭଗବାନଙ୍କର ସମ୍ମୁଖରେ ମୋହ ବି କଲ୍ୟାଣକାରୀ ହୋଇଥାଏ । ତାଙ୍କ ସମ୍ମୁଖରେ, ଜ୍ଞାତ ସାରରେ, ପ୍ରେମରେ ହେଉ ଅଥବା ମୋହରେ ହେଉ, ପହଞ୍ଚି ଯିବାରେ ବନ୍ଧନ ମୁକ୍ତ ହୋଇଯାଏ ।

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ବୃକାସୁର ଶିବଙ୍କଠାରୁ ବର ଲାଭ କରିବା ପରେ ଯେତେବେଳେ ତାଙ୍କୁ ଭସ୍ମ କରିବାକୁ ତାଙ୍କ ପଛେ ପଛେ ଦୌଡ଼ିଲା, ଶିବ କୌଣସି ଲୋକରେ ସେଥିରୁ ରକ୍ଷା ପାଇବା ପାଇଁ ସ୍ଥାନ ପାଇଲେ ନାହିଁ । ଏବେ ସେ ସେହି ବୈକୁଣ୍ଠ ଧାମ ଆଡ଼େ' ଚାଲିଲେ ଯେଉଁଠାକୁ ଶାନ୍ତ, ଦାନ୍ତ ପ୍ରତ୍ୟେକଙ୍କୁ ଅଭୟ ପ୍ରଦାନ କରୁଥିବା ପରମହଂସ ମୁନିମାନେ ଯାଆନ୍ତି । ଯେଉଁଠାରେ କମଳାଙ୍କ ସହିତ କମଳନୟନ ନିତ୍ୟ ନିବାସ କରୁଥାନ୍ତି, ଯାହା ପ୍ରକୃତିର ପରେ (ଊର୍ଦ୍ଧ୍ୱରେ) ପରମୋତ୍କୃଷ୍ଟ ଧାମ, ଯାହା ହେଉଛି ପ୍ରତ୍ୟେକ ପ୍ରାଣୀଙ୍କର ପରମଗତି, ଯେଉଁଠାରୁ ପ୍ରତ୍ୟାବର୍ତ୍ତନ କରି ଜୀବ ସଂସାରର ଆବାଗମନରେ ପଡ଼ି ହୁଏ ନାହିଁ । ଯାହା ରମାରମଣଙ୍କର ନିତ୍ୟ ନିବାସ ।

''ଶ୍ରୀମନ୍ନାରାୟଣ ଲକ୍ଷ୍ମୀଙ୍କ ସହିତ ଆନନ୍ଦ ପୂର୍ବକ ବିରାଜମାନ କରୁଥିବା ବେଳେ ତାଙ୍କ ଲୋକରେ ଶିବ ପହଞ୍ଚିଯିବା ଜାଣି ପାରିଲେ । ସେ ସହସା ତାଙ୍କର ଶଙ୍ଖ ଚକ୍ର ଗଦା ପଦ୍ମାଦି ଆୟୁଧକୁ ଗୋଟିଏ ପାଖରେ ରଖିଦେଲେ । ସେ ତତ୍‌କ୍ଷଣାତ୍ ବ୍ରହ୍ମଚାରୀ ରୂପ ଧାରଣ କଲେ । ସେତେବେଳେ ତାଙ୍କ ଖୋଲା ଦେହରେ ଯଜ୍ଞୋପବିତ ସ୍ପଷ୍ଟ ଦେଖାଗଲା । ସେ ବେକରେ ରୁଦ୍ରାକ୍ଷମାଳା ପକାଇ, କୃଷ୍ଣମୃଗ ଚର୍ମ ପରିଧାନ କରି, ହାତରେ ଜଳପୂର୍ଣ୍ଣ କମଣ୍ଡଳୁ ତଥା ବ୍ରହ୍ମଦଣ୍ଡ ଧାରଣ କରିଥିଲେ ତାଙ୍କର ଏହି ରୂପ ଏପରି ଅପୂର୍ବ ସୁନ୍ଦର ଥିଲା ଯେ, ଦେଖିବା ମାତ୍ରେ ଦର୍ଶକ ବିମୁଗ୍‌ଧ ହୋଇଯିବେ । ଭଗବାନ ଦୈତ୍ୟରାଜ ବଳିକୁ ଏହି ରୂପରେ ମୋହିତ କରିଥିଲେ । ବ୍ରହ୍ମଚାରୀର ମନରେ ଆପଣା-ପର, ଏପରି ଭେଦ ଭାବ ନଥାଏ । ସେ ପ୍ରତ୍ୟେକ ସ୍ତ୍ରୀଙ୍କୁ ମାତା ବୋଲି ଭାବେ । ସେ କୌଣସି ବସ୍ତୁକୁ ସଂଗ୍ରହ କରେ ନାହିଁ । ଦୀନରୂପେ ଗୁରୁକୁଳରେ ରହେ । ଭିକ୍ଷା ମାଗି ଖାଏ । କାହାକୁ ହେଲେ କଟୁକଥା କହେ ନାହିଁ । ଏହି ସମସ୍ତ ଗୁଣ ଯୋଗୁଁ ପ୍ରତ୍ୟେକ ଶ୍ରେଣୀର ଲୋକମାନେ ବ୍ରହ୍ମଚାରୀଙ୍କୁ ସମ୍ମାନ କରନ୍ତି । ଭିକ୍ଷା ଦିଅନ୍ତି । ତଥା ତାଙ୍କ କଥାକୁ ଧ୍ୟାନଦେଇ ଶୁଣନ୍ତି ।

''ଭଗବାନ ବ୍ରହ୍ମଚାରୀ ରୂପରେ ସେଇ ବାଟରେ ବସିଗଲେ, ଯେଉଁବାଟେ ଭଗବାନ ଶଙ୍କର ଦୌଡ଼ି ଆସୁଥିଲେ । ଆଉ ତାଙ୍କ ପଛରେ ବୃକାସୁର ଗୋଡ଼ାଇ ଥିଲା । ଭଗବାନ ଶିବଙ୍କୁ ଦୂରରୁ ଦେଖି କହିଲେ, 'ହେ ବାବା ! ଦଣ୍ଡବତ !' ଶିବ ତ ପ୍ରାଣ ବିକଳରେ ଦୌଡୁଥିଲେ । ସେ 'ଭଲରେ ରୁହ ବାପା, ଭଲରେ ରୁହ' ଏପରି କହି ଦୌଡ଼ି ଦୌଡ଼ି ଆଗକୁ ପଳାଇଲେ ।

'' ଭଗବାନ ଏଥର ଠିଆ ହୋଇଗଲେ । ବୃକାସୁର ଦୌଡ଼ି ଆସୁଥିଲା । ବଟୁରୂପ ଧାରଣ କରିଥିବା ବନମାଳୀ ହସ ହସ ମୁହଁରେ କହିଲେ, 'ରାଜନ ! ଜୟ ଶଙ୍କର !'

''ବୃକାସୁର 'ଜୟ ଶଙ୍କର, ଜୟ ଶଙ୍କର' କହି ଉତ୍ତର ଦେଲା, 'ହେ ବ୍ରହ୍ମଚାରୀ, ସବୁ ଭଲ ତ?'

''ଭଗବାନ କହିଲେ, 'ହଁ ରାଜନ୍ । ଭଲ ଅଛି । ଆପଣଙ୍କ କୁଶଳବାର୍ତ୍ତା କୁହନ୍ତୁ । ଆପଣ କେଉଁ ଆଡେ ତରତରରେ ଚାଲିଛନ୍ତି ? ଆପଣ କ୍ଳାନ୍ତ ଶ୍ରାନ୍ତ ଦେଖାଯାଉଛନ୍ତି କାହିଁକି ? ଖୁବ୍ ବ୍ୟସ୍ତ ଥିବା ଭଳି ଦେଖାଯାଉଛନ୍ତି ! ଟିକିଏ ବିଶ୍ରାମ କରି ନିଅନ୍ତୁ । ଜଳ ପାନ କରନ୍ତୁ ।''

'ବୃକାସୁର କହିଲା, '' ବ୍ରହ୍ମଚାରୀ, ସତ୍କାର କରିଥିବାରୁ ତୁମକୁ ଧନ୍ୟବାଦ । ମୁଁ ଏକ ଜରୁରୀ କାମରେ ଯାଉଛି । ଶଙ୍କରଙ୍କୁ ଧରିବାକୁ ହେବ । ତୁମ ସହିତ କଥାବାର୍ତ୍ତା କରୁ କରୁ ଶଙ୍କର ଦୂରକୁ ପଳାଇ ଯିବେ ।''

'ଶିବ ଦେଖିଲେ, ବ୍ରହ୍ମଚାରୀ ଅସୁର ସହିତ ଅତି ପ୍ରେମରେ ଆଳାପ କରୁଛନ୍ତି । ଇଏ ତ ସାକ୍ଷାତ୍ ଶ୍ରୀମନ୍ନାରାୟଣ ! ସେ କୌତୂହଳୀ ହୋଇ ଠିଆ ହୋଇଗଲେ । ଭଗବାନ୍ ବୃକାସୁରକୁ କହିଲେ 'ରାଜନ୍, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଶଙ୍କର ତ ନିକଟରେ ଠିଆ ହୋଇଛନ୍ତି । ଆପଣ ଯେତେବେଳ ପର୍ଯ୍ୟନ୍ତ ମୋ ପାଖରେ ଥିବେ ସେ ପର୍ଯ୍ୟନ୍ତ ସେ ଆଉ ଆଗକୁ ଯାଇ ପାରିବେ ନାହିଁ । ଆପଣ ଟିକିଏ ବସି ଯାଆନ୍ତୁ । ଆପଣଙ୍କୁ ଦେଖିଲେ ମନେହେଉଛି ତ, ଆପଣ ଅନେକଦୂରୁ ଆସିଛନ୍ତି । କଥା କ'ଣ ? ଶଙ୍କରଙ୍କୁ କାହିଁକି ଧରିବା ପାଇଁ ଏତେ ଉଦ୍‌ବିଗ୍ନ ? ଏତେ ଶ୍ରମ କରିବାର ତାତ୍ପର୍ଯ୍ୟ କ'ଣ ? ଦେଖନ୍ତୁ, ଏହି ଲୌକିକ, ତଥା ପାରଲୌକିକ କାର୍ଯ୍ୟ ସବୁ ଏଠି ଶରୀରରେହିଁ ହେଉଥାଏ । ଏଣୁ ଶରୀରର ସୁରକ୍ଷା ପାଇଁ ସତତ ଯତ୍ନ ନେବା ଉଚିତ । ଶରୀର ଦ୍ୱାରା ହିଁ ସକଳ ପ୍ରକାର କାମନା ପରିପୂର୍ଣ୍ଣ ହୋଇଥାଏ । ଆପଣ ଏତେ ବ୍ୟଗ୍ର କାହିଁକି ହେଉଛନ୍ତି ? ''

ବୃକାସୁର କହିଲା, 'ବ୍ରହ୍ମଚାରୀ ତୁମେ ବେଦ ପଢ଼ । ଅନ୍ୟ କଥା ଶୁଣି କିଛି ଲାଭ ନାହିଁ ।'

''ଭଗବାନ କହିଲେ, 'ଦେଖନ୍ତୁ ରାଜନ୍ ! ସଂସାରରେ ସମସ୍ତ କାର୍ଯ୍ୟ ପରସ୍ପରର ସହାୟତାରେ ହିଁ ହୋଇଥାଏ । ଶ୍ରମଜୀବୀ ଶ୍ରମକରି ଜୀବନୋପଯୋଗୀ ବସ୍ତୁରାଶି ଉତ୍ପାଦନ କରେ । ବୁଦ୍ଧିଜୀବି ତା ବୁଦ୍ଧି ଦ୍ୱାରା ନାନା ଆବିଷ୍କାର କରି ଶ୍ରମଜୀବୀଙ୍କୁ ସୁଖ ଦେଇଥାନ୍ତି । ବଢ଼େଇତ ହଳ ଆଦି କରେ, ଏହା ବଦଳରେ ଚାଷୀ ତାକୁ ଅନ୍ନ ଦିଏ । ସବୁ କାମ ସମସ୍ତେ ଏକା ସାଙ୍ଗରେ କରି ପାରନ୍ତି ନାହିଁ । ସଂସାରର ସକଳ କାର୍ଯ୍ୟ ଜଣେ ଜଣଙ୍କର ସହାୟତାରେ, ସମ୍ମତିରେ ଚାଲେ । ଯଦି ଆପଣ ଉଚିତ ମନେକରୁଛନ୍ତି, ତେବେ ଆପଣ ଆପଣଙ୍କର ଏପରି ବ୍ୟଗ୍ରତାର କାରଣ ମୋତେ କୁହନ୍ତୁ । ମୋତେ ଯଦି ଠିକ୍ ଜଣାଯାଏ, ତେବେ ମୁଁ ଆପଣଙ୍କୁ ଉଚିତ ସମ୍ମତି ଦେବି । ସଂସାରର ସମସ୍ତ ଲୋକେ ସହାୟକଙ୍କ ଦ୍ୱାରା ନିଜର ସ୍ୱାର୍ଥ ସିଦ୍ଧ କରିନେଇ ଥାନ୍ତି ।''

''**ବ୍ୟଗ୍ରତା ଆଉ ବିପତ୍ତି ସମୟରେ କେହି ଯଦି ସହାନୁଭୂତି ଦେଖାଏ ତେବେ ତା ସହିତ ଆତ୍ମୀୟତା ହୋଇଯିବା ସ୍ୱାଭାବିକ ।** ଏଣୁ ଭଗବାନ କହିବାରୁ ସେ ବସିଗଲା । ସେ ହାତ ଗୋଡ଼ ଧୋଇ ଶ୍ରମ ଲାଘବ କଲା । ହେଲେ ତାର ନଜର ସବୁବେଳେ ଥାଏ ଶିବଙ୍କ ଉପରେ । ଏଣେ ଲୀଳାଧାରୀଙ୍କ ଅପୂର୍ବ ଲୀଳା ଦେଖିବା ପାଇଁ ଶିବ ଚୁପ୍‌ଚାପ୍ ଠିଆହୋଇଥାନ୍ତି । ଟିକିଏ ଆଶ୍ୱସ୍ତ ହେବାପରେ ବୃକାସୁର କହିଲା-'ଦେଖ ବ୍ରହ୍ମଚାରୀ । ତୁମେ ସହୃଦୟବାନ୍ ଜଣା ପଡୁଛ । ମୁଁ ତୁମକୁ ମୋ କଥା କହୁଛି । ମୁଁ ହେଉଛି ଅସୁର ଶ୍ରେଷ୍ଠ ଶକୁନିଙ୍କ ପୁଅ । ନାରଦଙ୍କ କଥାରେ ମୁଁ କେଦାରନାଥ ଠାରେ ଶିବଙ୍କ ଆଶୁ ପ୍ରସନ୍ନତା ନିମନ୍ତେ ଘୋର ତପ କଲି । ମୁଁ ମୋ ମାଂସରେ ହବନ କରି ତପ କଲି । ଶିବ ପ୍ରସନ୍ନ ହେଲେ । ସେ ମୋତେ

ବର ଦେଲେ । ମୁଁ ଯାହା ଉପରେ ହାତ ଦେବି ସେ ତତ୍‌କାଳ ଭସ୍ମ ହୋଇଯିବ- ଏପରି ବର ପାଇଲି । ଏହାକୁ ପରୀକ୍ଷା କରିବାପାଇଁ ଶିବଙ୍କ ଉପରେ ହାତ ରଖିବାକୁ ବାହାରିଲି । ଶିବ ମଲେ ମୁଁ ତାଙ୍କ ସ୍ତ୍ରୀଙ୍କୁ ନେବି ।'

''ଏପରି କଥା ଶୁଣି ଭଗବାନ୍ ଖିଲିଖିଲି ହୋଇ ହସିବାରେ ଲାଗିଲେ । ଭଗବାନଙ୍କର ଏପରି ବିଦ୍ରୁପପୂର୍ଣ୍ଣ ଅଟ୍ଟହାସ୍ୟ ଦେଖି ବୃକାସୁର ଚକିତ ହୋଇଗଲା । ସେ ସଂକିତ ହୋଇଗଲା, ଏବଂ ବଟୁବେଶଧାରୀ ଭଗବାନ୍‌ଙ୍କୁ ପଚାରିଲା-'ଆପଣ ଏମିତି ହସୁଛନ୍ତି କାହିଁକି ?''

''ଭଗବାନ୍ କହିଲେ, 'ତୁମର ମୂର୍ଖ ପଣିଆ ଦେଖି ।''

''ବୃକାସୁର କହିଲା, ' ମୂର୍ଖାମୀ କ'ଣ କଲି ଆଜ୍ଞା ?''

''ଭଗବାନ କହିଲେ, 'ତୁମେ କ'ଣ ଏହା ସମ୍ଭବ ହୋଇପାରେ ବୋଲି ଭାବୁଛ ? ଏପରି କ'ଣ ହୋଇପାରେ ? ଶମ୍ଭୁଙ୍କର କ'ଣ ଏପରି ବର ପ୍ରଦାନ କରିବାର ଶକ୍ତି ଅଛି ?''

''ଅସୁର କହିଲା, 'ନାହିଁ କାହିଁକି ? ମୋତେ ନାରଦ କହିଛନ୍ତି ଯେ ଶମ୍ଭୁଙ୍କ ପାଖରେ ସକଳ ପ୍ରକାର ଶକ୍ତି ଅଛି ।'

''ଭଗବାନ କହିଲେ, 'ନାରଦଙ୍କ କଥା କୁହନାହିଁ । ସେ ତ ଯା କଥା ତାକୁ ତା କଥା ଯାକୁ କହିବାରେ ଧୁରନ୍ଧର । ଅନ୍ୟଙ୍କୁ ଲଗେଇ ଦେଇ ନିଜେ ଖେଳ ଦେଖୁଥାନ୍ତି । ହଁ, ଶିବଙ୍କ ପାଖରେ ପୂର୍ବେ ଶକ୍ତି ଥିଲା । କିନ୍ତୁ ଦକ୍ଷର ଅଭିଶାପ ପାଇବା ପରେ ସେ ତ ପ୍ରେତ ପିଶାଚ ହୋଇଯାଇଛନ୍ତି । ତାଙ୍କର ଏପରି ବର ଦେବାର ସାମର୍ଥ୍ୟ ଥିବା ଭଳି ମୁଁ କାଇଁ ବିଶ୍ୱାସ କରି ପାରୁନାହିଁ ।'

ବୃକାସୁର କହିଲା, 'ଆଜ୍ଞା, ନା ! ସମସ୍ତେ କୁହନ୍ତି, ଭଗବାନ ଭୂତନାଥ ହେଉଛନ୍ତି ଜଗଦ୍‌ଗୁରୁ । ସେ ଯାହା କହି ଦିଅନ୍ତି ତାହା ହୋଇଯାଏ ।'

ଭଗବାନ କହିଲେ, 'ଏଥିରେ ବିବାଦ କରିବାର କ'ଣ ଅଛି ? ପ୍ରତ୍ୟକ୍ଷରେ ପ୍ରମାଣ ଥାଉ ଥାଉ ବାଦ୍-ବିବାଦର କି ଆବଶ୍ୟକତା ? ଆପଣଙ୍କ ପାଖରେ କ'ଣ ମୁଣ୍ଡ ନାହିଁ ? ଆପଣ ଆପଣଙ୍କ ମୁଣ୍ଡ ଉପରେ ହାତରଖି ପରୀକ୍ଷା କାହିଁକି କରିନେଉ ନାହାନ୍ତି ? ଯଦି ଶଙ୍କରଙ୍କ ବର ଅସତ୍ୟ ହୋଇଯାଏ ତେବେ ଏପରି ଠକକୁ ଏହିଠାରେ ମାରିଦେବ । ସେ ଆଉ ଅନ୍ୟଙ୍କୁ ଠକି ପାରିବେ ନାହିଁ । ସେ ତ ତୁମ ସାଥିରେ ଅଛନ୍ତି ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ମୂର୍ଖ ଯେପରି ଯେଉଁ ଡାଳରେ ବସିଥାଏ କୁରାଢ଼ି ଦ୍ୱାରା ସେହି ଡ଼ାଳକୁ କାଟେ, ଠିକ୍ ସେହିଭଳି ଭଗବାନଙ୍କ ମାୟାରେ ମୋହିତ ବୃକାସୁର

ସେତେବେଳେ ଜାଣି ପାରିଲା ନାହିଁ ଯେ ସେ ନିଜ ମୁଣ୍ଡ ଉପରେ ହାତ ରଖିଦେଇଛି । ତତ୍‌କାଳ ବଜ୍ରାଘାତରେ କଟି ପର୍ବତ ଶିଖର ତଳେ ପଡ଼ିବା ଭଳି ଅସୁର ମରି ତଳେ ପଡ଼ିଗଲା । ଭଗବାନଙ୍କର ବିଚିତ୍ର ଆଉ ମଧୁମୟ କୋମଳ ବାଣୀରେ ତାର ବୁଦ୍ଧି ଭ୍ରମରେ ପଡ଼ିଗଲା ଓ ସେହି କୁବୁଦ୍ଧିର ନାଶ ହେଇଗଲା । ଠିକ୍ ସେତିକି ବେଳେ ଆକାଶରେ ରହି ଦେବତାମାନେ ପୁଷ୍ପ ବୃଷ୍ଟି କଲେ । 'ଭଗବାନଙ୍କର ଜୟ ହେଉ, ଭଗବାନଙ୍କର ଜୟ ହେଉ' ବୋଲି ଶବ୍ଦରେ ଗଗନପବନ ମୁଖରିତ ହୋଇଗଲା କ୍ରୁରମତୀ ଖଳ ଅସୁରର ମୃତ୍ୟୁ ହୋଇଯିବା ପରେ ଦେବତା, ଋଷି, ପିତୃ ଆଉ ଗନ୍ଧର୍ବଗଣ ପରମ ହର୍ଷର ସହିତ ପୁଷ୍ପ ବୃଷ୍ଟି କରିବାରେ ଲାଗିଲେ । ଏହିଭଳି ଭାବରେ ଭଗବାନ ଶଙ୍କର ଉନ୍ମତ୍ତ ଅସୁର ହାତରୁ ରକ୍ଷା ପାଇଥିଲେ ।

ଭଗବାନ ଦେଖିଲେ, ପ୍ରସନ୍ନତା ହେତୁ ଭଗବାନ ଶଙ୍କରଙ୍କର ତିନୋଟି ଯାକ ନେତ୍ର ଉତ୍‌ଫୁଲ୍ଲିତ ହୋଇଯାଇଛି । ସେ ହସି ହସି ଶଙ୍କରଙ୍କୁ ପଚାରିଲେ, '' ମହାରାଜ ! ଦଣ୍ଡବତ । ଆଉ, କେମିତି ହେଲା ?'' ଶିବ ଲଜ୍ଜିତ ହୋଇ କହିଲେ, ଭଗବାନ ! ଅତି ଉତ୍ତମ ହେଲା । ''ଆପଣ ଅପୂର୍ବ ସୁନ୍ଦର ଉପାୟରେ ଦଷ୍ଟକୁ ବିନାଶ କଲେ ।''

ଭଗବାନ୍ କହିଲେ, ''ହେ ଦେବାଧିଦେବ ! ହେ ମହାଦେବ ! ମୁଁ କ'ଣ ଏଇ ଦୁଷ୍ଟକୁ ମାରିଛି ? ତାକୁ ତା ପାପ ହିଁ ମାରିଛି । ଯିଏ ଯେଉଁ ଥାଳିରେ ଖାଏ ସେହି ଥାଳିରେ ପରୁଷ କରିବା ଠାରୁ ଅଧିକ ପାପ ଅଛି କି ? ଯିଏ ବର ପ୍ରଦାନ କରେ ତାକୁ ଭସ୍ମ କରିବାକୁ ଉଦ୍ୟମ କଲା । ମହାନ୍ ପୁରୁଷଙ୍କ ସହିତ ଦ୍ୱେଷ କରି, ଅପରାଧ କରି, କେହି କେବେ କୁଶଳରେ ଥିବା ଆପଣ ଜାଣିଛନ୍ତି କି ? ସାଧୁଙ୍କୁ ଅପମାନ କରିବା ଲୋକ ଦୁର୍ଗତି ପାଇଥାନ୍ତି । ସେପରି ସ୍ଥଳରେ ଆପଣଙ୍କ ଭଳି ସାଧୁ ଶିରୋମଣି ଜଗଦଗୁରୁ ବିଶ୍ୱେଶ୍ୱରଙ୍କ ଅପରାଧ କରିବା ଲୋକ ସମ୍ବନ୍ଧରେ ଆଉ କ'ଣ କୁହାଯାଇ ପାରନ୍ତା ? ସେ ତ ସେଇ ମୁହୂର୍ତ୍ତରେ ମରିଯାଇଥିଲା, ଯେତେବେଳେ ତା ମନକୁ ଏହି ପାପ କଥା ସ୍ପର୍ଶ କଲା । '' ଏହିପରି ଶଙ୍କର ଭଗବାନଙ୍କ ସହିତ ଆଳାପ ଆଲୋଚନା କରି, ସେଠାରୁ ବିଦାୟ ନେଇ କୈଳାସକୁ ପ୍ରତ୍ୟାବର୍ତ୍ତନ କଲେ । ଭଗବାନଙ୍କ ସମ୍ମୁଖରେ ବୃକାସୁର ଶରୀର ତ୍ୟାଗ କଲା । ଭଗବାନଙ୍କ ସହିତ କଥାବାର୍ତ୍ତା କରୁଥିବା ସମୟରେ ସେ ଭସ୍ମ ହେଲା । ଏଣୁ ସଂସାର-ସାଗରରୁ ମୁକ୍ତ ହୋଇଗଲା । ଭସ୍ମ ହେବାରୁ ସେ ଭସ୍ମାସୁର ନାମରେ ପରିଚିତ ହୋଇଗଲା ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ଏହିପରି ଆମର ଭୋଳାବାବା ବର ଦେବାରେ ଅଗ୍ରଣୀ । ଆଉ କ୍ରୋଧକଲେ ତାର ଅନ୍ତ ମଧ କରିଦିଅନ୍ତି । କମ ପରିଶ୍ରମ କରି ଅଧିକ ଧନ ପ୍ରାପ୍ତ ହେଉଥିବା ଲୋକଙ୍କୁ ସୁଖ ଶାନ୍ତି ମିଳେନାହିଁ । ଯେଉଁ ଲୋକ ଏହି ହରିହରାତ୍ମକ ଚରିତକୁ ଶୁଣନ୍ତି, ଶୁଣାନ୍ତି ସେ ବି ସଂସାର ବନ୍ଧନରୁ ମୁକ୍ତ ହୋଇଯାଏ । ପ୍ରସଙ୍ଗକ୍ରମେ ମୁଁ ଏହି ବୃକାସୁର ଭସ୍ମ ହେବା କଥା କହିଲି । ଏଥର ଆପଣମାନେ ଆଉ କ'ଣ ଶୁଣିବାକୁ ଚାହୁଁଛନ୍ତି ?''

ମହର୍ଷି ଶୌନକ କହିଲେ,'' ହେ ମହର୍ଷି ସୂତ ! ଆପଣ ଆମକୁ ହରିହରାତ୍ମକ ଚରିତ ଶୁଣାଇଲେ, ଏହା ବାସ୍ତବରେ ଅତି ଉତ୍ତମ କଥା, କିନ୍ତୁ ତିନି ଦେବତାଙ୍କ ମଧ୍ୟରେ ବଡ଼ କିଏ ତାହା ତ ଜଣା ପଡ଼ିଲା ନାହିଁ । ଆପଣ ଏବେ ଆମକୁ କୁହନ୍ତୁ, ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ମଧ୍ୟରେ ଶ୍ରେଷ୍ଠ କିଏ ?''

ଏପରି କଥା ଶୁଣି ମହର୍ଷି ସୂତ କିଛି ସମୟ ପାଇଁ ଚିନ୍ତାରେ ପଡ଼ିଗଲେ ଏବଂ ଧୀରେ ଧୀରେ କହିବାକୁ ଆରମ୍ଭ କଲେ - '' ମହର୍ଷି ! ଶ୍ରେଷ୍ଠ କାହାକୁ କହିବା ? ଶ୍ରେଷ୍ଠତା ଓ କନିଷ୍ଠତା ତ ନିଜ ମନର ଭାବନା । ଜଣେ ଯାହାଙ୍କୁ ସର୍ବଶ୍ରେଷ୍ଠ ବୋଲି କୁହେ; ଅନ୍ୟ ଜଣେ ତାକୁ ନିକୃଷ୍ଟ ବୋଲି କହିଥାଏ । ମଣିଷ ପେଟରେ ଅନ୍ନ ଯେପରି ଥାଏ, ସେହିପରି ଏଉଡ଼ି ଆସେ । ମୁଁ ହେଉଛି ବୈଷ୍ଣବ ଏବଂ ଏହି ସମୟରେ ବୈଷ୍ଣବୀ କଥା କହୁଛି । ଏଣୁ ମୁଁ ଶ୍ରୀବିଷ୍ଣୁଙ୍କୁ ସର୍ବଶ୍ରେଷ୍ଠ ବୋଲି କହିବି ।''

ମହର୍ଷି ଶୌନକ ପଚାରିଲେ- '' ହେ ମହର୍ଷି ସୂତ ! ଭଗବାନ ବିଷ୍ଣୁଙ୍କୁ ସର୍ବଶ୍ରେଷ୍ଠ ବୋଲି ଆପଣ କିପରି କହୁଛନ୍ତି ? ଏପରି କହିଦେଲେ କ'ଣ ଆମେ ମାନିନେବା ଠିକ୍ ହେବ ? ଆପଣଙ୍କୁ ଏଥିପାଇଁ ପ୍ରମାଣ ଦେଖାଇବାକୁ ହେବ, ଯୁକ୍ତି ଦ୍ୱାରା ସିଦ୍ଧ କରିବାକୁ ହେବ ।''

ମହର୍ଷି ସୂତ କହିଲେ, ''ମହାରାଜ ! ମୁଁ ପ୍ରଥମରୁ କହିଦେଇଛିଯେ, ଏହି ବିଷୟ ତର୍କର ବିଷୟ ନୁହେଁ । ଏହି ପ୍ରସଙ୍ଗକୁ ବାଦ-ବିବାଦର ରଙ୍ଗମଞ୍ଚକୁ ନେଇ ଆସିଲେ ଅକାରଣ ରାଗ-ବିଦ୍ୱେଷ ସୃଷ୍ଟି ହେବ । ତ୍ରିଦେବଙ୍କର ତ କିଛି ଲାଭ କି କ୍ଷତି ହେବନାହିଁ । ଆପଣ କହିଦେଲେ ସେମାନେ କେହି ଛୋଟ ବା ବଡ଼ ତ ହୋଇଯିବେ ନାହିଁ । ଆପଣ କହିଦେଲେ ସେମାନେ ଯେପରି ଥିଲେ ସେହିପରି ହିଁ ରହିବେ । କିନ୍ତୁ ମଣିଷ ସ୍ୱଭାବର ବଶୀଭୂତ ହୋଇ ହଣା-ମରା କରନ୍ତି, ଲଢ଼ନ୍ତି, ଠେଲାପେଲା ହୁଅନ୍ତି । ଏଣୁ ବୈଷ୍ଣବଙ୍କ ପାଇଁ ବିଷ୍ଣୁ ହେଉଛନ୍ତି ଶ୍ରେଷ୍ଠ, ଶୈବଙ୍କ ପାଇଁ ଶିବ ହେଉଛନ୍ତି ଶ୍ରେଷ୍ଠ । ଏପରି ପ୍ରଶ୍ନ ଥରେ ଋଷିମଣ୍ଡଳୀରେ ବି ଉଠିଥିଲା । ଖୁବ୍ ବାଦ ବିବାଦ ହେଲା । ପରିଶେଷରେ ଯାହା ନିର୍ଣ୍ଣୟ ହେଲା, ସେହି ପ୍ରସଙ୍ଗକୁ ଆମୂଳ-ଚୂଳ କହୁଛି, ଆପଣମାନେ ଶୁଣନ୍ତୁ । ଆପଣଙ୍କ ପ୍ରଶ୍ନର ଉତ୍ତର ଆପଣ ଏଥିରୁ ପାଇଯିବେ ।''

**ଛପ୍ପୟ**

*ହରି ସବ ସମୁଝି ରହସ୍ୟ ରୂପ ବଟୁ ଧରି ମଗ ଆୟେ ।*
*ବୃକତେଂ ବୋଲେ-ବୀର ! ଫିରୌ ଚ୍ୟୌଁ ତୁମ ଘବରାୟେ ।।*
*କହେଁୟା ଅସୁର ସବ ବୃତ୍ତ ବତାଈ ଅପନୀ ଇଚ୍ଛା ।*
*ବୋଲେ ହରି ନିଜ ଶୀଶ ହାଥ ଧରି କରହୁ ପରୀଛା ।।*
*ସୁନି ଖଲ ନିଜ ସିର କର ଧର୍‌ୟୋ, ଭୟୋ ଭସ୍ମ ଶିବ ବଶ ଗୟେ ।*
*ଏସୋ ବର ଫିରି ଦେହିଁ ନହିଁ, ହରି ହର ତେଂ କହି ହଁସି ଗୟେ ।।*



# ତ୍ରିଦେବଙ୍କ ଭିତରେ ଶ୍ରେଷ୍ଠ କିଏ ?

**ସରସ୍ୱତ୍ୟାସ୍ତଟେ ରାଜନ୍ ନୃଷୟଃ ସତ୍ରମାସତ ।**
**ବିତର୍କଃ ସମଭୂତ୍ତେଷାଂ ତ୍ରିଷ୍ୱଧୀଶେଷୁ କୋ ମହାନ୍ ॥☆**

(ଶ୍ରୀଭା: ୧୦ମ ସ୍କ. ୮୯ ଅ. ୧ ଶ୍ଳୋକ)

**ଛପ୍ପୟ**

*ଔର ସୁନୋ ଇକ ଚରିତ ଚଲୀ ଚରଚା ମୁନି ମାହୀଂ ।*
*କରହିଂ ଯଜ୍ଞ ଋଷି ବିଷଦ ସରସ୍ୱତି ତଟ କେ ପାହୀଂ ॥*
*ହରି, ହର, ଅଜ କେ ବୀଚ କୌନ ସୁର ଶ୍ରେଷ୍ଠ କହାବେଁ ।*
*ଭୃଗୁ ମୁନି କରେ ନିଯୁକ୍ତ ପରୀକ୍ଷା ଲୈବେ ଜାବେଂ ॥*
*ପ୍ରଥମ ଗୟେ ତେ ଅଜ ନିକଟ, କରୀ ନ ଦଣ୍ଡ ପ୍ରଣାମ ମୁନି ।*
*ସୁତ ଅବିନୟ ଲଖି ଅତି କୁପିତ, ଭୟେ ନ ବୋଲେ ବ୍ରହ୍ମ ମୁନି ॥*

ଯିଏ ଅନ୍ୟକୁ ସମ୍ମାନ ଦିଏ ସେ ନିଜର ହିଁ ସମ୍ମାନ ବଢ଼ାଇଥାଏ । ଯେ ନିଜକୁ ଶ୍ରେଷ୍ଠ ବୋଲି ଭାବି ସମସ୍ତଙ୍କଠାରୁ ସମ୍ମାନ ପାଇବାପାଇଁ ଲାଳାୟିତ ରହିଥାଏ, ସେ ଶ୍ରେଷ୍ଠ ବୋଲି କୁହାଯାଏ ନାହିଁ । ମାଗିବା ଲୋକଠାରୁ ଦାନ କରିବା ଲୋକ ହେଉଛି ଶ୍ରେଷ୍ଠ । ନିଜେ ଖାଉଥିବା ଲୋକ ଅପେକ୍ଷା ଖୋଇବା ଲୋକ ହେଉଛି ଶ୍ରେଷ୍ଠ ।ଅନ୍ୟକୁ ସମ୍ମାନ ଦେବା ଦ୍ୱାରା ନିଜର ମାନ ଅଧିକରୁ ଅଧିକ ବଢ଼ିଥାଏ । ଦର୍ପଣକୁ ଦେଖି ଆମେ ଆମ ମୁହଁକୁ ସଜାଡୁ । ଦର୍ପଣ ଯେଉଁଭଳି ନିର୍ଦ୍ଦେଶ ଦିଏ ଆମେ ଠିକ୍ ସେହିଭଳି କରିଥାଉ । ଏଥିରେ ଦର୍ପଣର କ'ଣ କିଛି ଲାଭ ହୁଏ ? ଦର୍ପଣର ପ୍ରସନ୍ନତା ସେ ପର୍ଯ୍ୟନ୍ତ ଥାଏ ଯେପର୍ଯ୍ୟନ୍ତ ମୁହଁ ସଜାଡ଼ି ହୋଇ ନଥାଏ । ମୁହଁ ସଜଡ଼ା ହୋଇଯିବା ପରେ ଦର୍ପଣ ଯେଉଁଠି ମାନେ ସେଇଠି ରଖିଦେଉ, ହେଲେ ଆମ ମୁହଁର ଶୋଭାଇ ବଢ଼ିଥାଏ । ଏହାପରେ ଆମେ ଯେଉଁଆଡ଼େ ଯିବା ଆମର ସମ୍ମାନ ହେବ । ଆମ ଘରକୁ ଭଗବଦ୍‌ଭକ୍ତ ସାଧୁ ମହାତ୍ମାମାନେ ଆସନ୍ତି । ଆମେ ସେମାନଙ୍କର ଶ୍ରଦ୍ଧା ସହିତ ଯଥା ଶକ୍ତି ସତ୍କାର କରୁ । ମହାତ୍ମାମାନେ ସ୍ୱାଗତ ସତ୍କାର ପାଇବା ପାଇଁ ଗୁରୁତ୍ୱ ଦିଅନ୍ତି ନାହିଁ ।

---

☆ ପୂର୍ବେ ଯେ ସରସ୍ୱତୀ ତୀରେ । ମିଳି ସକଳ ମୁନିବରେ ॥
ଯଜ୍ଞ କରିବା ଅନୁମତେ । ବିଚାର କଲେ ସର୍ବଶାସ୍ତ୍ରେ ॥
ଜଗତେ ଦେବଦେବ ତିନି । ବିଷ୍ଣୁ ଶଙ୍କର ପଦ୍ମଯୋନି ॥
ଏ ତିନି ମଧ୍ୟେ ଯେ ପ୍ରଧାନ । ସେ ଆମ୍ଭ ଯଜ୍ଞରେ ବରଣ ॥

ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ ୯୫ ଅ.

କିନ୍ତୁ ସେମାନଙ୍କୁ ସମ୍ମାନ ପ୍ରଦାନ କରିବା ଦ୍ୱାରା ଗୌରବ ଆମର ବଢ଼ିଥାଏ । ସମସ୍ତେ କୁହନ୍ତି- 'ଆଜ୍ଞା ! ତାଙ୍କ ବିଷୟରେ ଆଉ କ'ଣ କହିବା ! ତାଙ୍କ ଘରକୁ ତ ସାଧୁମହାତ୍ମାମାନେ ଆସନ୍ତି, ସବୁବେଳେ ଯା-ଆସ କରନ୍ତି ।' ସତ୍କୃତ ସନ୍ଥ ବି ସୁଯୋଗ ପାଇବା କ୍ଷଣି ପ୍ରସଙ୍ଗକ୍ରମେ ସବୁଆଡ଼େ କହି ବୁଲନ୍ତି, 'ସତ୍କାର ଆମେ ଯଦି କେଉଁଠି ପାଇଛୁ, ତେବେ ତା' ଘରେ । ସାଧୁ ସନ୍ଥଙ୍କୁ ସେବା କରିବାରେ ତା'ର ଶ୍ରଦ୍ଧା ଅତି ଉଚ୍ଚକୋଟୀର ।'

ଠିକ୍ ଏହିଭଳି କାହାର କାହାର ଘରେ ମନ୍ଦିର ଗୋଟିଏ ଗୋଟିଏ ଅଛି । ଭଗବାନଙ୍କର ମୂର୍ତ୍ତି ରଖି ପୂଜାପାଠ କରନ୍ତି । **ଠାକୁର ମୂର୍ତ୍ତି ପୂଜା ପାଇଁ ଚାହିଁ ବସିନଥାନ୍ତି । ପୂଜା ପାଇବା ପାଇଁ ମୂର୍ତ୍ତି ଅପେକ୍ଷା କରି ବସି ନ ଥାନ୍ତି ।** ଫୁଲଟିଏ ଚଢ଼ାଇ ଦେଲେ ଠାକୁର ଖୁସୀ ହୁଅନ୍ତି, ଷୋଡ଼ଶୋପଚାରରେ ପୂଜା କଲେ ବି ତାଙ୍କର (ମୂର୍ତ୍ତିର) କିଛି ଯାଏ ଆସେ ନାହିଁ । କିନ୍ତୁ ଆମେ ମୂର୍ତ୍ତିର ଯେତେ ବୈଭବଶାଳୀ ପୂଜା କରିବା, ସେତେ ପରିମାଣରେ ପୂଜା କରୁଥିବା ଲୋକର ମାନ ବଢ଼ିଥାଏ, ନାମ ବଢ଼ିଥାଏ, ଆଦର ବଢ଼ିଥାଏ । ଅମୁକ ଲୋକ କି ସୁନ୍ଦର ପୂଜା କରୁଛି । ସେପରି ଲୋକର ପୂଜା ଦେଖି ଆମେ ସ୍ୱତଃ ନତମସ୍ତକ ହେଉ । ଏହା ଅତି ସରଳ କଥା । ସିଧା ସାଦା କଥା ହେଉଛି ଅନ୍ୟ ଲୋକମାନେ ତାକୁ ଭଲ ପାଆନ୍ତି, ମାନ କରନ୍ତି । କିନ୍ତୁ ଆଜିକାଲି ଲୋକମାନଙ୍କ ମନରେ ମିଥ୍ୟାଭିମାନ ବଢ଼ି ଯାଇଛି । ଏପରି ବଢ଼ି ଯାଇଛି ଯେ ସେମାନେ ଅନ୍ୟକୁ ସମ୍ମାନ ଆଦୌ ଦିଅନ୍ତି ନାହିଁ, ଦେବାକୁ ଚାହାନ୍ତି ନାହିଁ । ନିଜେ ପୂଜା ପାଇବାକୁ ମନ କରନ୍ତି । **ବାସ୍ତବରେ ସେହିଁ ସମ୍ମାନିତ ହୋଇଥାଏ, ଯିଏ ସମସ୍ତଙ୍କୁ ସମ୍ମାନ କରେ । ଆମକୁ କେହି ଅପମାନ କରୁଥିଲେ ବି ଆମେ ତାକୁ ସମ୍ମାନ ଦେଉଥିବା ଉଚିତ । ଶ୍ରେଷ୍ଠତାର ଏହାହିଁ ହେଉଛି ସର୍ବୋତ୍ତମ ଗୁଣ ।**

ମହର୍ଷି ସୂତ କହୁଛନ୍ତି, " ହେ ମୁନିଗଣ ! ତାହା ହେଲେ ଶୁଣନ୍ତୁ, ମୁଁ ଆପଣମାନଙ୍କୁ ଆଉ ଗୋଟିଏ କଥା ଶୁଣାଉଛି । ଅନେକ ଦିନ ତଳର କଥା । ସରସ୍ୱତୀ ନଦୀ କୂଳରେ ସମସ୍ତ ମୁନି ଋଷି ସମାଜ ଏକତ୍ରିତ ହୋଇ ଏକ ମହାନ ବ୍ରହ୍ମସୂତ୍ର-ଯଜ୍ଞ କରୁଥିଲେ । ଯଜ୍ଞ ସମାପ୍ତି ପରେ ଋଷିମାନେ କୌଣସି ଏକ ପ୍ରସଙ୍ଗରେ ଖୁବ୍ ଚର୍ଚ୍ଚା ତଥା ତର୍କ-ବିତର୍କ କରିବାରେ ଲାଗିଲେ । କାରଣ, 'ବାଦେ-ବାଦେ ଜାୟତେ ତତ୍ତ୍ୱବୋଧଃ ।' ଏହିଭଳି ଆଗ୍ରହ ଓ ପ୍ରେମର ସହିତ ପଚରା-ଉଚୁରା ଦ୍ୱାରା ଅନେକ ସନ୍ଦେହ ମୋଚନ ହୋଇଥାଏ । ଅନେକ କଥାର ସିଦ୍ଧାନ୍ତ ହୋଇଯାଏ । ଦିନେ ମୁନି ସମାଜରେ 'ତିନି ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ ଦେବତା କିଏ' ବୋଲି ପ୍ରଶ୍ନ ଉଠିଲା ।

ଏହି ପ୍ରଶ୍ନ ଉପରେ ଅନେକ ଦିନ ପର୍ଯ୍ୟନ୍ତ ବାଦବିବାଦ ଚାଲିଲା । କେହି ବ୍ରହ୍ମାଙ୍କୁ ଶ୍ରେଷ୍ଠ କହିବା ବେଳେ ଅନ୍ୟଜଣେ ମହାଦେବଙ୍କୁ ସର୍ବଶ୍ରେଷ୍ଠ ବୋଲି କହଲେ । ପୁଣି ଦଳେ ବିଷ୍ଣୁଙ୍କୁ

ସର୍ବଶ୍ରେଷ୍ଠ ବୋଲି କହିଲେ । ଅନେକ ସମୟ ପର୍ଯ୍ୟନ୍ତ ବିବିଧ ପ୍ରକାର ଶାସ୍ତ୍ରାର୍ଥ ହେବାପରେ ବି ଯେତେବେଳେ ନିର୍ଦ୍ଦିଷ୍ଟ ସମାଧାନ ହୋଇପାରିଲା ନାହିଁ , ସେତେବେଳେ ଜଣେ ମୁନି କହିଲେ, 'ଆଲୋଚନା ମାଧ୍ୟମରେ ଏହି ପ୍ରଶ୍ନର ସମାଧାନ ଅସମ୍ଭବ ଜଣା ପଡୁଥିବାରୁ , ଜଣଙ୍କୁ ନିଯୁକ୍ତି କରିଦେବା ଉଚିତ ହେବ । ସେ ତିନି ଦେବତାଙ୍କ ପାଖକୁ ଯିବେ । ନିଜେ ସେହି ଦେବତାମାନଙ୍କର ଗତିବିଧି ଅନୁଭବ କରିବେ, ଅବଲୋକନ କରିବା ପରେ ପୁଙ୍ଖାନୁପୁଙ୍ଖ ବିବରଣୀ ମୁନିମଣ୍ଡଳୀରେ ଉପସ୍ଥାପନ କରିବେ । ଏହାପରେ ମୁନିମଣ୍ଡଳୀ ଯାଙ୍କୁ ସିଦ୍ଧାନ୍ତ କରିବେ ସେ ହିଁ ଶ୍ରେଷ୍ଠ ବୋଲି ବିବେଚିତ ହେବେ ।''

ଏହି ପ୍ରସ୍ତାବ ସମସ୍ତଙ୍କ ମନକୁ ପାଇଲା । ଏଥର କାହାକୁ ପଠାଯିବ ହେଲା ଏକ ଚିନ୍ତାର ବିଷୟ । ମତାମତ ସଂଗ୍ରହ କରାଗଲା । ଜଣେ କହିଲେ, 'ମହର୍ଷି ଭୃଗୁ ଅତି ବୁଦ୍ଧିମାନ୍ । ସେ ବ୍ରହ୍ମାଙ୍କର ପୁତ୍ର, ପକ୍ଷପାତ ରହିତ, ସେ ଅତି ତେଜସ୍ୱୀ, ସେ ପୁଣି ପରମ ତେଜସ୍ୱୀ ଅଗ୍ନିଙ୍କୁ ଅଭିଶାପ ଦେଇ ସର୍ବଭକ୍ଷ କରିଦେଇଛନ୍ତି । ଆମ ଦୃଷ୍ଟିରେ ଦେବତାମାନଙ୍କୁ ପରୀକ୍ଷା କରିବା ପାଇଁ ଏହି ମହର୍ଷି ଉପଯୁକ୍ତ । ଭୃଗୁ ହିଁ ସର୍ବୋତ୍ତମ ପାତ୍ର ।'

ଏହି ପ୍ରସ୍ତାବକୁ ସମସ୍ତେ ସମର୍ଥନ କଲେ । ଏଥିରେ ମୁନିମଣ୍ଡଳୀ ମହର୍ଷି ଭୃଗୁଙ୍କୁ ଆଦେଶ ଦେଇ କହିଲେ, 'ଆପଣ ତିନି ଦେବତାଙ୍କ ପାଖକୁ ଯାଇ ଯାହା ଉଚିତ ମନେକରୁଛନ୍ତି ସେପରି ପରୀକ୍ଷା କରନ୍ତୁ । ଏହାପରେ ମୁନିମଣ୍ଡଳୀରେ ଉପସ୍ଥାପନ କରନ୍ତୁ ।'

ମୁନିସମାଜଙ୍କ ଆଦେଶକୁ ଗ୍ରହଣକରି ମହର୍ଷି ଭୃଗୁ ସେଠାରୁ ବାହାରି ଆସିଲେ । ସେ ସର୍ବପ୍ରଥମେ ପିତା ବ୍ରହ୍ମାଙ୍କ ପାଖକୁ ଯିବା ଉଦ୍ଦେଶ୍ୟରେ ବ୍ରହ୍ମଲୋକରେ ପହଞ୍ଚିଲେ । ବ୍ରହ୍ମା ସେତେବେଳେ ସଭାରେ ବସିଥିଲେ । ଦେବତା, ଋଷି, ପିତର, ସନକାଦି, ମହାନ୍ ମୁନିପୁଙ୍ଗବଗଣ, ତୀର୍ଥ ସରିତା ଗଣ, ଅପ୍ସରାଗଣ, ଯକ୍ଷ, କିନ୍ନର, ରାକ୍ଷସ ତଥା ଅନ୍ୟାନ୍ୟ ସମସ୍ତ ଜୀବଙ୍କ ପ୍ରତିନିଧି ସଭାରେ ବସି, ଲୋକପିତାମହ ବ୍ରହ୍ମାଙ୍କର ଉପାସନା କରୁଥିଲେ । ସଭାକୁ ଯେଉଁମାନେ ଆସୁଥିଲେ ସେମାନେ ପ୍ରଥମେ ବ୍ରହ୍ମାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରୁଥିଲେ, ହାତ ଯୋଡ଼ି ତାଙ୍କୁ ସ୍ତୁତି କରୁଥିଲେ, ବ୍ରହ୍ମାଙ୍କ ସଙ୍କେତ ପାଇବାପରେ ତଳେ ଥିବା ଆସନରେ ବସିଯାଉଥିଲେ ।

ମହର୍ଷି ଭୃଗୁ ସେହି ସମୟରେ ପହଞ୍ଚିଗଲେ । ଆଜି ତ ସେ ବ୍ରହ୍ମାଙ୍କ ପୁତ୍ର ରୂପରେ ଆସି ନାହାନ୍ତି । ଆଜି ସେ ଋଷିସମାଜର ପ୍ରତିନିଧି ରୂପରେ ଆସିଛନ୍ତି । ସେ ଜଣେ ପରୀକ୍ଷକ ହିସାବରେ ଆସିଛନ୍ତି । ତେଣୁ ସେ ନା ବ୍ରହ୍ମାଙ୍କୁ ପ୍ରଣାମ କଲେ, ନା ତାଙ୍କର ସ୍ତୁତି । ଏପରି ହାତ ବି ଯୋଡ଼ିଲେ ନାହିଁ । ଚୁପ୍‌ଚାପ୍ ଯାଇ ତାଙ୍କ ପାଖରେ ବସିଗଲେ ।

ନିଜର ପୁଅ ଭୃଗୁଙ୍କର ଏପରି ଅବିନୟ ଦେଖି ବ୍ରହ୍ମା ଅତ୍ୟଧିକ କୁପିତ ହୋଇ ପଡ଼ିଲେ । ଆମେ ଏକାନ୍ତରେ ଘରେ ବସିଥିଲେ କଥା ଅଲଗା ପ୍ରକାରର, ନମସ୍କାର, ପ୍ରଣାମ କଲେ ନକଲେ କିଛି ଯାଏ ଆସେ ନାହିଁ । କିନ୍ତୁ ସଭାରେ ସମସ୍ତେ ଥିବାବେଳେ କେହି ଅଶିଷ୍ଟତା କଲେ ଘୋର ଅପମାନ ହୋଇଥାଏ । ଅନ୍ୟଙ୍କ ଉପରେ ବି ଏହାର ଖରାପ ପ୍ରଭାବ ପଡ଼ିଥାଏ । ଅନ୍ୟମାନେ ଭାବନ୍ତି, 'ଯାଙ୍କର ନିଜ ପୁଅ ଯେତେବେଳେ ଯାଙ୍କୁ ସମାଦାର କରୁନାହିଁ, ସେତେବେଳେ ଆମେ କାହିଁକି କରିବା ?' ଭୃଗୁ ତ ଜଣେ ଛୋଟ ପିଲା ନୁହନ୍ତି, ସଦାଚାର ଜାଣି ନାହାନ୍ତି ବୋଲି ତ କହି ପାରିବା ନାହିଁ । ଆଜି ଯାଙ୍କର କ'ଣ ହୋଇଯାଇଛି ? ଏପରି ଅବିନୟ ଏହା ପୂର୍ବରୁ ତ ଆମ୍ଭେ କେବେ ଦେଖିନାହେଁ । ବ୍ରହ୍ମା କିନ୍ତୁ ନିଜ ତେଜରେ ପ୍ରଜ୍ୱଳିତ ହୋଇ ମନେ ମନେ ମହର୍ଷି ଭୃଗୁଙ୍କ ଉପରେ ଅତ୍ୟନ୍ତ କୁପିତ ହେଉଥିଲେ ।

ଏପରି ଭାବି ଭୃଗୁଙ୍କୁ ଧମକାଇବାକୁ ମନେ ମନେ ବ୍ରହ୍ମା ସ୍ଥିର କଲେ । ପୁଣି ଭାବିଲେ, 'କେହି ଏହା ଦେଖିଥାଇପାରେ, କେହି ଦେଖି ନଥାଇ ବି ପାରିଥାନ୍ତି, କଥା ପକାଇଦେଲେ ଚାରିଆଡ଼େ ପ୍ରଘଟ ହୋଇଯିବ । ଚୁପ୍‌ଚାପ୍ ରହିଯିବା ଶ୍ରେୟସ୍କର । ଅନ୍ୟ କେହି ହୋଇଥାନ୍ତି, ଧମକାଇ ଥାନ୍ତି । ଯାହା କରୁ, ନିଜର ତ ପୁଅ ।' ଏହିପରି ଅନେକ କଥା ଚିନ୍ତାକରି ବ୍ରହ୍ମା ଧୀରେ ଧୀରେ ଶାନ୍ତ ହୋଇଗଲେ । ଜଳର ଉତ୍ପତ୍ତି ଅଗ୍ନିରୁ ହୋଇଥାଏ, ସେଥିପାଇଁ ଅଗ୍ନି ଜଳ ଉପରେ ତାର ପ୍ରଭାବ ଦେଖାଏ ନାହିଁ । ଜଳ ସମ୍ମୁଖରେ ଶାନ୍ତ ହୋଇଯାଏ । ଠିକ୍ ଏହିପରି ବ୍ରହ୍ମାଙ୍କ ମନରେ ଉତ୍ପନ୍ନ ହୋଇଥିବା କ୍ରୋଧ ମନକୁ ମନ ଶାନ୍ତ ହୋଇଗଲା । ସେ ତାହା ପ୍ରଘଟ କଲେ ନାହିଁ । ମହର୍ଷି ଭୃଗୁ ପଦେ ବୋଲି କିଛି କହିଲେ ନାହିଁ । ସେ ପିତାଙ୍କର ମନୋଗତ ଭାବ ବୁଝିଗଲେ । ଏହାପରେ ସେ ନୀରବରେ ସେହିଠାରୁ ଉଠି ଶିବଙ୍କୁ ପରୀକ୍ଷା କରିବା ପାଇଁ କୈଳାସକୁ ଚାଲିଲେ ।

ମହର୍ଷି ଭୃଗୁ ତାଙ୍କ ଆଡ଼କୁ ଆସୁଥିବା ଦେବଦେବ ମହାଦେବ ଶିବ ଦୂରରୁ ଦେଖିଲେ । ନିଜ ଭାଇ ଭୃଗୁଙ୍କୁ ଦେଖି ଭୂତନାଥ ଭବାନୀଶଙ୍କରଙ୍କର ମନ ଆନନ୍ଦରେ ପୂରିଗଲା । ସେ ଭାଇଙ୍କୁ ଦେଖି ଆନନ୍ଦରେ ବିହ୍ୱଳିତ ହୋଇ ଆଲିଙ୍ଗନ କରିବା ପାଇଁ ଉଠି ଆସିଲେ । ସେ ତାଙ୍କର ଦୁଇ ବାହୁ ପ୍ରସାର କରି ଭୃଗୁଙ୍କୁ ଆଲିଙ୍ଗନ କରିବାପାଇଁ ଯାଉଛନ୍ତି, ଏହି ସମୟରେ ଭୃଗୁ 'ଦୂରେଇ ରୁହ, ଦୂରେଇ ରୁହ ! ମତେ ଛୁଅଁ ନାହିଁ । ମତେ ତମେ ଛୁଇଁବା ପାଇଁ ଯୋଗ୍ୟ ନୁହଁ । ତୁମର ଆଚାର ବିଚାର ଅତି ଘୃଣିତ । ମୁର୍ଦ୍ଦାରକୁ ଛୁଇଁବା ପାପ, ତୁମେ ସେପରି ଅପବିତ୍ର କଙ୍କାଳ ଶରୀରରେ ଧାରଣ କରିଛ । ମୁଣ୍ଡମାଳା ଗଳାରେ ଗଳାଇଛ । ଚିତା ଭସ୍ମ ଦେହରେ ଲଗାଉଛ । ଶ୍ମଶାନରେ ରହୁଛ; ଭୂତ, ପ୍ରେତ, ପିଶାଚଙ୍କ ସହିତ ନାଚୁଛ । ତୁମର କୌଣସି ଆଚାର ନାହିଁ, ବିଚାର ନାହିଁ, ତୁମେ କୁପଥଗାମୀ । ଏଣୁ ତୁମେ ମୋତେ ସ୍ପର୍ଶ କରିବା ଉଚିତ ନୁହେଁ ।'

ଯେଉଁ ଶିବଙ୍କ ଦର୍ଶନ ନିମନ୍ତେ ଯୋଗୀମାନେ ଲକ୍ଷ ଲକ୍ଷ ବର୍ଷ ତପସ୍ୟା କରୁଛନ୍ତି, ସେହି ଶିବ ଆଲିଙ୍ଗନ କରିବା ପାଇଁ ନିଜେ ଦୌଡ଼ି ଆସୁଛନ୍ତି, ଆଉ ଜଣେ ମୁନି ତାଙ୍କ ସ୍ପର୍ଶକୁ ବିରୋଧ କରୁଛି, ତାଙ୍କୁ ଏଣୁ ତେଣୁ କହୁଛି, ଶିବଙ୍କୁ ଏହା ଖୁବ୍ ଅପମାନ ବୋଧ ହେଲା । ଏପରି ବ୍ୟବହାରରେ ଜଣେ କ୍ରୋଧିତ ହେବା ସ୍ୱାଭାବିକ୍ କଥା । ଆଉ ତମୋଗୁଣ ସମ୍ପନ୍ନ ରୁଦ୍ରଙ୍କ ବିଷୟରେ ଅଧିକ କ'ଣ କହିବା ? କ୍ରୋଧ ବଶତଃ ଶିବଙ୍କ ଆଖି ଦୁଇଟି ଲାଲ ଲାଲ ହୋଇଗଲା । ସେ ତୀକ୍ଷ୍ଣ ଦୃଷ୍ଟିରେ ଭୃଗୁଙ୍କୁ ଚାହିଁ ତ୍ରିଶୂଳ ଉଠାଇ ମାରିବାକୁ ଉଦ୍ୟତ ହେଲେ ।

ଶିବଙ୍କ ପାଖରେ ଭଗବତୀ ଭବାନୀ ଥିଲେ । ସେ ଦେଖିଲେ - କଥା ବିଗିଡ଼ି ଯାଇଛି । ଏବେ ହଣାମରା ଉପରକୁ କଥା ଗଲାଣି । ଶିବ ତ୍ରିଶୂଳ ଉଠାଇ ଦୌଡ଼ୁଥିବା ଦେଖି ପାର୍ବତୀ ଅତି ଶୀଘ୍ର ତାଙ୍କ ସମ୍ମୁଖକୁ ଦୌଡ଼ି ତାଙ୍କ ବାଟ ଓଗାଳିଲେ । ଏବଂ ତାଙ୍କ ପାଦତଳେ ଲୋଟିପଡ଼ି ଅତି କରୁଣ ସ୍ୱରରେ କହିଲେ, 'ପ୍ରଭୁ ! ଆପଣ ଏପରି କ'ଣ କରୁଛନ୍ତି ? ଭୃଗୁ ହେଉଛନ୍ତି ଆପଣଙ୍କ ସାନଭାଇ । ସେ କିଛି ଅନୁଚିତ କଥା ଯଦି କହିଦେଇ ଥାନ୍ତି ତେବେ ଆପଣ ତାଙ୍କୁ କ୍ଷମା କରିଦେବା କଥା । ସାନ ସାନ ହିଁ ହୋଇଥାଏ । ବଡ଼ମାନେ ସାନମାନଙ୍କ ଅପରାଧକୁ କ୍ଷମା କରିଦେବା ଉଚିତ ।'

ମହର୍ଷି ସୂତ କହିଲେ, '' ହେ ମୁନିଗଣ ! ଶିବା ବୁଝାଇବାରୁ ଶିବ ଶାନ୍ତ ହେଲେ । ସେ ଭୃଗୁଙ୍କୁ ମାରିବା ପାଇଁ ଆଉ ଗଲେ ନାହିଁ । ଭୃଗୁଙ୍କର ତ ଏତିକି ମାତ୍ର ଜାଣିବାର ଥିଲା । ଏଥର ଭଗବାନ ବିଷ୍ଣୁଙ୍କୁ ସେ ଯେଉଁଭଳି ପରୀକ୍ଷା କଲେ, ସେହି ପ୍ରସଙ୍ଗ ମୁଁ କହୁଛି, ଆପଣମାନେ ଶୁଣନ୍ତୁ ।''

## ଛପ୍ପୟ

*ଭୃଗୁ ଶିବ ସନ ପୁନି ଗୟେ ଶମ୍ଭୁ ଦୌରେ ମିଳିବୈ ହିତ ।*
*କହ୍ୟୋ -ଅଘୋରୀ ଆପୁ ନ ଭେଟୁଁ ହୈ ଯହ ଅନୁଚିତ ।।*
*ମାରନ ଦୌରେ ରୁଦ୍ର ସତୀ ପଗ ପରି ଲୌଟାୟେ ।*
*କ୍ରୋଧୀ ଶିବକୁଁ ସମୁଝି ଫେରି ମୁନି ହରିପୁର ଆୟେ ।।*
*ସିର ଧରି ଲକ୍ଷ୍ମୀ ଅଙ୍କ ମହଁ, ସୋବତ ହରି ମୁନି ଜାୟ କେଂ ।*
*ଉର ମହଁ ଭାରୀ ଲାତ ଜସି, ଉଠେ ବିଷ୍ଣୁ ଘବରାୟ କେଂ ।।*



# ସତ୍ତ୍ୱମୟ ଶ୍ରୀବିଷ୍ଣୁ ସର୍ବଶ୍ରେଷ୍ଠ

ତ୍ରିବିଧାକୃତୟସ୍ତସ୍ୟ ରାକ୍ଷସା ଅସୁରାଃ ସୁରାଃ ।
ଗୁଣିନ୍ୟା ମାୟୟା ସୃଷ୍ଟାଃ ସତ୍ତ୍ୱଂ ତତ୍ତୀର୍ଥସାଧନମ୍ ॥☆

(ଶ୍ରୀ ଭା : ୧୦ମ ସ୍କନ୍ଧ, ୮୯ ଅ. ୧୯ ଶ୍ଳୋକ)

**ଛପ୍ପୟ**

*ଲାତ ଲଗତ ହୀ ଉଠେ ଚରନ ମୁନି କେ ସୁହଲାବେଂ ।*
*ପୁନି ପୁନି କରେଂ ପ୍ରନାମ ଦୀନ ହ୍ୱୈ ବଚନ ସୁନାବେଂ ॥*
*ଦ୍ୱିଜବର ! ମୋତେଂ ଭୂଲ ଭଇ ସ୍ୱାଗତ ନହିଁ କୀହ୍ନୋ ।*
*ସେବା କଛୁ ନହିଁ ବନୀ କଷ୍ଟ ଊପର ତେଂ ଦୀହ୍ନୋ ॥*
*ତବ ପଦ ହୈଂ ଅତିଶୟ ମୃଦୁଲ, ହିୟ କଠୋର ମମ ବଜ୍ର ସମ ।*
*ପହୁଁଚୀ ପଗ ପୀଡ଼ା ପ୍ରଭୋ , ଭୟେ ଦୂରି ମମ ଦୁରିତ ଭ୍ରମ ॥*

ମହାନ୍ ପୁରୁଷ ଅପମାନକୁ ବି ସ୍ୱୀକାର କରି ନିଅନ୍ତି । ସେତେବେଳେ ତାହା ମାନ ହୋଇଯାଏ । ସେମାନେ ଦୂଷଣକୁ ବି ସ୍ୱୀକାର କରିନିଅନ୍ତି, ସେତେବେଳେ ଏହା ଭୂଷଣ ହୋଇଯାଏ । ଭଗବାନ ମହାଦେବ ହଳାହଳ ବିଷ ସ୍ୱୀକାର କରି ତାକୁ କଣ୍ଠରେ ଧାରଣ କଲେ । ବିଷ ସେଠାରେ ବି ତା'ର ପ୍ରଭାବ ଦେଖାଇଲା । କର୍ପୂର ଭଳି ଗୌର ବର୍ଣ୍ଣ ବିଶିଷ୍ଟ ଶିବଙ୍କର କଣ୍ଠ ପ୍ରଦେଶ ନୀଳ ହୋଇଗଲା । ଏଥିରେ ତାଙ୍କର ଶୋଭା ବଢ଼ିଲା ସିନା କମିଲା ନାହିଁ । ସଂସାରରେ ସେ ନୀଳକଣ୍ଠ ନାମରେ ପରିଚିତ ହେଲେ, ପ୍ରସିଦ୍ଧି ଲାଭକଲେ । ଦକ୍ଷ ନାରଦଙ୍କୁ କୌଣସି ଗୋଟିଏ ସ୍ଥାନରେ ସ୍ଥିର ରହି ପାରିବେ ନାହିଁ ବୋଲି ଅଭିଶାପ ଦେଲେ । ସେହି ଅଭିଶାପକୁ ନାରଦ ଆନନ୍ଦର ସହିତ ସ୍ୱୀକାର କଲେ । ସେ ଅଭିଶାପ ବରଦାନ ଭଳି ହୋଇଗଲା । ଏବେ ନାରଦ ଚାରିଆଡ଼େ ବୁଲି ପ୍ରାଣୀଙ୍କର ହିତ ସାଧନରେ ସବୁବେଳେ ଲାଗିଛନ୍ତି, ତାଙ୍କୁ ଭଗବାନ ସମ୍ମୁଖୀନ ହେଉଛନ୍ତି । ବସ୍ତୁରେ ଗୁଣ ଦୋଷ ନଥାଏ । ପାତ୍ରକୁ

---

☆ ଯା ପ୍ରିୟ ରୂପ ସତ୍ତ୍ୱଗୁଣ । ଯା ଇଷ୍ଟ ଦେବତା ବ୍ରାହ୍ମଣ ॥
ତାହାକୁ ଯଜ୍ଞେ ପୂଜା କରି । ସକଳ ଦୁଃଖ ଅପହରି ॥
ତ୍ରିଗୁଣେ ତିନି ରୂପ ତାର । ରାକ୍ଷସ ଅସୁର ଯେ ସୁର ॥
ଯେ ରୂପ ସତ୍ତ୍ୱ ଗୁଣମୟ । ତହୁଁ ମିଳିଲା ସର୍ବଶ୍ରେୟ ॥

ଭାଗବତ : ଜଗନ୍ନାଥ ଦାସ . ୧୦ମ ସ୍କ. ୯୫ ଅ.

ପାଇବା ପରେ ଭଲ-ଖରାପ ହୋଇଯାଏ । ମୁଖ୍ୟ ହେଉଛି ପାତ୍ରତା । ସର୍ବଶ୍ରେଷ୍ଠ ପାତ୍ର ହେଉଛନ୍ତି ଶ୍ରୀହରି । ହରିଙ୍କୁ ପାଇ ସବୁ ବସ୍ତୁ ସୁନ୍ଦର ହୋଇଯାଏ । ହରଙ୍କ ଶିରରେ ଶୋଭାପାଉଥିବା ଚନ୍ଦ୍ର ବି ବନ୍ଦନୀୟ ହୋଇଯାଇଛି । ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ମୁନିମଣ୍ଡଳୀ ଦ୍ୱାରା ପରୀକ୍ଷା କରିବା ପାଇଁ ନିଯୁକ୍ତ ହୋଇଥିବା ମହର୍ଷି ଭୃଗୁ ବ୍ରହ୍ମା ଓ ଶଙ୍କରଙ୍କୁ ପରୀକ୍ଷା କରିବା ପରେ ବୈକୁଣ୍ଠକୁ ଗଲେ । ସେଠାରେ ନିଜର ପ୍ରିୟାଙ୍କ ସହିତ ଭଗବାନ୍ ବିଷ୍ଣୁ ରହିଥାନ୍ତି ।

''ଭଗବାନ ସେତେବେଳେ ବିଶ୍ରାମ କରୁଥିଲେ, ନିଜର ପ୍ରାଣପ୍ରିୟା କମଳାଙ୍କର କୋମଳ ଅଙ୍କରେ ମୁଣ୍ଡ ରଖି ଶୋଇଥିଲେ । ଶୋଇ ଥିଲେ, ଅର୍ଥାତ୍ ଆଖି ବନ୍ଦ ରଖି ପ୍ରେମ ଅନୁଭବ କରୁଥିଲେ । ଭଗବତୀ କମଳା ଅପଲକ ନୟନରେ ତାଙ୍କର ବିକଶିତ ମୁଖାରବିନ୍ଦର ମକରନ୍ଦ ପାନ କରୁଥିଲେ । ଭଗବାନଙ୍କର ସୌନ୍ଦର୍ଯ୍ୟ - ମାଧୁର୍ଯ୍ୟ ସାଗରରେ ସେ ଏପରି ମଗ୍ନ ରହିଥିଲେ ଯେ ସଂସାର ବିଷୟରେ ତାଙ୍କର ଆଦୌ ହିତାହିତ ଜ୍ଞାନ ନଥିଲା । ମହର୍ଷି ଭୃଗୁ ସିଧା ସିଧା ତାଙ୍କ ପାଖକୁ ଚାଲିଗଲେ । ଦ୍ୱାରପାଳମାନେ ତାଙ୍କୁ ଅଟକାଇଲେ ନାହିଁ, କାରଣ ଜୟ-ବିଜୟଙ୍କର ପତନ ପରେ ସେମାନେ ବ୍ରାହ୍ମଣଙ୍କୁ ଖୁବ୍ ଡରୁଥିଲେ । ଭୃଗୁ ମଧ୍ୟ ସେମାନଙ୍କୁ କିଛି ପଚାରିଲେ ନାହିଁ । ସେ ଭିତରେ ଯାଇ ଦେଖିଲେ, ଲକ୍ଷ୍ମୀ -ନାରାୟଣ ଉଭୟେ ପ୍ରେମପୂର୍ଣ୍ଣ ସମାଧିରେ ନିମଗ୍ନ ରହିଛନ୍ତି । ବ୍ରାହ୍ମଣ ଆଗ-ପଛ କିଛି ବିଚାର କଲେ ନାହିଁ । ଭୃଗୁ ଭଗବାନଙ୍କର ବକ୍ଷସ୍ଥଳକୁ ପ୍ରଚଣ୍ଡ ଲାତଟିଏ ମାରିଲେ । ଲାତ ଖାଇବା କ୍ଷଣି ଲକ୍ଷ୍ମୀ ଚମକି ପଡ଼ିଲେ । ଭଗବାନ ମଧ୍ୟ ଉଠି ବସିପଡ଼ିଲେ । ସମ୍ମୁଖରେ ଜଟାଜୁଟ ସମ୍ପନ୍ନ ମୃଗଛାଲ ପରିହିତ ମହର୍ଷି ଭୃଗୁଙ୍କୁ ଦେଖିବାକୁ ପାଇଲେ । ଭୃଗୁ ଲାତ ମାରି ପାଦକୁ ତଳେ ରଖିବା ପୂର୍ବରୁ ଭଗବାନ୍ ସେହି ଧୂଳି ଧୂସରିତ ରୁକ୍ଷ ପାଦକୁ ଦୁଇ ପାପୁଲିରେ ଧରି ପକାଇ ଧୀରେ ଧୀରେ ଆଉଁସିବାରେ ଲାଗିଥିଲେ । ଏହା ଦେଖି ଲକ୍ଷ୍ମୀ ବିଚଳିତ ହୋଇ ଠିଆ ହୋଇ ପଡ଼ିଲେ । ଭଗବାନ ମଧ୍ୟ ହାତରେ ପାଦକୁ ଧରି ଅଣ୍ଟା ଭାଙ୍ଗି ଠିଆ ହୋଇଗଲେ । ମହର୍ଷି ଭୃଗୁଙ୍କୁ ତାଙ୍କର ସୁଖଦ ଶଯ୍ୟାରେ ବସାଇ ନିଜ ମସ୍ତକକୁ ପାଦତଳେ ରଖି ମୁଣ୍ଡିଆ ମାରିଲେ । ଏହାପରେ ଅତି ମଧୁର ସ୍ୱରରେ ସଜ୍ଜନଙ୍କର ଏକମାତ୍ର ଗତି ଶ୍ରୀହରି ମୁନିଙ୍କୁ କହିଲେ, 'ହେ ମୁନିବର ! ଆପଣଙ୍କୁ ସ୍ୱାଗତ କରୁଛି । ମୋ ଶଯ୍ୟାକୁ କୃତାର୍ଥ କରନ୍ତୁ । ମୁଁ ଆପଣଙ୍କୁ କ୍ଷମା ଯାଚନା କରୁଛି । ଆପଣ ଏଠାରେ ପହଞ୍ଚିଥିବା କଥା ମୁଁ ଜାଣି ତ ପାରିନଥିଲି, ତେଣୁଁ ମୁଁ ଏହିଭଳି ଅବିନୟ ହୋଇଯାଇ ଥିଲି । ଶଯ୍ୟାରେ ଶୋଇ ଯାଇଥିବା ହେତୁ ଯେଉଁ ଧୃଷ୍ଟତା ହୋଇଛି ସେଥିପାଇଁ କ୍ଷମା ମାଗୁଛି । ଆପଣ ଅନେକ ବେଳୁ ଆସିବେଣି । ମୋ ପାଇଁ ଆପଣଙ୍କୁ କେତେ କଷ୍ଟ କରିବାକୁ ହେଲା । ଆପଣଙ୍କ ପାଦକୁ କଷ୍ଟ ହୋଇଥିବ । କାରଣ ମୋ ହୃଦୟ ବଜ୍ର ଭଳି କଠିନ । ଆପଣଙ୍କ

ଚରଣ କମଳ ଭଳି କୋମଳ । ହାୟ ! ନିଶ୍ଚୟ କଷ୍ଟ ହେଉଥିବ, ପୀଡ଼ା ହେଉଥିବ ।' ଏପରି କହି ନିଜର କର କମଳରେ ଭଗବାନ ଭୃଗୁଙ୍କ ଚରଣ ଯୁଗଳକୁ ଆଉଁସିବାରେ ଲାଗିଲେ ।

''ମହର୍ଷି ଭୃଗୁ ଚୁପ୍‌ଚାପ୍ ବସିଥିଲେ । ଭଗବାନ୍ ପାଦ ଚିପୁ ଚିପୁ କୁଶଳବାର୍ତ୍ତା ପଚାରୁଥିଲେ, 'ବ୍ରହ୍ମନ୍ ! ଯେତେ ତୀର୍ଥ ଅଛି, ତାହା ସବୁ ପାପୀମାନଙ୍କ ସଂସ୍ପର୍ଶରେ ପାପମୟ ହୋଇ ଯାଏ । ପାପମୟ ତୀର୍ଥରେ ଆପଣଙ୍କ ଚରଣ ପଡ଼ିବା ପରେ ପୁଣି ପବିତ୍ର ହୋଇଯାଏ । ତୀର୍ଥର ତୀର୍ଥତ୍ୱକୁ ସ୍ଥାୟିତ୍ୱ ପ୍ରଦାନ ଯାହାକରେ ତାହା ହେଉଛି ଆପଣଙ୍କ ପାଦୋଦକ । ଆପଣଙ୍କ ସେହି ପରମ ପବିତ୍ର ପଦ ଆଜି ବୈକୁଣ୍ଠରେ ପଡ଼ିଛି । ଏଣୁ ଏହି ଲୋକର ଏହା ପରମ ସୌଭାଗ୍ୟ । ମୋତେ ଆପଣ ଆପଣଙ୍କ ଚରଣ ଧୌତ କରିବା ପାଇଁ ସୁଯୋଗ ପ୍ରଦାନ କରିଛନ୍ତି । ଏହାଦ୍ୱାରା ମୁଁ ଓ ମୋ ଠାରେ ଥିବା ସମସ୍ତ ଲୋକପାଳ ପବିତ୍ର ହୋଇ ଯାଇଛନ୍ତି । ଅହୋ ! ଭଗବନ୍ ! ଆପଣ ତ ମୋ ଉପରେ ଅହୈତୁକୀ କୃପା କରିଛନ୍ତି । ମୋ ପ୍ରାର୍ଥନା ବିନା ଆପଣ ଆପଣଙ୍କ ଚରଣ ସ୍ପର୍ଶରେ ମୋତେ କୃତାର୍ଥ କରି ଦେଇଛନ୍ତି । ଆପଣଙ୍କ ପାଦପଦ୍ମର ପବିତ୍ର ରଜ ପତିତ ହେବାଦ୍ୱାରା ମୋର ସମସ୍ତ ପୁରାତନ ପାପ ନଷ୍ଟ ହୋଇଯାଇଛି । ଏହି ଲକ୍ଷ୍ମୀ ଅତି ଚଞ୍ଚଳା । ଯଦିଓ ଇଏ ଅନବରତ ମୋ ସେବାରେ ଲାଗିଛନ୍ତି, ତେବେ ବି ମୁଁ ସବୁବେଳେ ଭାବେ ଇଏ କୁଆଡ଼େ ଚାଲିଯିବି ବୋଲି ସନ୍ଦେହ କରୁଥିଲି, ଯାହା ଆଜି ଦୂର ହୋଇଯାଇଛି । ସେ ବି ମୋ ହୃଦୟକୁ ଛାଡ଼ି ଅନ୍ୟତ୍ର ଯିବେ କୁଆଡ଼େ ! ଆପଣଙ୍କର ପଦଚିହ୍ନ ତ ସବୁବେଳ ପାଇଁ ମୋ ହୃଦୟରେ ଅଙ୍କିତ ହୋଇ ରହିଗଲା । ଏଣୁ ମୁଁ ତାଙ୍କର ଏକମାତ୍ର ଆଶ୍ରୟ ସ୍ଥାନ ହୋଇଗଲି ।''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ସର୍ବାନ୍ତର୍ଯ୍ୟାମୀ ଜଗଦାଧାର ଜଗତ୍‌ପୂଜ୍ୟ ଭଗବାନ୍ ଜଗନ୍ନାଥଙ୍କ ମୁଖରୁ ଏପରି ବିନୀତ କଥା ଶୁଣି ମୁନିଶ୍ରେଷ୍ଠ ଭୃଗୁ ଅତ୍ୟନ୍ତ ଆନନ୍ଦିତ ହେଲେ । ତାଙ୍କର ଅଙ୍ଗ ଅଙ୍ଗରେ ରୋମାଞ୍ଚ ସୃଷ୍ଟି ହୋଇଗଲା । ସେ ଆତ୍ମତୃପ୍ତ ଓ ପରମ ସନ୍ତୁଷ୍ଟ ହୋଇଉଠିଲେ । କଣ୍ଠ ଅବରୁଦ୍ଧ ହୋଇ ଯିବାରୁ ପଦେ ବୋଲି କିଛି କହିପାରିଲେ ନାହିଁ । ମୌନ ରୂପେ ଅନବରତ ପ୍ରେମାଶ୍ରୁ ବୁହାଇ ପ୍ରଭୁଙ୍କ ପାଦପଦ୍ମକୁ ପ୍ରକ୍ଷାଳନ କରିବାରେ ଲାଗିଲେ । ଭକ୍ତି ଉଦ୍ରେକ ହେବାରୁ ତାଙ୍କର ଅଙ୍ଗପ୍ରତ୍ୟଙ୍ଗରେ ସାତ୍ତ୍ୱିକ ଭାବ ସ୍ପଷ୍ଟ ପ୍ରତୀତ ହେବାରେ ଲାଗିଲା । ସେ ଭଗବାନଙ୍କର କୌଣସି କଥାରେ ପଦେବୋଲି ଉତ୍ତର ଦେଲେ ନାହିଁ । ସେ ଚୁପ୍‌ଚାପ୍ ଭଗବାନଙ୍କୁ ପ୍ରଣାମ କରି ସରସ୍ୱତୀ କୂଳକୁ ପ୍ରତ୍ୟାବର୍ତ୍ତନ କଲେ ।

ଲକ୍ଷ୍ମୀ ବହୁ ପୂର୍ବରୁ ବ୍ରାହ୍ମଣଙ୍କ ଉପରେ ତ ଖିନ୍ନ ଥିଲେ । ତାଙ୍କ ଭଉଣୀ ଦରିଦ୍ରା ବ୍ରାହ୍ମଣଙ୍କୁ ବିବାହ କରିଥିଲେ । ସେ ତାଙ୍କୁ ଛାଡ଼ି ଦେଲେ । ଆଉ ଜଣେ ବ୍ରାହ୍ମଣ ଆସି ମୁଁ କୋଳରେ ଧାରଣ କରିଥିବା ଅନନ୍ତସ୍ୱାମୀଙ୍କ ବକ୍ଷସ୍ଥଳକୁ ପଦାଘାତ କଲା । ପ୍ରଭୁଙ୍କ ବକ୍ଷସ୍ଥଳରେ ମୁଁ ନିରନ୍ତର

ନିବାସ କରେ । ସେହି ପଦଚିହ୍ନ ଏପରି ବକ୍ର ହୋଇଗଲା ଯେ ଯେତେ ଔଷଧି ଉପଚାର କଲେ ସୁଦ୍ଧା ତାହା ଲିଭୁନାହିଁ । ଲକ୍ଷ୍ମୀ ଯେତେବେଳେ ତାହା ଦେଖନ୍ତି ତାଙ୍କର ମନରେ ଦ୍ୱେଷ ଉତ୍ପନ୍ନ ହୋଇଯାଏ । ଆଉ ସେଇଥିପାଇଁ ବ୍ରାହ୍ମଣ ଧନୀ ହୁଅନ୍ତି ନାହିଁ । କେହି ଯଦି ଧନିକ ହୁଏ ତେବେ ସେ ବୈଶ୍ୟବୃତ୍ତି କରି ଧନୀ ହୋଇଥାଏ । ଜନ୍ମତଃ ବ୍ରାହ୍ମଣ ହୋଇଥିଲେ ବି କର୍ମତଃ ସେ ବୈଶ୍ୟ ହୋଇଯାଏ ।

ଏଣେ ତିନି ଦେବତାଙ୍କୁ ପରୀକ୍ଷା କରି ମହର୍ଷି ଭୃଗୁ ପୁଣି ସରସ୍ୱତୀ ନଦୀ କୂଳରେ, ଯଜ୍ଞ ଭୂମିରେ ପହଞ୍ଚିଗଲେ । ମହର୍ଷି ଭୃଗୁ ଆସୁଥିବା ଋଷିମାନେ ଦୂରରୁ ଦେଖି ଠିଆ ହୋଇଗଲେ । ସେମାନେ ଅତି ଉତ୍ସୁକତାର ସହିତ ମହର୍ଷି ଭୃଗୁଙ୍କୁ ସ୍ୱାଗତ କଲେ । ଆଉ କହିଲେ- "ହେ ମୁନିଶ୍ରେଷ୍ଠ ! ଆପଣଙ୍କୁ ସ୍ୱାଗତ କରୁଛୁ । ଆସନ୍ତୁ, ଆସନ ଗ୍ରହଣ ପୂର୍ବକ ପୂଜା ଗ୍ରହଣ କରନ୍ତୁ । ଆଉ ତ୍ରିଦେବଙ୍କର ଆପଣ କି ପ୍ରକାର ପରୀକ୍ଷା ନେଲେ, ଅନ୍ତିମ ପରିଣାମ କ'ଣ ହେଲା ସେ ସଂପର୍କରେ କୁହନ୍ତୁ ।"

ମହର୍ଷି ସୂତ କହୁଛନ୍ତି, " ହେ ମୁନିଗଣ ! ଋଷିମାନଙ୍କର ଉତ୍ସାହପୂର୍ଣ୍ଣ ପ୍ରଶ୍ନ ଶୁଣି ମହର୍ଷି ଭୃଗୁ ଆଦିରୁ ଅନ୍ତ ସକଳ ବୃତ୍ତାନ୍ତ ଗୋଟି ଗୋଟି କରି ଅତି ପ୍ରାଞ୍ଜଳ ଭାବରେ କହିଗଲେ । ସମସ୍ତ କଥା ଶୁଣିବା ପରେ ଭଗବାନ୍‌ଙ୍କର ଏପରି ନମ୍ରତା ପୂର୍ଣ୍ଣ ବ୍ୟବହାରରେ ଅତି ଆଶ୍ଚର୍ଯ୍ୟ ହୋଇଗଲେ । ସମସ୍ତଙ୍କର ସମସ୍ତ ସନ୍ଦେହ ଦୂର ହୋଇଗଲା । ସମସ୍ତେ ଏକ ସ୍ୱରରେ ନିର୍ଣ୍ଣୟରେ ଉପନୀତ ହୋଇ କହିଲେ, ଯେ ଭଗବାନ୍ ବିଷ୍ଣୁ ହେଉଛନ୍ତି ତିନି ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ । ତାଙ୍କର ଉପାସନାରେ ଧର୍ମ ଅର୍ଜନ ହେଉ, ଅଥବା ଆତ୍ମଜ୍ଞାନ ଅର୍ଜନ କରିବା ଉଚିତ । ସେ ସକଳ କଥା ପ୍ରଦାନ କରିବା ପାଇଁ ସମର୍ଥ । ଜ୍ଞାନ, ବୈରାଗ୍ୟ, ଅଷ୍ଟସିଦ୍ଧି, ନ'ନିଧି ତଥା ଚିତ୍ତର ମଳିନତାକୁ ଦୂର କରିପାରୁଥିବା ସୁଯଶ ମଧ୍ୟ ପ୍ରାପ୍ତ ହୋଇଥାଏ ।

ଭଗବାନ ହେଉଛନ୍ତି ବ୍ରାହ୍ମଣ୍ୟ ଦେବ, ଭକ୍ତ ବତ୍ସଳ, ଶାନ୍ତ, ଦାନ୍ତ, ସମଚିତ୍ତ, ଅକିଞ୍ଚନ, ସର୍ବଭୂତହିତରତା ତଥା ସମସ୍ତଙ୍କର ଅଭୟ ପ୍ରଦାନକାରୀ । ସାଧୁମାନେ ଏହି ଭଗବାନ ବିଷ୍ଣୁଙ୍କୁ ଅନବରତ ଧ୍ୟାନ କରୁଥାନ୍ତି । ସେ ହିଁ ସେମାନଙ୍କର ଏକମାତ୍ର ପରମ ଗତି । ଭଗବାନ ହେଉଛନ୍ତି ସତ୍ତ୍ୱମୂର୍ତ୍ତି । ତାଙ୍କର ଇଷ୍ଟଦେବ ହେଉଛନ୍ତି ବିପ୍ରଗଣ । ନିପୁଣ, ବୁଦ୍ଧି, ଶାନ୍ତ ସମୁଚିତ୍ତ ତଥା ନିଷ୍କାମ ମୁନିଗଣ ହିଁ ନିରନ୍ତର ଯାହାଙ୍କୁ ଧ୍ୟାନ କରନ୍ତି, ସେହି ଭଗବାନ ବିଷ୍ଣୁଙ୍କୁ ହିଁ ବୈଷ୍ଣବ ମାନେ ନିରନ୍ତର ଆରାଧନା କରିବା ଉଚିତ ।"

ତିନିଦେବତା ହେଉଛନ୍ତି ତିନି ଗୁଣର ପ୍ରତୀକ । ତିନି ଦେବତାଙ୍କର ତିନିଟି ତ୍ରିଗୁଣମୟୀ ମୂର୍ତ୍ତି ଅଛି । ତମୋଗୁଣର ମୂର୍ତ୍ତି ହେଉଛି ରାକ୍ଷସ, ରଜୋ ଗୁଣର ମୂର୍ତ୍ତି ଅସୁରଗଣ, ଆଉ ଦେବତା ହେଉଛନ୍ତି ତାଙ୍କର ସତ୍ତ୍ୱମୂର୍ତ୍ତି । ଏଣୁ ଭଗବାନ୍ ବିଷ୍ଣୁଙ୍କୁ ସୁରଶ୍ରେଷ୍ଠ କୁହାଯାଏ ।

ସାତ୍ତ୍ୱିକମାନେ ସତ୍ତ୍ୱମୟୀ ଭଗବାନ ବିଷ୍ଣୁଙ୍କୁ ହିଁ ବିଶେଷ ରୂପରେ ପୂଜା କରିବା ଉଚିତ । କାରଣ ଭଗବାନଙ୍କର ସତ୍ତ୍ୱମୟୀ ଦେବମୂର୍ତ୍ତି ହିଁ ପରମ ପୁରୁଷାର୍ଥ ରୂପୀ ପ୍ରଭୁଙ୍କୁ ପ୍ରାପ୍ତ ହେବାର ପ୍ରଧାନ ସାଧନ ।

ମହର୍ଷି ସୂତ କହୁଛନ୍ତି, '' ସରସ୍ୱତୀ ତଟ ସ୍ଥିତ ସର୍ବଜ୍ଞ ଜ୍ଞାନୀ ମୁନିମାନଙ୍କୁ କୌଣସି କଥାରେ ସନ୍ଦେହ ନଥିଲା । କେବଳ ସଂସାରୀ ପୁରୁଷଙ୍କ ସନ୍ଦେହ ମୋଚନାର୍ଥେ ଏପରି ଏକ ବିବାଦ କରିଥିଲେ ଏବଂ ଏକ ସୁଦୃଢ଼ ନିର୍ଣ୍ଣୟ ନେଇଥିଲେ । ସେମାନେ ସମସ୍ତେ ବିଷ୍ଣୁଙ୍କ ଉପାସନା ଦ୍ୱାରା ପରମପଦକୁ ପ୍ରାପ୍ତ ହୋଇଥିଲେ । ହେ ମହର୍ଷିଗଣ ! ମୋ ଗୁରୁଦେବ ମହାରାଜ ପରୀକ୍ଷିତଙ୍କ ଆଗରେ ବିଷ୍ଣୁଭକ୍ତିବର୍ଦ୍ଧକ କଥା କହିଥିଲେ । ଯେଉଁମାନେ ଏହିଭଳି ବିଷ୍ଣୁ ମହିମା ସୂଚକ କଥାମୃତକୁ ସବୁସମୟରେ ଶ୍ରବଣ କରୁଥିବେ, ସେମାନେ ସଂସାରର ଆବାଗମନରୁ ରକ୍ଷା ପାଇଯିବେ । ତତ୍ତ୍ୱ ହେଉଛି ଏକ । ନାମ ରୂପ ଗୁଣ ହେତୁ ପ୍ରଭେଦ ଥିବା ଭଳି ପ୍ରତୀତ ହେଉଥାଏ । ଗୁଣାତୀତ ସେହି ହରିଙ୍କୁ ମହାବିଷ୍ଣୁ କୁହ, ପରମ ଶିବ କୁହ, ମହାଶକ୍ତି କୁହ, ସବୁ ହେଉଛି ଏକ କଥା । ହେ ମୁନିଗଣ ! ଏହିଭଳି ଏହି ବିଷ୍ଣୁଭକ୍ତିବର୍ଦ୍ଧକ ଚରିତ୍ରକୁ କହି ଏବେ ମୁଁ ଭଗବାନ୍‌ଙ୍କର କେତେବେଳେ ବି ସମାପ୍ତ ହେଉନଥିବା ଅନନ୍ତ ଚରିତ୍ରର ସମାପ୍ତି କରୁଛି ।

'ସମାପ୍ତ' ଏପରି ଏକ ଶବ୍ଦ ଶୁଣିବା କ୍ଷଣି ସମସ୍ତ ମୁନି ବିଚଳିତ ହୋଇଉଠି କହିଲେ, ''ହେ ମହର୍ଷି ସୂତ ! କି କଥା କହୁଛନ୍ତି ? ଏବେଠାରୁ ଭଗବାନ୍‌ଙ୍କର କଥା ସମାପ୍ତ କରୁଛନ୍ତି ! ଆମର ତୃପ୍ତି ତ ହୋଇନାହିଁ । ଆମେ ଭାବିଥିଲୁ, ଆପଣ ଏଇ ବର୍ତ୍ତମାନ କଥା ଆରମ୍ଭ କରିଛନ୍ତି ବୋଲି । ଆପଣ ହଠାତ୍ 'ସମାପ୍ତ' ବୋଲି କହିଦେଉଛନ୍ତି ?

ମହର୍ଷି ସୂତ କହିଲେ, '' ଆଉ କ'ଣ କରିଥାନ୍ତି ମହାରାଜ ! ଦୁଇ ସହସ୍ର ଜିହ୍ୱା ବିଶିଷ୍ଟ ଶେଷଦେବ ଯେତେବେଳେ ଭଗବାନଙ୍କର ଚରିତ୍ରକୁ ବଖାଣି ଶେଷ କରିପାରିନାହାନ୍ତି, ମୋର ଶକ୍ତି ବା କେତେ ? ଏବେ ତ ମୋତେ ଭଗବାନଙ୍କର ଲୀଳା ଚରିତ୍ରର ସମାପ୍ତି କରିବାକୁ ହିଁ ପଡ଼ିବ । ସରସ ଲୀଳା ଚରିତ୍ର ସମାପ୍ତ ପ୍ରାୟ ତ ହୋଇଗଲାଣି । ମହାରାଜ ପରୀକ୍ଷିତଙ୍କର ତ ଛ' ଦିନ ସମାପ୍ତ ହୋଇଗଲାଣି ।

ମହର୍ଷି ଶୌନକ ପଚାରିଲେ, '' ହେ ମହର୍ଷି ସୂତ ! ସପ୍ତମ ଦିନରେ ତ କିଛି ପ୍ରଶ୍ନ ଉଠିଥିବ ? ଭଗବାନ ତା'ର ବି କିଛି ଉତ୍ତର ତ ଦେଇଥିବେ । ତାହା ଆମକୁ ଶୁଣାନ୍ତୁ ।''

ମହର୍ଷି ସୂତ କହିଲେ, '' ମହାରାଜ ! ସପ୍ତମ ଦିନର ପ୍ରଶ୍ନ ଥିଲା ଜ୍ଞାନ ସମ୍ବନ୍ଧୀୟ । ଭକ୍ତି, ଜ୍ଞାନ ଓ ବୈରାଗ୍ୟ ଏହି ତିନି ର ସମନ୍ୱୟ ସମ୍ବନ୍ଧିତ ପ୍ରଶ୍ନ ଥିଲା । ବୁଦ୍ଧିର ବ୍ୟାୟାମ ଥିଲା ।''

ମହର୍ଷି ଶୌନକ କହିଲେ,'' ହେ ମହର୍ଷି ସୂତ ! ତାହା ବି ଆମକୁ ଶୁଣାନ୍ତୁ । ଜ୍ଞାନ - ବୈରାଗ୍ୟ ବିନା ଭକ୍ତି ସ୍ଥାୟୀ ହୋଇପାରେ ନାହିଁ । ଜ୍ଞାନ ଆଉ ବୈରାଗ୍ୟ ହେଉଛନ୍ତି ଭକ୍ତିର ଦୁଇପୁତ୍ର । ପୁଅଙ୍କୁ ଭଲ ପାଇବା ଲୋକ ଉପରେ ମାତା ଯେତେ ପ୍ରସନ୍ନ ହୁଅନ୍ତି ସେତେ ପ୍ରସନ୍ନ ତାଙ୍କ ନିଜକୁ ଭଲ ପାଉଥିବା ଲୋକ ଉପରେ ହୁଅନ୍ତି ନାହିଁ । ଜ୍ଞାନ - ବୈରାଗ୍ୟ ସମ୍ବନ୍ଧରେ ଆମେ ଅତି ଆଦର ସହକାରେ ଶୁଣିବୁ ।

ମହର୍ଷି ସୂତ କହିଲେ, ''ମହାରାଜ ! ଠିକ୍ ଅଛି ତା' ହେଲେ । ଏବେ ସର୍ବପ୍ରଥମେ ଭଗବାନଙ୍କର ସରଳ ଲୀଳା ଚରିତର ଉପସଂହାର କରିଦେଉଛି । ତାଙ୍କ ସ୍ୱଧାମ ଗମନ ପ୍ରସଙ୍ଗର ସୂଚନା ଦେଇ ଦେଉଛି । ଏହାପରେ ଜ୍ଞାନ-ବୈରାଗ୍ୟ ସମ୍ବନ୍ଧୀୟ କଥା ଶୁଣାଇବା ।

''ଧର୍ମରାଜ ଯୁଧିଷ୍ଠିରଙ୍କୁ ସିଂହାସନାରୂଢ଼ କରି, ତିନୋଟି ଅଶ୍ୱମେଧ ଯଜ୍ଞ କରାଇ ଭଗବାନ ଦ୍ୱାରକାପୁରୀକୁ ପ୍ରତ୍ୟାବର୍ତ୍ତନ କଲେ । ଧର୍ମରାଜ ଅନେକ ଦିନ ପର୍ଯ୍ୟନ୍ତ ରାଜୁତି କଲେ । କିନ୍ତୁ ଭଗବାନଙ୍କ ବିନା ତାଙ୍କୁ କିଛି ହେଲେ ଭଲ ଲାଗୁନଥିଲା । ଅନେକ ଦିନ ପର୍ଯ୍ୟନ୍ତ ଭଗବାନଙ୍କର କୌଣସି ଖବର ନପାଇବାରୁ ଧର୍ମରାଜ ଅର୍ଜୁନଙ୍କୁ ଦ୍ୱାରକାପୁରୀକୁ ପଠାଇଲେ । ଅର୍ଜୁନ ବି ଭଗବାନଙ୍କ ଦର୍ଶନ ନିମନ୍ତେ ଲାଳାୟିତ ଥିଲେ । ସେ ଅତି ଶୀଘ୍ର କେତେକ ସେବକ-ସୈନିକଙ୍କୁ ସାଙ୍ଗରେ ଧରି ଦ୍ୱାରକାରେ ପହଞ୍ଚିଗଲେ ଓ ଭଗବାନଙ୍କୁ ଦର୍ଶନ କରି ଆନନ୍ଦିତ ହେଲେ । ଭଗବାନଙ୍କର ଅତ୍ୟଧିକ ପ୍ରେମ ଦେଖି କିଛି ଦିନ ଦ୍ୱାରକାରେ ରହିଲେ । ସେହି ସମୟରେ ଏପରି ଏକ ବିଶେଷ ଘଟଣା ଘଟିଲା, ଯାହା ସେତେବେଳେ ଅର୍ଜୁନଙ୍କୁ ଓ ଉଦ୍ଧବଙ୍କ ଭଳି ଅନ୍ତରଙ୍ଗ ଭକ୍ତଙ୍କୁ ଏପରି ବିଶ୍ୱାସ ହୋଇଗଲା ଯେ ଭଗବାନ୍ ଅତି ଶୀଘ୍ର ଲୀଳା ସମ୍ବରଣ କରିବାକୁ ବସିଛନ୍ତି ।

ମହର୍ଷି ଶୌନକ ପଚାରିଲେ, '' ହେ ମହର୍ଷି ସୂତ ! ସେ ଘଟଣା କ'ଣ ? କୃପାକରି ସେହି ପ୍ରସଙ୍ଗ ପ୍ରଥମେ ଶୁଣାନ୍ତୁ ।''

ମହର୍ଷି ସୂତ କହିଲେ, ''ହଉ ! ଠିକ୍ ଅଛି । ସେଇ କଥା ପ୍ରଥମେ କହୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।''

## ଛପ୍ପୟ

*ହରିକୀ ସୁନିକେଂ ବିନୟ ଭୟେ ଭୃଗୁ ଅତିଶୟ ଲଜ୍ଜିତ ।*
*ପ୍ରେମ ନ ହିୟେ ସମାତ କଣ୍ଠ ଗଦ୍‌ଗଦ ଅତି ବିସ୍ମିତ ।।*
*ଆଇ ସତ୍ର ମହଁ ସକଲ ବୃତ୍ତ ବିପ୍ରନି ସନ ଭାଗେ୍ୟା ।*
*ବିଷ୍ଣୁ ସବନି ତେଂ ବଡ଼େ ସବନି ଯହ ନିଶ୍ଚୟ ରାଖ୍ୟୋ ।।*
*ହରି ଲୀଳା ସମ୍ବରଣ କୋ, ଭାସ ହୋହି ଜାମେଂ ଯଥା ।*
*କହୁଁ ବିପ୍ର ଅସ ପାର୍ଥ କୀ, ଅତି ଅଦ୍‌ଭୁତ ଅବ ସୋ କଥା ।।*



# ଲୀଳା ସମ୍ବରଣର ସୂଚନା

**ଏକଦା ଦ୍ୱାରାବତ୍ୟାଂ ତୁ ବିପ୍ରପତ୍ନ୍ୟାଃ କୁମାରକଃ ।**
**ଜାତମାତ୍ରୋ ଭୁବଂ ସ୍ପୃଷ୍ଟ୍ୱା ମମାର କିଲ ଭାରତ ।।☆**

(ଶ୍ରୀ ଭା: ୧୦ମ ସ୍କ. ୮୯ ଅ. ୨୨ ଶ୍ଳୋକ)

**ଛପ୍ପୟ**

*ରହେଂ ଦ୍ୱାରକା ପାର୍ଥ କୃଷ୍ଣ ଇକ ଚରିତ ଦିଖାୟୋ ।*
*ମୃତକ ପୁତ୍ର ଲୈ ବିପ୍ର ଦ୍ୱାର ରାଜା କେ ଆୟୋ ।।*
*ଶପୈ ଯାଦବନି କହୈ ମରେ ତୈଂୟା ମେରେ ବାଳକ ।*
*ହୈ ସବ ଯାଦବ ପତିତ ଅଧରମୀ କୁଳକେ ଘାଳକ ।।*
*ଏକ ଏକ କରି ନୌ ମରେ, ପୁନି ପୁନି ରୋବତ ଆଇକେଂ ।*
*ଅନ୍ତିମ ଦ୍ୱିଜ ସୁତ ମୃତକ ଲଖି, ଅରଜୁନ କହେଂ ରିସ୍ୟାଇକେ ।।*

ସଂସାରରେ କେହି ବଳବାନ୍ ନାହାଁନ୍ତି ନା କେହି ଦୁର୍ବଳ । ଏହି କାଳରୂପୀ କୃଷ୍ଣ ଯାହାକୁ ବଳବାନ୍ କରି ଦିଅନ୍ତି, ସେ ବଳବାନ୍ ହୋଇଯାଏ । ମୁଁ ଏପରି କରିଛି, ଏବେବି ମୁଁ ଏପରି କରିପାରିବି, ଏହା ହେଉଛି ମିଥ୍ୟାଭିମାନ । ଏପରି ମିଥ୍ୟାଭିମାନର ବଶୀଭୂତ ହୋଇ ମଣିଷଙ୍କୁ ଅପମାନ ସହ୍ୟ କରିବାକୁ ହୋଇଥାଏ । ସେତେବେଳେ ସେ ଭଗବାନଙ୍କୁ ସ୍ମରଣ କରେ । ସେତେବେଳେ ସେ ଜାଣିପାରେ ଯେ ସେ କିଛି ନୁହେଁ । କର୍ତ୍ତା, ଧର୍ତ୍ତା ଆଉ ଜଣେ କେହି ଅଛି । ଯେତେବେଳେ ଏହିପରି ଜ୍ଞାନ ହୋଇଯାଏ, ଯେତେବେଳେ ସର୍ବାତ୍ମା ଭାବରେ ସେହି ସର୍ବଶକ୍ତିମାନ୍‌ର ଶରଣକୁ ଯାଏ, ବନ୍ଧନରୁ ମୁକ୍ତି ପାଇଯାଏ । ଏହାପରେ ଆଉକିଛି କରିବାକୁ ବାକି ରହେ ନାହିଁ ।

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଭଗବାନ ମହାଭାରତ ଯୁଦ୍ଧ କରିସାରିବା ପରେ, ଧର୍ମରାଜ ଯୁଧିଷ୍ଠିରଙ୍କୁ ଚକ୍ରବର୍ତ୍ତୀ ମହାରାଜ କରିସାରିବା ପରେ, ପୃଥିବୀର ଭାର

---

☆ ଶୁଣ ରାଜନ ସାବଧାନେ । ବ୍ରାହ୍ମଣ ଦ୍ୱାରକା ଭୁବନେ ।।
ସେ ବିପ୍ର ଦ୍ୱାରକା ବସତି । ପତ୍ନୀର ଗର୍ଭେ ତା ସନ୍ତତି ।।
ଗର୍ଭପ୍ରସବ କାଳେ ତାର । ଯେତେ ଉପୁଜିଲେ କୁମର ।।
ଗର୍ଭରେ ଦଶମାସ ଥାନ୍ତି । ଭୂମିରେ ପଡ଼ିଲେ ମରନ୍ତି ।।

(ଭାଗବତ : ଜଗନ୍ନାଥ ଦାସ : ୧୦ ମ ସ୍କ. ୯୪ ଅ.)

ଲାଘବ କରିସାରିବା ପରେ, ଦୁଷ୍ଟଙ୍କୁ ସଂହାର କରିସାରିବା ପରେ ସେ ସ୍ୱ-ଲୋକକୁ ଫେରିଯିବା ପାଇଁ ଚିନ୍ତା କଲେ । ଧର୍ମରାଜ ହସ୍ତିନାପୁରରେ ରାଜ୍ୟ ଶାସନ କରୁଥିଲେ । ଭଗବାନ୍ ଦ୍ୱାରାବତୀରେ ରହୁଥିଲେ । ସେତେବେଳେ ଗୋଟିଏ ବିଚିତ୍ର ଘଟଣା ଘଟିଲା । ଜଣେ ବ୍ରାହ୍ମଣଙ୍କ ଘରେ ପୁତ୍ର ସନ୍ତାନ ଜାତ ହେଉଥିଲା । ପୁତ୍ର ଜନ୍ମ ହେବା ମାତ୍ରେ ମରିଯାଉଥିଲା । ବ୍ରାହ୍ମଣ ଭାବିଲା, ମୁଁ କାହାରି ପରିଗ୍ରହ ଗ୍ରହଣ କରୁନାହିଁ, ଅସତ୍ୟ ଭାଷଣ କରୁନାହିଁ, ବ୍ରହ୍ମଚର୍ଯ୍ୟ ପାଳନ କରୁଛି, କିନ୍ତୁ ପୁତ୍ର ଶୋକ ହେଉଛି କାହିଁକି ? ଶୋକ ହେବା ତ ପାପର ପରିଣାମ, ମୁଁ ବିଶୁଦ୍ଧ ଅଛି, ତେବେବି ମୋର ଅଳ୍ପାୟୁ ସନ୍ତାନ ହେଉଛନ୍ତି କିପରି ? ଏପରି ଅନେକ ଭାବୁ ଭାବୁ ତା ମନକୁ ଆସିଲା ଯେ, 'ଏହା ନିଶ୍ଚୟ ରାଜାର ପାପର ଫଳ । ଯେଉଁ ରାଜ୍ୟରେ ଯେପରି ଶାସକ ହୋଇଥାନ୍ତି, କର୍ମଚାରୀମାନେ ସେହିଭଳି ହୋଇଯାଆନ୍ତି । ରାଜାର ପାପର ଫଳ ପ୍ରଜାଙ୍କୁ ଭୋଗ କରିବାକୁ ପଡ଼େ । ସେହିଭଳି ରାଜାର ପାପ ପୁଣ୍ୟ ବି ପ୍ରଜାଙ୍କୁ ମିଳି ଥାଏ । ମୋ ପୁଅ ନିଶ୍ଚୟ ରାଜାର ପାପ ଯୋଗୁଁ ମରୁଛନ୍ତି ।' ଏପରି ଭାବି ସେ ମରିଯାଇଥିବା ପୁଅର ଶବକୁ ଧରି ମହାରାଜ ଉଗ୍ରସେନଙ୍କ ସିଂହଦ୍ୱାରରେ ରଖି ବଡ଼ପାଟିରେ ଚିତ୍କାର କରି କହିଲା- 'ଏଠାରେ ଯେତେ ଯାଦବ ଅଛନ୍ତି ସେମାନେ ସମସ୍ତେ ନୀଚ ହୋଇଗଲେଣି । ଏମାନଙ୍କର ବୃତ୍ତି ହିଂସାରେ ଲିପ୍ତ ହୋଇଗଲାଣି । ଏମାନେ ସମସ୍ତେ ଅପେୟ ବସ୍ତୁ ପାନ କରିବାରେ ଲାଗିଗଲେଣି । ଏମାନଙ୍କର ରାଜା ଉଗ୍ରସେନ ବି ସେହିଭଳି ହୋଇଗଲେଣି । ଏହା ହେଉଛି ଦୁଷ୍ଟ ବୁଦ୍ଧି, ବ୍ରାହ୍ମଣଦ୍ରୋହୀ, କୃପଣ ଓ ବିଷୟ ଲୋଲୁପତା । ଏହା କ୍ଷତ୍ରିୟଙ୍କ ନିନ୍ଦିତ, ଅଧମ କର୍ମ । ଏପରି ଦୁର୍ବୁଦ୍ଧିଙ୍କର କର୍ମ ଦୋଷ ଯୋଗୁଁ ମୋ ପୁଅ ମରିଯାଇଛି । ଯେଉଁ ପ୍ରଜା ଏପରି ନୀଚ ରାଜା ପାଆନ୍ତି, ତାଙ୍କୁ ଦୁଃଖ, ଦରିଦ୍ର ଓ ନାନା କ୍ଲେଶ ଭୋଗ କରିବାକୁ ପଡ଼େ ।'

ବ୍ରାହ୍ମଣର ଏପରି କଥା ଶୁଣି ସେଠାରେ ଅନେକ ଲୋକ ରୁଣ୍ଡ ହୋଇଗଲେ । ପ୍ରଦ୍ୟୁମ୍ନ, ଶାମ୍ବ, ଅନିରୁଦ୍ଧ ତଥା ଅନ୍ୟାନ୍ୟ ଯାଦବବୀରଙ୍କୁ ଏପରି କଥା ଅତି ଖରାପ ଲାଗିଲା । ସେମାନେ ବ୍ରାହ୍ମଣକୁ ଧମକାଇବାକୁ ବାହାରିଲେ । କିନ୍ତୁ ସେତେବେଳେ ଭଗବାନ ସେମାନଙ୍କୁ ଅଟକାଇ କହିଲେ, '' ବ୍ରାହ୍ମଣମାନେ ନିସ୍ପୃହ । ସେମାନେ ଜନ୍ମରୁ ସକଳ ବର୍ଣ୍ଣର ଗୁରୁ । ସେମାନେ ଯାହା କହିବେ, ସମସ୍ତଙ୍କର ମଙ୍ଗଳପାଇଁ ହିଁ କହିବେ । ବ୍ରାହ୍ମଣ ଅଦଣ୍ଡ୍ୟ । ସେମାନେ କ୍ରୁଦ୍ଧ ହୋଇଗଲେ ବି, ଗାଳିଗୁଲଜ କଲେ ବି, ସେମାନଙ୍କୁ ଅପମାନ କରିବା ଉଚିତ ନୁହେଁ ।'' ଭଗବାନଙ୍କଠାରୁ ଏପରି କଥା ଶୁଣି ସମସ୍ତେ ଚୁପ୍ ହୋଇଗଲେ । ବ୍ରାହ୍ମଣ ସେହି ମୃତ-ପୁତ୍ରକୁ ସିଂହଦ୍ୱାର ପାଖରେ ଛାଡ଼ିଦେଇ ଗୃହକୁ ଚାଲିଗଲେ । ଭଗବାନଙ୍କର ନିର୍ଦ୍ଦେଶରେ ସେହି ମୃତ ବ୍ରାହ୍ମଣ ପୁତ୍ରର ସଂସ୍କାର କରିଦିଆଗଲା ।

ବର୍ଷେ ପରେ ପୁଣି ବ୍ରାହ୍ମଣର ପୁଅଟିଏ ହେଲା । ଏଥର ପୁଣି ସେହି ମୃତ ପୁତ୍ରକୁ ରାଜଦ୍ୱାରରେ ଥୋଇ ପୂର୍ବଭଳି କଟୁକଥା କହିବାରେ ଲାଗିଲା । ଏଥର ମଧ ତାକୁ କେହି କିଛି କହିଲେ ନାହିଁ । ଏହିପରି ବ୍ରାହ୍ମଣର ଆଠଟି ପୁଅ ହେଲେ ଓ ମଲେ । ପ୍ରତ୍ୟେକ ମୃତ-ପୁତ୍ରକୁ ରାଜଦ୍ୱାରରେ ଥୋଇ ବ୍ରାହ୍ମଣ ସେହି କଥାକୁ ଦୋହୋରାଇବାରେ ଲାଗିଲା । ଲୋକମାନେ ସେହି କଥା ଶୁଣିବାଟା ଅଭ୍ୟାସରେ ପଡ଼ିଯାଇଥିଲା । ଏଣୁ, ତା କଥାକୁ କେହି କାନ ଦେଉନଥାନ୍ତି, ଧ୍ୟାନ ଦେଉ ନ ଥାନ୍ତି ।

ଯୋଗକୁ ଯେଉଁଦିନ ବ୍ରାହ୍ମଣର ନବମ ପୁତ୍ର ହେଲା, ଆଉ ମରିଗଲା, ନିୟମାନୁସାରେ ବ୍ରାହ୍ମଣ ମୃତପୁତ୍ରକୁ ରାଜଦ୍ୱାରରେ ରଖି ଗାଳି ଦେଉଥିଲେ, ସେତେବେଳେ ସଭାରେ ଭଗବାନଙ୍କ ସହିତ ଅର୍ଜ୍ଜୁନ ବସିଥିଲେ । ଅର୍ଜ୍ଜୁନ ପୂର୍ବଦିନ ହସ୍ତିନାପୁରରୁ ଆସିଥିଲେ । ସେ ଯେତେବେଳେ ବ୍ରାହ୍ମଣର ଏପରି ଉଦ୍ଭଟ କଟୁକଥା ଶୁଣିଲେ, ତାଙ୍କର ରକ୍ତ ତାତି ଉଠିଲା । ସେ ଭଗବାନଙ୍କୁ କହିଲେ, ''ଯଦୁନନ୍ଦନ ! ଇଏ କିଏ ? ଯାଦବଙ୍କୁ ଓ ମହାରାଜ ଉଗ୍ରସେନଙ୍କୁ ଇଏ ଏପରି ଖରାପ ଭାଷାରେ ଗାଳିଗୁଲଜ କରୁଛି କାହିଁକି ? ୟା କଥାରେ ଅତି ଆତୁରତା ଥିବା ଭଳି ଜଣାପଡୁଛି । ଇଏ ଦୀନ ହୃଦୟରେ ବିଳାପ କରି ରାଜାଙ୍କୁ ଶାପ ଦେଉଛି । ଏହାର କାରଣ କ'ଣ ?''

ଭଗବାନ କହିଲେ, '' ଇଏ ଜଣେ ଦୁଃଖୀ ବ୍ରାହ୍ମଣ । ୟାର ପୁଅ ମରିଯାଇଛନ୍ତି । ଦୁଃଖରେ ମଣିଷଙ୍କର ବିବେକ ରହେ ନାହିଁ । ଆଉ ସେଥିପାଇଁ ସେ ସମସ୍ତଙ୍କୁ କଟୁ ଭାଷାରେ ଭର୍ତ୍ସନା କରୁଛି ।''

ଅର୍ଜ୍ଜୁନ ଦୃଢତାର ସହ କହିଲେ, '' ମୋ ଗାଣ୍ଡିବ ଧନୁ ଥାଉ ଥାଉ ଏପରି ଦୁଃଖୀ ଜଣେ କିପରି ରହିପାରିବ ! ଦୁଃଖୀଙ୍କର ଦୁଃଖ ଦୂର କରିବାପାଇଁ ହିଁ ମୋର ପ୍ରାଣ ରହିଛି । ମୁଁ ଥାଉ ଥାଉ କେହି ଯଦି ଦୁଃଖରେ କାତର ହୋଇ ଏପରି ବିଳାପ କରେ ତେବେ ମୋର କ୍ଷତ୍ରିୟ ପଣକୁ ଧିକ୍‌କାର କରି ଆସେ ।'' ଏପରି କହି କହି ଭାବପ୍ରବଣ ଅର୍ଜ୍ଜୁନ ବାହାରକୁ ଚାଲିଆସି ବ୍ରାହ୍ମଣ ପାଖରେ ପହଞ୍ଚିଗଲେ । ସେତେବେଳେ ବ୍ରାହ୍ମଣ ଉଗ୍ରସେନ ଓ ମୁଖ୍ୟ ମୁଖ୍ୟ ଯାଦବଙ୍କୁ ଭର୍ତ୍ସନା କରିବାରେ ଲାଗିଥାଏ । ଏହା ଶୁଣି ଅର୍ଜ୍ଜୁନ ବ୍ରାହ୍ମଣକୁ କହିଲେ, '' ହେ ବିପ୍ରବର ! କ'ଣ ହୋଇଛି ? ଆପଣ ରାଜାଙ୍କୁ କାହିଁକି ଗାଳି ଦେଉଛନ୍ତି ?''

ବ୍ରାହ୍ମଣ କ୍ରୋଧପୂର୍ଣ୍ଣ ସ୍ୱରରେ କହିଲା, ''ଗାଳି ଦେବି ନାହିଁ ତ ଆଉ କ'ଣ କରିବି ! ମୋର ନ' ନ'ଟା ପୁଅ ଜନ୍ମ ହେବା ସଂଗେ ସଂଗେ ମଲେ । ପ୍ରତିଥର ମୁଁ ଏହିଠାରେ ଚିକ୍ରାର କରି କରି, ଆପତ୍ତି କରି ଆସୁଛି । ମୁଁ କିଛି ପାପ କରିନାହିଁ, ଏ ସମସ୍ତ ହେଉଛି ରାଜାର ପାପର ଫଳ । କେହି ଟିକିଏ ବି କାନ ଦେଉ ନାହାନ୍ତି !''

ଏପରି କଥା ଶୁଣି ଅର୍ଜ୍ଜୁନ କ୍ରୋଧାନ୍ୱିତ ହୋଇ କହିଲେ, '' ହେ ବିପ୍ର ! ଜଣାଯାଉଛି ଏହି ଦ୍ୱାରକାପୁରୀରେ କେହି ଜଣେ ବୋଲି ଧନୁର୍ଦ୍ଧର ନାହାନ୍ତି । ଆରେ ! ଆପଣଙ୍କର ନ' ନ'ଟି ପୁଅ ମରିଗଲେଣି, ଜଣେ ବୋଲି କେହି ରକ୍ଷା କରିବା ପାଇଁ ବାହାରିଲେ ନାହିଁ ? ଏପରି ଅହିଂସା କେବଳ ଯଜ୍ଞରେ ଦୀକ୍ଷିତ ହୋଇଥିବା ବିପ୍ର ହିଁ କରିଥାନ୍ତି । ଏଠାରେ କ'ଣ ସମସ୍ତେ ଯଜ୍ଞ କରୁଥିବା ବିପ୍ର ହୋଇଯାଇଛନ୍ତି ? ପ୍ରଜାଙ୍କ ଦୁଃଖ ଦୂର କରିପାରୁଥିବା ଶୂରବୀର କ୍ଷତ୍ରିୟ ଜଣେ ବୋଲି କେହି ନାହାନ୍ତି ?''

ବ୍ରାହ୍ମଣ କହିଲା, '' ଏ କଥା ତୁମେ ମୋତେ କାହିଁକି ପଚାରୁଛ ? ଯାଦବଙ୍କୁ ପଚାର, ଉଗ୍ରସେନଙ୍କୁ ପଚାର ।''

ଅର୍ଜ୍ଜୁନ ଅଧିକ କ୍ରୋଧାନ୍ୱିତ ସ୍ୱରରେ କହିଲେ, ''କ'ଣ ଆଉ ପଚାରିବି ? ସମସ୍ତେ କାଲ ହୋଇଥିଲେ ସିନା ପଚାରି ଥାନ୍ତି । ଆପଣ ତ ଚୌତରା ଉପରେ ଠିଆ ହୋଇ ଡାକବାଜି ଯନ୍ତ୍ରରେ କହିଲା ଭଳି କହୁଛନ୍ତି । ସମସ୍ତେ କାନରେ ତେଲ ପକାଇ, ତୁଳା ବିଣ୍ଡା ମାଡ଼ି ଚୁପ୍ ଚାପ୍ ବସି ଶୁଣୁଛନ୍ତି । ଜଣା ପଡୁଛି, ସତେ ଯେପରି ଆପଣ ଅରଣ୍ୟରୋଦନ କରୁଛନ୍ତି । ଯେଉଁ କ୍ଷତ୍ରିୟମାନେ ବ୍ରାହ୍ମଣଙ୍କର, ପ୍ରଜାଙ୍କର ରକ୍ଷା କରିପାରନ୍ତି ନାହିଁ, ସେମାନଙ୍କ ଦୁଃଖ ଦୂର କରିପାରନ୍ତି ନାହିଁ, ସେପରି କ୍ଷତ୍ରିୟଙ୍କର ରାଜୁତି କରିବାର କୌଣସି ଅଧିକାର ନାହିଁ । ଯାହାଙ୍କ ରାଜ୍ୟରେ ବ୍ରାହ୍ମଣ ଧନ ବିନା ଦୁଃଖୀ ରହିଥାଏ, ଯାହାଙ୍କର ସ୍ତ୍ରୀଙ୍କୁ, ପିଲାଙ୍କୁ ରକ୍ଷା କରିବାର ସୁବନ୍ଦୋବସ୍ତ ହୋଇନଥାଏ, ସେପରି ରଜାଙ୍କୁ ରଜା କୁହାଯାଇ ନପାରେ । ସେମାନେ ରାଜା ହେବା ପାଇଁ କଦାପି ଯୋଗ୍ୟ ନୁହନ୍ତି । ଏମାନେ କ୍ଷତ୍ରିୟ ବେଶଧାରୀ ନଟ ହୋଇଥାନ୍ତି, ଯିଏ କେବଳ ନାଟକ କରିବା ପାଇଁ କ୍ଷତ୍ରିୟ ହୋଇଥାଏ, ଆଜୀବିକା ନିମନ୍ତେ ବେଶ ଧାରଣ କରିଥାଏ ।

''ଭଗବନ୍ ! ଆପଣ କିଛି ଚିନ୍ତା କରନ୍ତୁ ନାହିଁ । ଆଜି ସୁଦ୍ଧା ଯାହା ହୋଇଯାଇଛି, ହୋଇଯାଇଛି । ପଛ କଥା ଭୁଲି ଯାଆନ୍ତୁ । ମୁଁ ଆପଣଙ୍କ ପୁତ୍ରକୁ ରକ୍ଷା କରିବି । ଆପଣ ପତି-ପତ୍ନୀ ଦୁହିଁଙ୍କ ଦୁଃଖ ମୁଁ ନିଶ୍ଚୟ ଦୂରକରିବି । ଏପରିକି ମୁଁ କାଳ ସହିତ ମଧ୍ୟ ଲଢ଼ିବି ।''

ବ୍ରାହ୍ମଣ ଏକ ନିରର୍ଥକ ଶୁଷ୍କ ହାସ୍ୟ ପ୍ରକାଶ କରି କହିଲା, ''ଆହେ ରାଜନ୍ ! ମୋର ନ' ଜଣ ପୁଅ ମଲେ, କେହି ହେଲେ ପିଠିରେ ପଡ଼ିଲେ ନାହିଁ । ଆପଣ କ'ଣ କରିପାରିବେ ?''

ପୂର୍ବଭଳି ଉତ୍ତେଜନାର ସହିତ ଅର୍ଜ୍ଜୁନ କହିଲେ, ''ହେ ବିପ୍ରଶ୍ରେଷ୍ଠ ! ପଛକଥା ଭୁଲିଯିବା ପାଇଁ ମୁଁ କେବଳ ନିବେଦନ କରୁଛି । ଭବିଷ୍ୟତରେ ଏପରି ଦୁର୍ଘଟଣା କଦାପି ହେବନାହିଁ- ଏହି ପ୍ରତିଜ୍ଞା ମୁଁ ଯଦି ରକ୍ଷା କରି ନ ପାରିବି ତେବେ ଜୀବିତ ପ୍ରଜ୍ୱଳିତ ଅଗ୍ନିରେ ଝାସ ଦେଇ ପାପ ରହିତ ହୋଇଯିବି ।''

ବ୍ରାହ୍ମଣ ଅବହେଳା ସୂଚକ ସ୍ୱରରେ କହିଲା, '' ଆପଣଙ୍କ ଭଳି ଶୂରବୀର ମୁଁ ଅନେକ ଦେଖିଛି । ବଳବାନଙ୍କ ମଧ୍ୟରେ ବଳରାମ ହେଉଛନ୍ତି ଶ୍ରେଷ୍ଠ, ସେ ବି ମୋ ପୁତ୍ରଙ୍କୁ ରକ୍ଷା କରିବା ପାଇଁ ଅସମର୍ଥ । ଯାହାଙ୍କୁ ଈଶ୍ୱରଙ୍କ ଅବତାର କୁହନ୍ତି, ସେ ବି କାନରେ ଆଙ୍ଗୁଠି ଦେଇ ବସିଛନ୍ତି । ତାଙ୍କ ସମ୍ମୁଖରେ ମୁଁ ମୋର ନ ଜଣ ପୁଅଙ୍କ ଶବକୁ ପକେଇ ଦେଇ ଗଲି । ପ୍ରଦ୍ୟୁମ୍ନ, ଯାହାଙ୍କୁ କାମଦେବଙ୍କ ଅବତାର କୁହାଯାଏ; ଚତୁର୍ବ୍ୟୁହ ମଧ୍ୟରୁ ଯିଏ ଅନ୍ୟତମ, ସେ ବି ମୋ ପ୍ରାର୍ଥନା ଶୁଣି ପାରିଲେ ନାହିଁ । ଏହି ଅନିରୁଦ୍ଧଙ୍କୁ ଅଦ୍ୱିତୀୟ ମହାରଥୀ କୁହାଯାଏ । ସେ ବି ଯେତେବେଳେ ମୋ ପୁଅଙ୍କୁ ରକ୍ଷା କରିପାରି ନାହାନ୍ତି, ତୁମେ କ'ଣ କରିପାରିବ ? ରାଜନ୍ ! ଆପଣଙ୍କୁ ନିଶ୍ଚୟ ଖରାପ ଲାଗୁଥିବ, ମୁଁ କିନ୍ତୁ ଆପଣଙ୍କ ପ୍ରତିଜ୍ଞାକୁ ବିଶ୍ୱାସ କରିପାରୁନାହିଁ ।''

ବ୍ରାହ୍ମଣର ଏପରି କଥା ଶୁଣି ଅର୍ଜୁନଙ୍କର କ୍ଷାତ୍ର ତେଜ ପ୍ରଜ୍ୱଳିତ ହୋଇଉଠିଲା । ସେ କ୍ରୋଧପୂର୍ଣ୍ଣ ଅଭିମାନର ସହିତ କହିଲେ, ''ହେ ବିପ୍ର ! ମୁଁ ବଳରାମ ନୁହେଁ । କୃଷ୍ଣ କି ପ୍ରଦ୍ୟୁମ୍ନଙ୍କ ଭଳି ମୋତେ ଭାବନ୍ତୁ ନାହିଁ । ମୋ ନାମ ହେଉଛି ଅର୍ଜୁନ, ଅର୍ଜୁନ । କଥା ପ୍ରସଙ୍ଗରେ ଆପଣ ମୋ ବୀରତା କଥା ନିଶ୍ଚୟ ଶୁଣିଥିବେ । ମହାଭାରତର ବିଜେତା ଅର୍ଜୁନଙ୍କୁ କିଏ ନ ଚିହ୍ନିଥିବ । ମୋ ଧନୁର ନାମ ଗାଣ୍ଡୀବ । ଗାଣ୍ଡୀବ ତ୍ରିଲୋକ ବିଖ୍ୟାତ । ଯାହା ଅଗ୍ନିଦେବ ପ୍ରଦାନ କରିଛନ୍ତି ଏବଂ ଯେଉଁ ଥିରେ ସନ୍ଧାନ କରାଯାଇଥିବା ଶର କଦାପି ବ୍ୟର୍ଥ ହୁଏ ନାହିଁ । ମୁଁ ମୋର ପରାକ୍ରମରେ ପଶୁପତିନାଥ ପାର୍ବତୀପତିଙ୍କୁ ବି ପ୍ରସନ୍ନ କରିଛି । ଯଦି ତୁମେ ଅବଧ ବ୍ରାହ୍ମଣ ନ ହୋଇ ଅନ୍ୟକେହି ହୋଇ ଥାଆନ୍ତ ତେବେ ମୁଁ ନିଶ୍ଚିତ ତୁମ ମୁଣ୍ଡ ଗଣ୍ଡିଠାରୁ ପୃଥକ୍ କରିଦେଇଥାନ୍ତି । ଆପଣ ବ୍ରାହ୍ମଣ, ଆପଣ ପୂଜ୍ୟ । ଏଣୁ ମୁଁ ଆପଣଙ୍କୁ ନିବେଦନ କରୁଛି, ଆପଣ ମୋ ପରାକ୍ରମକୁ ତିରସ୍କାର କରନ୍ତୁ ନାହିଁ । ମୁଁ ଆପଣଙ୍କୁ କିଛି ଅଧିକା କହିବାକୁ ଚାହୁଁନାହିଁ । ଏବେ ଆପଣ ଜାଣି ନିଅନ୍ତୁ ଯେ ଯଦି ସାକ୍ଷାତ୍ ମୃତ୍ୟୁ ବି ଆପଣଙ୍କ ପୁଅକୁ ନେବା ପାଇଁ ଆସେ ତେବେ ତା ସହିତ ମଧ୍ୟ ଯୁଦ୍ଧ କରି ମୁଁ ଆପଣଙ୍କ ପୁତ୍ରକୁ ରକ୍ଷା କରିବି । ଆପଣ ଏଥର ନିଶ୍ଚିତ ହୋଇଯାଆନ୍ତୁ ।''

ବ୍ରାହ୍ମଣ କହିଲା, ''ରାଜନ୍ ! ଆପଣ ଚିରଂଜୀବି ହୁଅନ୍ତୁ । ଭଗବାନ୍ ଆପଣଙ୍କର ମଙ୍ଗଳ କରନ୍ତୁ । ଆପଣଙ୍କ ବଳ ପରାକ୍ରମର ପ୍ରଶଂସା ମୁଁ ଅନେକ ଦିନରୁ ଶୁଣି ଆସୁଛି । ଆପଣ ମୋର ଭାବି ସନ୍ତାନକୁ ବଞ୍ଚାଇ ରକ୍ଷାକଲେ ମୁଁ ଚିରକାଳ ପର୍ଯ୍ୟନ୍ତ ଆପଣଙ୍କର ଗୁଣ କୀର୍ତ୍ତନ କରୁଥିବି ।'' ବ୍ରାହ୍ମଣ ପ୍ରସନ୍ନତାର ସହିତ ଏପରି କହିଲେ । ଅର୍ଜୁନଙ୍କ ବାକ୍ୟକୁ ବିଶ୍ୱାସକରି, ସେ ତାଙ୍କର ଗୁଣ କୀର୍ତ୍ତନ କରି କରି ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଘରେ ନିଜ ପତ୍ନୀଙ୍କୁ ସବୁକଥା କହିଲେ । ଦୁହେଁ ଆନନ୍ଦିତ ହେଲେ । କିଛି ଦିନ ପରେ ବ୍ରାହ୍ମଣୀ ପୁଣି ଗର୍ଭବତୀ ହେଲା ।

ବ୍ରାହ୍ମଣୀର ପ୍ରସବ କାଳ ହେବାରୁ, ବ୍ରାହ୍ମଣ ଅତି ଦୀନସ୍ୱରରେ ଅର୍ଜ୍ଜୁନଙ୍କୁ କହିଲା, ''ହେ ଗାଣ୍ଡିବଧାରି ! ହେ ବୀରଶ୍ରେଷ୍ଠ ! ଏବେ ସମୟ ଆସିଗଲା । ମୋ ସନ୍ତାନକୁ ଏଥର ଆପଣ ରକ୍ଷା କରନ୍ତୁ ।''

ଅର୍ଜ୍ଜୁନ କହିଲେ, ''ହେ ବିପ୍ରଶ୍ରେଷ୍ଠ ! ଆପଣ ଧୈର୍ଯ୍ୟ ଧରନ୍ତୁ । ମୁଁ ଦିବ୍ୟ ଅସ୍ତ୍ର ଶସ୍ତ୍ର ଜ୍ଞାତା । ଆପଣଙ୍କ ସନ୍ତାନକୁ କଦାପି ମରିବାକୁ ଦେବିନାହିଁ । ଆପଣ ମତେ ପ୍ରସବ ଗୃହକୁ ନେଇଯାଆନ୍ତୁ ।'' ଏହା କହି ବ୍ରାହ୍ମଣ ଅର୍ଜ୍ଜୁନ ସହିତ ଗଲେ ।

ବ୍ରାହ୍ମଣଙ୍କ ଘରକୁ ଯାଇ ଅର୍ଜ୍ଜୁନ ଗୋଡ଼ ହାତ ଧୋଇ ବିଶୁଦ୍ଧ ଜଳରେ ତିନିଥର ଆଚମନ କଲେ । ଏହାପରେ ବରଦାତା ସଦାଶିବ ମହାଦେବଙ୍କୁ ପ୍ରଣାମ କଲେ । ଏଥର ସେ ଦିବ୍ୟାସ୍ତ୍ରକୁ ସ୍ମରଣ କଲେ । ଅର୍ଜ୍ଜୁନ ସ୍ମରଣ କରିବାମାତ୍ରେ ସମସ୍ତ ଦିବ୍ୟାସ୍ତ୍ର ତାଙ୍କ ପାଖରେ ଉପସ୍ଥିତ ହୋଇଗଲେ । ହାତରେ ଗାଣ୍ଡୀବ ଧନୁ ଧରି ପାଣ୍ଡୁନନ୍ଦନ ସବ୍ୟସାଚୀ ସେଠାରେ ଦଣ୍ଡାୟମାନ ହୋଇଗଲେ । ସେ ନାନା ପ୍ରକାର ଦିବ୍ୟାସ୍ତ୍ର ମନ୍ତ୍ରପୂତ ବାଣ ଦ୍ୱାରା ଚତୁର୍ଦ୍ଦିଗରୁ ପ୍ରସୂତି ଗୃହକୁ ରୁନ୍ଧି ଦେଲେ । ଶରଗୁଡ଼ିକ ଏପରି ରୁନ୍ଧି ହୋଇଯାଇଥିଲା, ଜଣା ପଡୁଥିଲା ସତେ ଯେପରି ଅର୍ଜ୍ଜୁନଙ୍କର ବିନା ଅନୁମତିରେ ବାୟୁ ମଧ୍ୟ ଭିତରକୁ ପ୍ରବେଶ କରିପାରିବ ନାହିଁ । ସେ ଶର ଦ୍ୱାରା ପ୍ରସୂତି ଗୃହକୁ ପଞ୍ଜୁରୀ ଭଳି କରିଦେଲେ । ଇତି ମଧ୍ୟରେ ବ୍ରାହ୍ମଣୀର ପିଲା ହେଲା । ସମସ୍ତେ ନବଜାତକର କ୍ରନ୍ଦନ ଶୁଣିବାକୁ ପାଇଲେ । କିନ୍ତୁ ଏଥର ଅତି ଆଶ୍ଚର୍ଯ୍ୟର ଘଟଣା ଘଟିଲା । ପୂର୍ବେ ପିଲା ଜନ୍ମ ହେଉଥିଲା, କିଛି ସମୟ ବଞ୍ଚୁଥିଲା, ଏହାପରେ ମରିଯାଉଥିଲା, ମୃତ ଶରୀର ପଡ଼ି ରହୁଥିଲା । ବ୍ରାହ୍ମଣ ସେହି ମୃତ ଶରୀରକୁ ରାଜଦ୍ୱାରରେ ପକାଇ ଦେଇ ଆସୁଥିଲା । ଏଥର ବି ପିଲା ତ ଜନ୍ମ ହେଲା, ମାତ୍ର କ୍ରନ୍ଦନ କରୁଥିବା ଅବସ୍ଥାରେ ଅନ୍ତର୍ଦ୍ଧାନ ହୋଇଗଲା ।

ବ୍ରାହ୍ମଣର ନିରାଶାର ସୀମା ରହିଲା ନାହିଁ । ଇଏ ଥିଲା ତାର ଦଶମ ପୁତ୍ର । ଏହି ପୁଅଟି ବଞ୍ଚିଯିବ ବୋଲି ସେ ଖୁବ୍ ଆଶା କରିଥିଲା । ଗାଣ୍ଡିବଧାରୀ ଅର୍ଜ୍ଜୁନଙ୍କୁ ସେ ଅତି ବିଶ୍ୱାସ କରିଥିଲା । କିନ୍ତୁ ପୁଅ ତ ପୁଅ, ତା ଚିହ୍ନବର୍ଣ୍ଣ ମଧ୍ୟ ପାଇଲା ନାହିଁ । ସେ ଦୁଃଖରେ ମ୍ରିୟମାଣ ହୋଇ, ବିକଳରେ ବିଳାପ କରି କରି ଶ୍ରୀକୃଷ୍ଣଚନ୍ଦ୍ରଙ୍କ ପାଖକୁ ଆସିଲା । ସଜ୍ଜନଙ୍କର ଏକମାତ୍ର ଗତି ହେଉଛନ୍ତି ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର । ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ସୁଧର୍ମା ସଭାରେ ସୁଖପୂର୍ବକ ବିରାଜମାନ ଥିଲେ । ତାଙ୍କ ସମ୍ମୁଖରେ ସବ୍ୟସାଚୀ ଅର୍ଜ୍ଜୁନ ମୁହଁ ଲମ୍ବାଇ ବସିଥିଲେ । କ୍ରୋଧ ଓ ଦୁଃଖରେ ମ୍ରିୟମାଣ ସେହି ଦ୍ୱିଜ ସେଠାରେ ପହଞ୍ଚିଯାଇ, ଅର୍ଜ୍ଜୁନଙ୍କୁ ନିନ୍ଦା କରି କରି ସମସ୍ତଙ୍କୁ ଶୁଣାଇ ଶୁଣାଇ କହିଲା, ''ହାୟ ! କାଳର ବି କି କୁଟିଳ ଗତି । ଭଗବାନ୍ ଯାହାକୁ ଦୁଃଖ ଦିଅନ୍ତି, ତା'ର ଗତିକୁ ପ୍ରଥମେ ହରଣ କରିନିଅନ୍ତି । ଅସମୟରେ ମୋ ପୁତ୍ର ନଷ୍ଟ ହେବାରୁ ମୋର ବୁଦ୍ଧି ଭ୍ରଷ୍ଟ ହୋଇଯାଇଥିଲା । ମୁଁ ବିଶ୍ୱାସ ନ କରିବା କଥାକୁ ବିଶ୍ୱାସ କରିନେଇଥିଲି ।''

ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ମନ୍ଦ ମନ୍ଦ ହାସ୍ୟ ପ୍ରକାଶ କରି କହିଲେ, '' ହେ ବିପ୍ରବର ! କଥା କ'ଣ ?''

ବ୍ରାହ୍ମଣ ରୋଷଯୁକ୍ତ ସ୍ୱରରେ କହିଲା, ''କଥା କ'ଣ କି ମହାରାଜ, ମୋ ବୁଦ୍ଧିଉପରେ ପଥର ଲଦି ହୋଇଯାଇଥିଲା । ମୁଁ ଏହି ନିର୍ବୀର୍ଯ୍ୟ ନପୁଂସକ ଅର୍ଜ୍ଜୁନ କଥାରେ ବିଶ୍ୱାସ କରିନେଲି । ଇଏ ନିଜ ବଳ ପରାକ୍ରମର ଖୁବ୍ ବାହାସ୍ଫୋଟ ମାରୁଥିଲା । 'ମୁଁ ଏହା କରିଦେବି, ମୁଁ ତେସା କରିଦେବି, ମୃତ୍ୟୁ ସହିତ ଯୁଦ୍ଧ କରିବି, ଯମରାଜକୁ ବୁଦ୍ଧି ଶିଖାଇଦେବି, କାଳକୁ ମାରିଦେବି ।' କେତେ ନା କେତେ ଆତ୍ମ ପ୍ରଶଂସା ସେ ସତେ ନ କରିଛି । ମୁଁ ତାର ମିଥ୍ୟା କଥାକୁ ବିଶ୍ୱାସ କରିନେଇଛି । ସେତେବେଳେ ମୁଁ କହିଥିଲି, 'ଭାଇ ! କାହିଁକି ମିଛଟାରେ ନିଜର ବଡ଼ିମା ଦେଖାଉଛୁ ? ଆରେ ଦେଖ, ଯାହାକୁ କୃଷ୍ଣ, ବଳରାମ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଆଦି ରକ୍ଷା କରିପାରି ନାହାନ୍ତି, ତାକୁ ତୁ କିମିତି ରକ୍ଷା କରିପାରିବୁ ?' ସେତେବେଳେ ଇଏ ବାହାସ୍ଫୋଟ ମାରି କହିଥିଲା, 'ମୁଁ ଗାଣ୍ଡିବଧାରୀ ଅର୍ଜ୍ଜୁନ ! ମୁଁ ଏସା କରିଦେବି ତେସା କରିଦେବି' ଆରେ ! ଏବେ ସେହି ଅମୋଘ ଗାଣ୍ଡିବ ଗଲା କୁଆଡ଼େ ? ପୂର୍ବେ ପିଲାଙ୍କର ଶବ ରହୁଥିଲା, ଏବେ ସେହି ଶବ ମଧ୍ୟ ଅନ୍ତର୍ଦ୍ଧାନ ହୋଇଗଲା । କେତେବେଳେ ଅନ୍ତର୍ଦ୍ଧାନ ହେଲା - ନା' ଏଇ ଅର୍ଜ୍ଜୁନ ଗାଣ୍ଡୀବ ଧନୁ ଧରି ଦିବ୍ୟାସ୍ତ୍ର ସନ୍ଧାନ କରୁଥିବା ବେଳେ ତା କେଉଁଆଡ଼େ ଚାଲିଗଲା । ଏପରି ମିଥ୍ୟାବାଦୀ ଅର୍ଜ୍ଜୁନକୁ ମୁଁ ଧିକ୍କାର କରୁଛି । ତା ଗାଣ୍ଡୀବକୁ ମୁଁ ଧିକ୍କାର କରୁଛି । ଯାର ମୂର୍ଖତାକୁ ଦେଖ, ଦୈବଦ୍ୱାରା ଅପହୃତ ପୁଅକୁ ଇଏ ନିଜର ପୁରୁଷାର୍ଥ ବଳରେ ଫେରାଇ ଆଣିବ ବୋଲି ଦୁଃସାହସ କରିଥିଲା । ଯାର ପ୍ରତିଜ୍ଞା ଗଲା କୁଆଡେ ?''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଅନ୍ୟ କେହି ଏହି ଗାଣ୍ଡୀବ ଧନୁକୁ ନିନ୍ଦା କରିଥିଲେ ଅର୍ଜ୍ଜୁନ ତତ୍‌କ୍ଷଣାତ୍ ମୁଣ୍ଡ ଗଣ୍ଡି ଅଲଗା କରିଦେଇ ଥାଆନ୍ତେ । କିନ୍ତୁ ବ୍ରାହ୍ମଣ ଅବଧ୍ୟ, ପୁଣି ସେ ନିଜେ ତାଙ୍କର ପ୍ରତିଜ୍ଞା ପାଳନ କରିବାକୁ ଅସମର୍ଥ ହୋଇଛନ୍ତି । ଅଭିମାନବଶତଃ ନିଜର ଖୁବ୍ ବଡ଼ିମା ଦେଖାଇ ହୋଇଛନ୍ତି । କିନ୍ତୁ ଟିକିଏ ବୋଲି ପାଳନ କରିପାରି ନାହାନ୍ତି । ଅର୍ଜ୍ଜୁନ ବ୍ରାହ୍ମଣ ଆଡ଼କୁ ଚାହିଁ ପାରୁ ନଥିଲେ । ତଳକୁ ମୁହଁ ପୋତି ଧୀରେ ଧୀରେ ସେ କହିବାକୁ ଲାଗିଲେ, ''ହେ ବିପ୍ରଶ୍ରେଷ୍ଠ ! ଆପଣ ମୋର ନିନ୍ଦା କରନ୍ତୁ ନାହିଁ । ମୁଁ ଏପର୍ଯ୍ୟନ୍ତ ନିରାଶ ହୋଇନାହିଁ । ତିନିଲୋକରେ ଯେଉଁଠାରେ ବି ତୁମର ପୁଅ ଥାଆନ୍ତୁ ମୁଁ ନିଶ୍ଚୟ ଖୋଜି ଆଣିବି ।''

ବ୍ରାହ୍ମଣ ବ୍ୟଙ୍ଗ ସ୍ୱରରେ କହିଲା, ''ତୁମେ ଆଣି ସାରିଛ ! ଆରେ, ଯେତେବେଳେ ପ୍ରତ୍ୟେକ୍ଷରେ ଆଣି ପାରିଲ ନାହିଁ, ପରୋକ୍ଷରେ କ'ଣ ଆଣିବ ?''

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଏବେ ଅର୍ଜ୍ଜୁନ ବଡ଼ ଚିନ୍ତାରେ ପଡ଼ିଗଲେ । ସେ ଅଭିମାନ ବଶତ 'ମୁଁ କୃଷ୍ଣ ନୁହେଁ, ବଳରାମ ନୁହେଁ, କି ମୁଁ ପ୍ରଦ୍ୟୁମ୍ନ ନୁହେଁ; ମୁଁ ଅର୍ଜ୍ଜୁନ୍' ବୋଲି କହି ପକାଇଥିଲେ । ଏଣୁ ତାଙ୍କୁ କିଛି ପଚାରିବାକୁ ଭଗବାନ୍ ସାହସ କରିନଥିଲେ । ଏବେ ଅର୍ଜ୍ଜୁନ ଯେଉଁଭଳି ପିଲାଙ୍କୁ ଖୋଜିବାକୁ ଯିବେ ତାହା ବର୍ଣ୍ଣନା କରୁଛି ।''

**ଛପ୍ପୟ**

*କହେ ବିପ୍ର ! କା ୟହାଁ ନ କୋଈ କ୍ଷତ୍ରିୟ ନିବସୈ ।*
*ବିଲପୈ ଏସେ ବିପ୍ର ନ କୋଈ ଘର ତୈଂ ନିକସୈ ॥*
*ତବ ସୁତ ରକ୍ଷା କରୁଁ ଦେବ ! ଅବ ନହିଁ ଘବରାବେଂ ।*
*ହୋହି ପ୍ରସବ କୋ ସମୟ ଆଇ ପୁନି ମୋଇ ବତାବେଂ ॥*
*ସୁତ ରକ୍ଷା ଯଦି ନହିଁ କରୁଁ , କରୁଁ ଅଗ୍ନିମହିଁ ହଁସେୟା ଦ୍ୱିଜ ।*
*ପ୍ରସବ କାଲ ଆୟୋ ଜବହିଁ, ଗୟେ ପାର୍ଥ ଲୈ ଧନୁଷ ନିଜ ॥*



# ଅର୍ଜ୍ଜୁନଙ୍କୁ ଭଗବାନଙ୍କ ଆଶ୍ୱାସନ

**ଦର୍ଶୟେ ଦ୍ୱିଜସୂନୂଂସ୍ତେ ମାବଜ୍ଞାତ୍ମାନମାତ୍ମନା ।**
**ୟେ ତେ ନଃ କୀର୍ତିଂ ବିମଲାଂ ମନୁଷ୍ୟାଃ ସ୍ଥାପୟିଷ୍ୟନ୍ତି ॥☆**

(ଶ୍ରୀ ଭା: ୧୦ମ ସ୍କନ୍ଧ ୮୯ ଅ. ୪୬ ଶ୍ଲୋକ)

**ଛପ୍ପୟ**

*ଛୋଡ଼ି ଶରନି ଘର ଘେରି ବନାୟୋ ପିଂଜରା ସମ ତିନ ।*
*ଜନମ୍ୟୋ ଶିଶୁ କରି ରୁଦନ ଭୟୋ ଅନ୍ତରହିତ ତତ୍ ଛିନ ॥*

---

☆
ସୁହୃଦ ଭାବେ ନରହରି । ବୋଲନ୍ତି ବେନିକର ଧରି ॥
ଏ ଦେହ ନାଶିବୁ କେମନ୍ତେ । ସତ୍ୟବଚନ ଭଙ୍ଗ ଅର୍ଥେ ॥
ମୁଁ ତୋତେ ଦେଖାଇବି ନେଇ । ବିପ୍ର ବାଳକ ଦଶଭାଇ ॥
ଆତ୍ମାକୁ ଆପଣେ ନ ମାର । ଶୁଣ ପାଣ୍ଡବ ବୀରବର ॥
ତୋର ମହିମା ଏ ଜଗତେ । ମୁହିଁ ସ୍ଥାପିବି ଦୃଢ଼ମତେ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ ୯୫ ଅ.)

*ଅରଜୁନ ଲଜ୍ଜିତ ଭଯେ ବିପ୍ର କଟୁ ବଚନ ସୁନାଯେ ।*
*ଦ୍ୱିଜ ସୁତ ଭୁଂଜନ ହେତୁ ଲୋକ ପାଲନି ପୁର ଆଯେ ।।*
*କହୁଁ ମିଲୈୟା ବାଲକ ନହୀଂ, ଲାଗେ ଅରଜୁନ ତବ ଜରନ ।*
*'ଟୋଇ ଦିଖାଉ ଦ୍ୱିଜ ତନଯ, ଚଲ ବୋଲେ ଅଶରନ ଶରନ ।।*

କଥାରେ ଅଛି, 'ଠୋକର ଖାଇଲେ ବୁଦ୍ଧି ଆସେ ।' ଯେତେବେଳେ ନିଜର ସମସ୍ତ ପୁରୁଷାର୍ଥ ବ୍ୟର୍ଥ ହୋଇଯାଏ, ସେତେବେଳେ ମଣିଷର ଅଭିମାନ ତୁଟେ । ସେତେବେଳେ ସେ ଭାବେ ଯେ, ଯେ କରି କରାଉ ଥାଏ ସେ ହେଉଛନ୍ତି ହରି । ଆମେ କେବଳ ତାଙ୍କର ଯନ୍ତ୍ର । ଯେ ପର୍ଯ୍ୟନ୍ତ ଧନର, ବିଦ୍ୟାର, କଳାକୌଶଳର ତଥା ଅନ୍ୟାନ୍ୟ କୌଣସି ବସ୍ତୁର ଅଭିମାନ ଥାଏ, ସେ ପର୍ଯ୍ୟନ୍ତ ଭଗବାନ ଚୁପ୍‌ଚାପ୍ ବସି ଦେଖୁଥାଆନ୍ତି । ଯେପରି କୁନି ପିଲାଟିଏ ନିଜର ପୁରୁଷାର୍ଥରେ କୌଣସି ବସ୍ତୁକୁ ଉଠାଇବାକୁ ଚେଷ୍ଟା କରୁଥାଏ, ମାତା-ପିତା ବସି ତାହା ଦେଖୁଥାଆନ୍ତି । ଯେତେବେଳେ ସେ ଅସମର୍ଥ ହୋଇଯାଏ, ମାତା-ପିତାଙ୍କ ଆଡ଼କୁ ଚାହିଁ ନିରାଶାରେ କାନ୍ଦିବା ଆରମ୍ଭ କରେ, ସେତେବେଳେ ମାତା ପିତା ତା କାମରେ ସହାୟତା କରନ୍ତି ।

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଅର୍ଜ୍ଜୁନ ପ୍ରତିଜ୍ଞା କରି ସୁଦ୍ଧା ଯେତେବେଳେ ବ୍ରାହ୍ମଣର ପୁଅକୁ ରକ୍ଷା କରିପାରିଲେ ନାହିଁ, ଆଉ ବ୍ରାହ୍ମଣ ତାଙ୍କୁ ଓ ତାଙ୍କର ଗାଣ୍ଡୀବ ଧନୁ ବିଷୟରେ ନାନାପ୍ରକାର ଅବାଞ୍ଛିତ କଥା କହିଲେ, ସେତେବେଳେ ଅର୍ଜ୍ଜୁନଙ୍କୁ ଖୁବ୍ ଦୁଃଖ ହେଲା । ସେ ଥିଲେ ଯୋଗୀ । ସବୁ ଲୋକରେ ତାଙ୍କର ଅବ୍ୟାହତ ଗତି ଥିଲା । ସେ ବ୍ରାହ୍ମଣକୁ ଆଶ୍ୱାସନା ଦେଇ କହିଲେ, 'ହେ ବିପ୍ରଶ୍ରେଷ୍ଠ ! ତିନିଲୋକରେ ଯେଉଁଠାରେ ବି ତୁମର ପୁଅ ଥିବ, ମୁଁ ତାକୁ ନିଶ୍ଚୟ ଖୋଜି ନେଇ ଆସିବି ।' ବ୍ରାହ୍ମଣ ଗାଳି ଫଜିତ୍ କରି ଫେରିଗଲା । ଏହାପରେ ଅର୍ଜ୍ଜୁନ ଭାବିବାରେ ଲାଗିଲେ, 'ପିଲାଟି ମରି ଯମ ପୁରକୁ ଯାଇଥିବ । ମୁଁ ଯମପୁରକୁ ଯାଇ ଯମରାଜଙ୍କୁ ମାଗି ଆଣିବି । ଶ୍ରୀକୃଷ୍ଣଚନ୍ଦ୍ର ତ ତାଙ୍କର ଗୁରୁପୁତ୍ର ଆଉ ଦେବକୀଙ୍କର ସାତ ପୁଅଙ୍କୁ ଫେରାଇ ଆଣିଥିଲେ ।' ଏପରି କଥା ଚିନ୍ତା କରି ସେ ମନେ ମନେ ଆନନ୍ଦିତ ହୋଇଗଲେ । ଲଜ୍ୟାହେତୁ ତ ସେ ଶ୍ରୀକୃଷ୍ଣଙ୍କୁ କିଛି କହିପାରୁନଥିଲେ । ସେ ଯମରାଜଙ୍କର ସଂଯମନୀପୁରକୁ ଚାଲିଲେ । ସେ କେଉଁଆଡ଼େ ଯାଉଛନ୍ତି ଭଗବାନ ବି ତାଙ୍କୁ କିଛି ପଚାରିଲେ ନାହିଁ । ନିଜର ଯୋଗବଳ ପ୍ରଭାବରେ ସେ ସଂଯମନୀ ପୁରରେ ପହଞ୍ଚିଗଲେ । ଯମରାଜ ତାଙ୍କୁ ଆଦର ସହକାରେ ସତ୍କାର କଲେ ଓ ଆଗମନର କାରଣ ପଚାରିଲେ ।

ଅର୍ଜ୍ଜୁନ କହିଲେ, ''ଧର୍ମରାଜ ! ଦ୍ୱାରକାର ଅମୁକ ବିପ୍ରର ପୁତ୍ରକୁ ଆପଣଙ୍କ ମନ୍ତ୍ରୀ ମୃତ୍ୟୁ ମାରି ସଶରୀର ନେଇ ଆସିଛନ୍ତି । ମୋତେ ସେହି ପୁଅକୁ ଫେରାଇ ଦିଅନ୍ତୁ ।''

ଯମରାଜ ଆଶ୍ଚର୍ଯ୍ୟ-ଚକିତ ହୋଇ କହିଲେ- ''ନା ରାଜନ ! ଏପରି କୌଣସି ପିଲା ଆସିଥିବା ମୁଁ ଜାଣିନାହିଁ ।''

ଅର୍ଜ୍ଜୁନ ବ୍ୟଗ୍ରତାର ସହିତ ଯମରାଜଙ୍କୁ କହିଲେ, ''ସମ୍ଭବତଃ ଆପଣ ଭୁଲିଯାଇଥିବେ ! ମରିବା ପରେ ପ୍ରାଣୀ ଆପଣଙ୍କ ପାଖକୁ ତ ଆସନ୍ତି ! ଆପଣ ଚିତ୍ରଗୁପ୍ତଙ୍କୁ ପଚାରନ୍ତୁ ।''

ଯମରାଜ ଅତିଶୀଘ୍ର ଚିତ୍ରଗୁପ୍ତଙ୍କୁ ଡକାଇଲେ । ଦୁଇଦିନ ଭିତରେ ଆସିଥିବା ତାଲିକା ଯାଞ୍ଚ କରାଗଲା । ପିଲାର ନାଁ-ଗନ୍ଧ ମିଳିଲା ନାହିଁ । ଯମରାଜ କହିଲେ, ''ଏପରି କେତେକ ଲୋକ ଥାଆନ୍ତି, ଯାହାଙ୍କର କାଗଜପତ୍ର ଏଠାରେ ହୁଏ ନାହିଁ, ସେମାନେ ସିଧା ସିଧା ଅନ୍ୟ ଲୋକକୁ ଚାଲିଯାଆନ୍ତି । ମୋ ଲୋକରେ ଥିଲେ କିଛି ଆପତ୍ତି ନ ଥିଲା । ଭଗବାନ ଶ୍ରୀକୃଷ୍ଣ ହେଉଛନ୍ତି ନାରାୟଣଙ୍କ ଅବତାର, ଆଉ ଆପଣ ହେଉଛନ୍ତି ନରଙ୍କ ଅବତାର । ଆମ ପାଇଁ ଆପଣ ଦୁହେଁ ସମାନ ।''

ଏପରି କଥା ଶୁଣି ଅର୍ଜ୍ଜୁନ ବଡ଼ ବିସ୍ମିତ ହୋଇଗଲେ । ଏଥର ସେ ଭାବିଲେ - 'ହଉ ! ସବୁ ଲୋକପାଳଙ୍କ ପୁରୀରେ ଯାଇ ଖୋଜିବା ।' ଏପରି ସ୍ଥିର କରି ପ୍ରଥମେ ଇନ୍ଦ୍ରଙ୍କ ଅମରାବତୀପୁରକୁ ଗଲେ । ସେଠାରେ ବ୍ରାହ୍ମଣ ପୁତ୍ରର କୌଣସି ଖବର ନପାଇ ସେ ବରୁଣ ଲୋକକୁ ଗଲେ । ବରୁଣଙ୍କର ବିଭାବରୀ ତଥା କୁବେରଙ୍କର ଅଳକାପୁରୀରେ ବି ତାକୁ ପାଇଲେ ନାହିଁ । ଏହାପରେ ଅଗ୍ନି, ନିର୍ଋତି, ସୋମ ତଥା ବାୟୁ ଆଦି ଉପଦିଗ ଲୋକପାଳଙ୍କ ପୁରୀରେ ତଥା ଅତଳ, ବିତଳ ଆଦି ନିମ୍ନର ସପ୍ତଲୋକକୁ ଗଲେ । ଯେତେବେଳେ ସେଠାରେ ବି କୌଣସି ପତ୍ତା ପାଇଲେ ନାହିଁ, ସେ ଭାବିଲେ, 'ତ୍ରିଲୋକ ଉପରେ ଥିବା ଲୋକକୁ ସମ୍ଭବତଃ ବ୍ରାହ୍ମଣ ପୁତ୍ର ଚାଲି ଯାଇଛି ।' ଏପରି ଭାବି ସେ ମହର୍ଷିଲୋକ, ଜନ ଲୋକ, ତପ ଲୋକ ତଥା ସତ୍ୟ ଲୋକ ପର୍ଯ୍ୟନ୍ତ ଗଲେ । ସତ୍ୟ ଲୋକରେ ପହଞ୍ଚି ସେ ବ୍ରହ୍ମାଙ୍କୁ ପଚାରିଲେ । ବ୍ରହ୍ମା କହିଲେ, 'ରାଜନ୍ ! ମୋ ଧାମକୁ ତ ସେ ଆସିନାହିଁ ।'

ଅର୍ଜ୍ଜୁନ କହିଲେ, '' ଆପଣଙ୍କ ଧାମକୁ ନ ଆସିଥିଲେ ବି ଆପଣ ତ ଜାଣିଥିବେ ସେ କେଉଁଲୋକକୁ ଯାଇଛି, କାରଣ ଆପଣ ତ ସର୍ବଜ୍ଞ ।''

ବ୍ରହ୍ମା କହିଲେ, ''ମୁଁ ସର୍ବଜ୍ଞ ସତ, ହେଲେ ମୋ ବ୍ରହ୍ମାଣ୍ଡରେ ସେହି ବାଳକ ଉତ୍ପନ୍ନ ହେବାର ଲେଖା ହୋଇଥିଲେ ବି ସେ କେଉଁ ଲୋକକୁ ଗଲା, କିଏ ତାକୁ ନେଲା, ମୋ ବ୍ରହ୍ମାଣ୍ଡର କୌଣସିଠାରେ ସେ ପ୍ରସଙ୍ଗରେ କୌଣସି ଲେଖା ମିଳୁନାହିଁ । ଆଉ ତୁମକୁ ଅଧିକ କ'ଣ କହି ପାରିବି ? ମୋ ବ୍ରହ୍ମାଣ୍ଡ ଭଳି ଅସଂଖ୍ୟ ବ୍ରହ୍ମାଣ୍ଡ ଅଛି । ମୋ ଭଳି ଅସଂଖ୍ୟ ବ୍ରହ୍ମା ଅଛନ୍ତି । ମୁଁ କ'ଣ ସବୁ ବ୍ରହ୍ମାଣ୍ଡର କଥା କହି ପାରିବି ? ମୋ ଜ୍ଞାନ ମୋର ଏହି ବ୍ରହ୍ମାଣ୍ଡରେ ହିଁ ସୀମିତ । ମୁଁ ଏତିକି ମାତ୍ର କହିପାରେ ଯେ ମୋ ବ୍ରହ୍ମାଣ୍ଡରେ ସେହି ବାଳକ କୌଣସି ଠାରେ ନାହିଁ ।''

ଏପରି କଥା ଶୁଣି ଅର୍ଜ୍ଜୁନ ଆଶ୍ଚର୍ଯ୍ୟାଭିଭୂତ ହୋଇଗଲେ । ତାଙ୍କର ସମସ୍ତ ଅଭିମାନ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ସେ ତାଙ୍କର ଯେଉଁ ପୁରୁଷାର୍ଥ, ଗାଣ୍ଡୀବ ଧନୁ, ଦିବ୍ୟ ଅସ୍ତ୍ର, ଯୋଗବଳ ଆଦିର ଅଭିମାନ କରୁଥିଲେ ତାହା ନଷ୍ଟ ହୋଇଗଲା । ସେ ହତାଶ ହୋଇ ଫେରି ଆସିଲେ । ସେ ଅତି ଖିନ୍ନ ହୋଇଯାଇଥିଲେ । ବ୍ରାହ୍ମଣ ପାଖରେ ସେ ପ୍ରତିଜ୍ଞା କରିଥିଲେ, ''ମୁଁ ତୁମ ପୁତ୍ରକୁ ବଞ୍ଚାଇ ନ ପାରିଲେ ପ୍ରଜ୍ୱଳିତ ଅଗ୍ନିରେ ଆତ୍ମାହୂତି ଦେବି ।' ଏଥର ଅର୍ଜ୍ଜୁନ ଅଗ୍ନିରେ ପ୍ରବେଶ କରିବା କଥା । ଏକ ବିଶାଳ ଚିତା ପ୍ରସ୍ତୁତ କରାଗଲା । ସେ ସେହି ଚିତାଗ୍ନିରେ ପ୍ରବେଶ କରିବାକୁ ଯାଉଛନ୍ତି ଏହି ସମୟରେ ଭଗବାନ୍ କୃଷ୍ଣଚନ୍ଦ୍ର ଆସି ତାଙ୍କ ହାତ ଧରିପକାଇଲେ ଆଉ ହସି ହସି କହିଲେ, 'ଅର୍ଜ୍ଜୁନ ! ସ୍ତ୍ରୀ ମାନେ ମୃତ ପତିର ଚିତାରେ ଝାସ ଦେବା ଆମେ ଶୁଣିଥିଲୁ; ତୁମେ କାହିଁକି ଚିତାରେ ପ୍ରବେଶ କରିବାକୁ ଯାଉଛ ?'

ଅର୍ଜ୍ଜୁନ ଲଜ୍ଜିତ ହୋଇଗଲେ । ସେ କହିଲେ-''ସଖା ! ମୁଁ ମୋ ପ୍ରତିଜ୍ଞା ରକ୍ଷା କରି ପାରିଲି ନାହିଁ । ବ୍ରାହ୍ମଣର ପୁଅକୁ ମୃତ୍ୟୁ ମୁଖରୁ ରକ୍ଷା କରିପାରିଲି ନାହିଁ । ନିମ୍ନର ସପ୍ତ ଭୁବନ ତଥା ଊର୍ଦ୍ଧ୍ୱରେ ଥିବା ସପ୍ତ ଭୁବନ, ଏପରି ଚଉଦ ଭୁବନରେ ଖୋଜି ଆସିଛି । ପିଲା ମିଳିବା କଥା ଦୂରେ ଥାଉ, ତା ଠିକଣା ବି କେହି କହିପାରିଲେ ନାହିଁ । ବ୍ରାହ୍ମଣ ପ୍ରତ୍ୟକ୍ଷରେ ପ୍ରତିଜ୍ଞା ଭଙ୍ଗ ହୋଇଥିବାରୁ ମୋର ଏହି ଜୀବନ ରଖିବାର କୌଣସି ପ୍ରୟୋଜନ ନାହିଁ ।''

ଭଗବାନ ହସି ହସି କହିଲେ, '' ଠିକ୍ ଅଛି ତାହା ହେଲେ । ତୁମେ ପୋଡ଼ିହୋଇ ମରିବା ସଂକଳ୍ପରୁ କ୍ଷାନ୍ତ ହୁଅ । ମୁଁ ତୁମକୁ ଜଣେ ନୁହେଁ, ବ୍ରାହ୍ମଣର ଦଶଟିଯାକ ପୁଅଙ୍କୁ ଦେଖାଇବି । କେବଳ ଦେଖାଇବି ନାହିଁ, ସେମାନଙ୍କୁ ତୁମ ହାତରେ ବ୍ରାହ୍ମଣଙ୍କୁ ପ୍ରଦାନ କରିବି । ତୁମେ ଆଉ କିଛି ନ ଭାବି ମୋ ସହିତ ଆସ ।''

ଏପରି କଥା ଶୁଣି ଅର୍ଜ୍ଜୁନ ମନେ ମନେ ଅତି ଆଶ୍ଚର୍ଯ୍ୟ ହେଲେ, ଆଉ ଭାବିଲେ, 'ଅର୍ଜ୍ଜୁନ ଗୋଟିଏ ସାମାନ୍ୟ ବାଳକର ଜୀବନ ରକ୍ଷା କରିପାରିଲେ ନାହିଁ ବୋଲି ଜଗତରେ ମୋର ଅପ୍ରମିତ ନିନ୍ଦା ନିଶ୍ଚୟ ହେବ ।' ଭଗବାନ ଅର୍ଜ୍ଜୁନଙ୍କର ମନୋଗତ ଭାବ ବୁଝିଗଲେ । ସେ ତେଣୁ କହିଲେ, ''ଅର୍ଜ୍ଜୁନ ! ତୁମେ କିଛି ଚିନ୍ତା କରନାହିଁ । ଜଗତ ତୁମର ନିନ୍ଦା କରିବେ ନାହିଁ । ଏହି ଘଟଣାରେ ସଂସାରର ସମସ୍ତ ଲୋକ ଆମର ବିମଳ କୀର୍ତ୍ତିକୁ ଧାରଣ କରିବେ । ଏହା ଫଳରେ ଆମ ଦୁହିଁଙ୍କର ଗୌରବ ବଢ଼ିବ ।''

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ଏହା ଶୁଣି ଅର୍ଜ୍ଜୁନ ପରମ ସନ୍ତୁଷ୍ଟ ହେଲେ । ଭଗବାନ ତାଙ୍କର ଦିବ୍ୟ ରଥ, ଯେଉଁଥିରେ ଶୈବ୍ୟ, ସୁଗ୍ରୀବ, ବଳାହକ ଓ ମେଘପୁଷ୍ପ ନାମକ ଅଶ୍ୱ ଯୋଚା ହୋଇଥିଲେ, ବାହାର କଲେ । ଭଗବାନ ଅର୍ଜ୍ଜୁନଙ୍କୁ ସାଙ୍ଗରେ ଧରି ରଥରେ ବସିଗଲେ ଓ ଅତି କ୍ଷିପ୍ର ବେଗରେ ପଶ୍ଚିମ ଦିଗରେ ରଥ ଚାଳନା କଲେ । ରଥରେ ଚଢ଼ି ସେମାନେ କେଉଁଆଡ଼େ ଗଲେ ଓ କ'ଣ ହେଲା ତାହା ଆଗକୁ କହିବି ।''

### ଛପ୍ପୟ

ଦୈ ଅରଜୁନକୁଁ ଧୀର ତାହି ରଥମହଁ ବୈଠାର୍‌ୟୋ ।
ପଶ୍ଚିମ ଦିଶି କରି ଲକ୍ଷ୍ୟ ଦିବ୍ୟ ରଥ ତୁରତ ସିଧାର୍‌ୟୋ ॥
ପର୍ବତ, ଦ୍ୱୀପ, ସମୁଦ୍ର, ସାତ ସବ ଲଂଘନ କରି କେଂ ।
କର୍‌ୟୋ ଘୋର ତମ ନାଶ ସୁଦରଶନ ଆଗେ ବଢ଼ି କେଂ ॥
ଦେଖ୍ୟୋ ତମକେ ପାର ଅତି, ଦିବ୍ୟ ତେଜମୟ ଲୋକତହଁ ।
ପରେ ସହସଫନ ଅହି ପ୍ରବଲ, ଦିବ୍ୟ ଉଦଧି କେ ଭବନମହଁ ॥



# ପରମ ବୈଷ୍ଣବ ଧାମରେ ...

**ନିଶାମ୍ୟ ବୈଷ୍ଣବଂ ଧାମ ପାର୍ଥଃ ପରମବିସ୍ମିତଃ ।**
**ଯଦ୍ କିଞ୍ଚିତପୌରୁଷଂ ପୁଂସାଂ ମେନେ କୃଷ୍ଣାନୁକମ୍ପିତମ୍ ॥☆**

(ଶ୍ରୀ.ଭା.୧୦ମ ସ୍କନ୍ଧ ୮୯ ଅ. ୬୩ ଶ୍ଳୋକ)

### ଛପ୍ପୟ

ତିନକୀ ଶଯ୍ୟା ସୁଖଦ ତାହି ପୈ ଶ୍ୟାମ ବିରାଜୈଂ ।
ଭୂମା,ଅଜ, ଅଖିଲେଶ, ଅସ୍ତ୍ର, ଆୟୁଧ ମହଭ୍ରଜୈଂ ॥
ପାର୍ଥ କୃଷ୍ଣ ନେ ଜାଇ ଚରନ ବନ୍ଦନ ତିନି କୀନ୍ହେ ।
ଭୂମା ପୁରୁଷ ନିହାରି ତନୟ ଦଶ ଦ୍ୱିଜକେ ଦୀନ୍ହେ ॥
ବୋଲେ ଭୂମା ପୁରୁଷ ପୁନି, ନର-ନାରାୟଣ ଉଭୟ ତୁମ ।
ଆଓ ଭୂକୋ ଭାର ହରି, ତୁରତହିଁ ଆୟସୁ ଦେହିଁ ହମ ॥

---

☆ କୃଷ୍ଣ ଅଦ୍ଭୁତ କର୍ମ ଦେଖି । ଅର୍ଜୁନ ମନେ ଉପଲକ୍ଷି ॥
ବିଷ୍ଣୁ ପରମଧାମ ଚିନ୍ତି । ନର ସ୍ୱଭାବେ କଲା ଭୀତି ॥
ଚତୁରବର୍ଗ ଦାତା ହରି । କପଟେ ନରରୂପ ଧରି ॥
ପ୍ରାଣୀକି କରେ ଅନୁକମ୍ପା । ଏବେ ବିଚାରି କଲା ଶଙ୍କା ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ ୯୫ ଅ.)

**ସୃଷ୍ଟିର ଯେତେ ଲୀଳା ବିଳାସ ଅଛି ସେ ସମସ୍ତ ହେଉଛି ଶ୍ରୀକୃଷ୍ଣଙ୍କର କୃପାର ଫଳ । ଶ୍ରୀକୃଷ୍ଣ ହିଁ ଅନେକ ରୂପରେ କ୍ରୀଡ଼ା କରୁ ଥାଆନ୍ତି । ତାଙ୍କର ଅଂଶାବତାର ଆଦି** ଅନେକ ଅବତାର ଅଛି । ଏ ସମସ୍ତ ଭୂମା ପୁରୁଷ ଶ୍ରୀକୃଷ୍ଣଙ୍କଠାରୁ ହିଁ ବାହାରିଥାଏ । ଆଉ ତାଙ୍କରିଠାରେ ଲୟ ହୋଇଥାଏ, ଯେପରି ମେଘ ସମୁଦ୍ରରୁ ଜଳ ନେଇ ନଦୀରେ ଢାଳି ଦିଏ ଓ ନଦୀ ସମୂହ ସମୁଦ୍ରରେ ମିଳିତ ହୋଇଯାଆନ୍ତି, ଠିକ୍ ସେହିପରି ଏହାର ଆଦାନ-ପ୍ରଦାନ ହୋଇଥାଏ । ନଟବର ଅନେକ ରୂପରେ ଖେଳ ଖେଳୁଥାନ୍ତି । ସେ ହିଁ ଏହି ପ୍ରପଞ୍ଚକୁ ପରିଚାଳନା କରୁଥାନ୍ତି । **ପ୍ରାଣୀଙ୍କଠାରେ ଯେଉଁ ସବୁ ବଳ ପୁରୁଷାର୍ଥ ଆମେ ଦେଖୁ, ସେ ସମସ୍ତ ସେହି ଭୂମା ଭଗବାନ୍ ଶ୍ରୀକୃଷ୍ଣଙ୍କର କୃପା-ପ୍ରସାଦ ।**

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ବ୍ରାହ୍ମଣର ପୁତ୍ରଙ୍କୁ ଆଣିବା ପାଇଁ ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ତାଙ୍କର ଦିବ୍ୟ ରଥରେ ଅର୍ଜୁନଙ୍କୁ ସାଙ୍ଗରେ ଧରି ପଶ୍ଚିମ ଦିଗରେ ଅତି ଦ୍ରୁତ ବେଗରେ ଗଲେ । ସେହି ରଥରେ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ବ୍ୟତୀତ ଆଉ କେହି ନଥିଲେ । ଘୋଡ଼ାମାନେ ମନର ବେଗରେ ଚାଲିଥିଲେ । ରଥରେ ଚଢ଼ି ଭଗବାନ୍ ସପ୍ତଦ୍ୱୀପ, ଏହାର ସପ୍ତ ମର୍ଯ୍ୟଦା ପର୍ବତ ତଥା ସପ୍ତ ସମୁଦ୍ର ଅତିକ୍ରମ କରିଗଲେ । ଏହାପରେ ସେ ପୃଥିବୀର ଶେଷସୀମାରେ ଥିବା ସେହି ଲୋକାଲୋକ ପର୍ବତ ନିକଟରେ ପହଞ୍ଚିଲେ, ଯାହାର ଏ ପାଖରେ ପ୍ରକାଶ ତ ଥିଲା, ଅପର ପାର୍ଶ୍ୱ କିନ୍ତୁ ଥିଲା ପୂର୍ଣ୍ଣ ଅନ୍ଧକାରାଛନ୍ନ । ଭଗବାନଙ୍କର ରଥ କେହି ବି ଲଂଘନ କରି ନ ପାରୁଥିବା ସେହି ପର୍ବତକୁ ଲଘଂନ କଲା । ଏଣିକି ସେ ଯେଉଁ ମାର୍ଗରେ ଯାଉଥିଲେ ସେଠାରେ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର କାହାର ବି ପ୍ରକାଶ ନଥିଲା । ମାର୍ଗ ଥିଲା ଘୋର ଅନ୍ଧକାରମୟ । ଭଗବାନଙ୍କର ଅତି ପ୍ରିୟ ଶୈବ୍ୟ, ସୁଗ୍ରୀବ, ମେଘପୁଷ୍ପ ଓ ବଳାହକ ନାମକ ଦିବ୍ୟ ଅଶ୍ୱ ବି ସେହି ମାର୍ଗରେ ବାଟବଣା ହେବାରେ ଲାଗିଲେ ।

ଯୋଗେଶ୍ୱରଙ୍କ ଈଶ୍ୱର ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ଯେତେବେଳେ ଦେଖିଲେ ଯେ ଘୋଡ଼ାଙ୍କର ଦୃଷ୍ଟି ଅବରୁଦ୍ଧ ହୋଇ ଗଲାଣି, ସେ ତାଙ୍କର ସହସ୍ର ସୂର୍ଯ୍ୟସମ ତେଜ ପ୍ରକାଶକରୁଥିବା ସୁଦର୍ଶନ ଚକ୍ରକୁ ଆଗକୁ ପଠାଇ ଦେଲେ । ସୁଦର୍ଶନ ଚକ୍ର ଘୋଡ଼ାଙ୍କ ଆଗରେ ଦିବ୍ୟ ଅଲୌକିକ ଆଲୋକ ବିଚ୍ଛୁରିତ କରି କରି ଚାଲିଲା । ସେତେବେଳେ ସୁଦର୍ଶନ ଚକ୍ରର ଗତି ଥିଲା ଦିବ୍ୟ ଅଶ୍ୱଙ୍କର ଗତିଠାରୁ ଅଧିକ ଦ୍ରୁତ । ତୀବ୍ର ତମକୁ ନିଜର ତୀକ୍ଷ୍ଣ ତେଜରେ ବିଦୀର୍ଣ୍ଣ କରି କରି ତାହା ମନଠାରୁ ହେଲେ ଅଧିକ ବେଗରେ ପଥ ଅତିକ୍ରମ କରୁଥିଲା । ଘୋଡ଼ାମାନେ ତା'ରି ଆଲୋକରେ ଆଗକୁ ଚାଲିଥିଲେ । ଧନୁର୍ମୁକ୍ତ ରାମବାଣ ଯେପରି ଶତ୍ରୁସେନାଙ୍କୁ ସଂହାର କରିକରି ଆଗକୁ ମାଡ଼ି ମାଡ଼ିଯାଏ, ସେହିଭଳି ସେହି ରଥ ସୁଦର୍ଶନର ଆଲୋକରେ ଆଗକୁ ମାଡ଼ି ଚାଲିଥିଲେ । କୌଣସି ସମୟରେ ଅତିକ୍ରମ କରିବା ସମ୍ଭବ ନ ହେଉଥିବା ସେହି

ଅନ୍ଧକାରମୟ ପଥକୁ ଅତିକ୍ରମ କରିବା ପରେ ଭଗବାନ୍ ତାଙ୍କର ସୁଦର୍ଶନ ଚକ୍ରକୁ ଫେରାଇ ଆଣିଲେ । ଏହାପରେ ଅର୍ଜୁନ ଏକ ଅପୂର୍ବ ଆଲୋକମୟ ଲୋକ ଦେଖିବାକୁ ପାଇଲେ, ଯାହାର ତେଜ କାହା ସହିତ ବି ତୁଳନା କରାଯାଇ ନ ପାରେ; ଯାହାର ବର୍ଣ୍ଣନା କୌଣସି ଭାଷାରେ କରିବା ଆଦୌ ସମ୍ଭବ ନ ଥିଲା । ସେହି ମହାନ୍, ଅନନ୍ତ, ବ୍ୟାପକ ପରମୋତ୍କୃଷ୍ଟ ଆଲୋକ ଦେଖି ଅର୍ଜୁନଙ୍କ ଆଖି ଝଲସିଗଲା । ସେହି ଆଲୋକ ଅର୍ଜୁନଙ୍କ ପକ୍ଷେ ଥିଲା ଅସହ୍ୟ । ସେ ସହସା ଦୁଇ ହାତରେ ଆଖି ବନ୍ଦ କରିପକାଇଲେ ।

ରଥ କିନ୍ତୁ ଅନବରତ ଅତି କ୍ଷିପ୍ର ବେଗରେ ଆଗକୁ ଚାଲିଥିଲା । ଯାଇ ଯାଇ ରଥ ପ୍ରବଳ ପ୍ରଭଞ୍ଜନରେ କମ୍ପାୟମାନ ବିଶାଳ ଉତ୍ତାଳ ତରଙ୍ଗ ବିଶିଷ୍ଟ ଦିବ୍ୟ ଅମୃତର ସମୁଦ୍ରରେ ପ୍ରବେଶ କଲା । ଏହି ସମୁଦ୍ରରେ ଅତି ଅଲୌକିକ ମଣିମୟ ସ୍ତମ୍ଭରାଶି ସୁଶୋଭିତ ପରମ କାନ୍ତିମୟ ଭବ୍ୟ ଭବନ ଦୃଶ୍ୟ ହେଲା । ସେହି ସୁବିଶାଳ ଭବନକୁ ପୂର୍ଣ୍ଣରୂପେ ଘେରି ରହିଥିବା ଏକ ଅତି ଭୟାନକ ପରମ ଆଶ୍ଚର୍ଯ୍ୟଜନକ ଅଲୌକିକ ସର୍ପ ମଧ୍ୟ ଦୃଶ୍ୟ ହେଲା । ଏହି ସର୍ପର ସହସ୍ର ନେତ୍ର ତା'ର ଫଣାଗୁଡ଼ିକରେ ଏପରି ଦମକୁ ଥିଲା, ଜଣାଯାଉଥିଲା ସତେ ଯେପରି ସବୁଥିରେ ପୃଥକ୍ ପୃଥକ୍ ସୂର୍ଯ୍ୟ ଚନ୍ଦ୍ର ବିଖଚିତ ହୋଇଛନ୍ତି । ସେହି ସର୍ପ କୈଳାସ ପର୍ବତ ଭଳି ଶ୍ୱେତ ବର୍ଣ୍ଣର ଥିଲା । କୃଷ୍ଣ ବର୍ଣ୍ଣ ବିଶିଷ୍ଟ ଦୁଇ ସହସ୍ର ଜିହ୍ୱା କିଛି ମନ୍ତ୍ର ଜପ କରୁଥିଲା । ସେ ଥିଲେ ସର୍ପରାଜ ଶେଷଦେବ ।

ପଣ୍ଡୁନନ୍ଦନ ଅର୍ଜୁନ ଅତି ବିସ୍ମୟର ସହିତ କୈଳାସ ପର୍ବତ ସମ ଅତ୍ୟୁଚ୍ଚ ସେହି ଶେଷଦେବଙ୍କୁ ଦର୍ଶନକରି ସ୍ତମ୍ଭିତ ଓ ବିସ୍ମିତ ହୋଇଯାଇଥିଲେ । ସେ ଦେଖିବାକୁ ପାଇଲେ, ସେହି ଶେଷଦେବଙ୍କ ଶରୀରକୁ ସୁନ୍ଦର ସୁଖଦ ଶଯ୍ୟାକରି ସର୍ବବ୍ୟାପକ, ପରମ ପ୍ରଭାବଶାଳୀ ପୁରୁଷୋତ୍ତମ ପ୍ରଭୁ ପ୍ରେମପୂର୍ବକ କଡ଼େଇ ଶୋଇଛନ୍ତି । ତାଙ୍କର ସୁନ୍ଦର ଶରୀର ଜଳପୂର୍ଣ୍ଣ ମେଘ ଭଳି ଶ୍ୟାମବର୍ଣ୍ଣରେ ଶୋଭାୟମାନ ହେଉଥିଲା । ଶରୀରରେ ପରମ ସୁନ୍ଦର ଦେଖାଯାଉଥିବା ପୀତାମ୍ବର ପଡ଼ିଥିଲା । ନିଜର ପରମ ସ୍ନିଗ୍ଧ କମନୀୟ କାନ୍ତିରେ ସେହି ଭବନ ଝଲକାଇବାରେ ଲାଗିଥିଲେ । ତାଙ୍କର ମନୋହର ମୁଖ ଶାରଦୀୟ ସରୋରୁହ ସଦୃଶ, ବିକଶିତ ଆଉ ପ୍ରଫୁଲ୍ଲିତ, ଅତି ସୁନ୍ଦର ହାସ୍ୟର ଛଟାରେ ସୁପ୍ରସନ୍ନ ବଦନ ଅତି ମନୋହର ଓ ଆକର୍ଷଣୀୟ ଦେଖାଯାଉଥିଲା । ଆନନ୍ଦାତିରେକ ହେତୁ ତାଙ୍କର ବିଶାଳ ବିଶାଳ ସୁନ୍ଦର ନେତ୍ର ଅତି ସ୍ନିଗ୍ଧ ଓ ଆକର୍ଷଣୀୟ ଦେଖାଯାଉଥିଲା । ତାଙ୍କ ମସ୍ତକରେ ମନୋହର ମଣିମୟ ମୁକୁଟ, ଅତି ମୂଲ୍ୟବାନ୍ ମଣିରାଶି ହେତୁ ମନକୁ ବିମୋହିତ କରି ଦେଉଥିଲା । କାନରେ କମନୀୟ କନକ କୁଣ୍ଡଳର କାନ୍ତି ତାଙ୍କର କୁଟିଳ କେଶରାଶି ମଧ୍ୟରେ ଚମକୁ ଥିଲା । ଭଗବାନଙ୍କର ବିଶାଳ ବିଶାଳ ଆଠଟି ଭୁଜ ଥିଲା, ଯେଉଁଥିରେ ସେ ଶଙ୍ଖ, ଚକ୍ର, ଗଦା, ପଦ୍ମ, ଧନୁ,

ବାଣ, ଅସି ଆଉ ଚର୍ମ ଆଦି ଅସ୍ତ୍ର ଆୟୁଧ ଧାରଣ କରିଥିଲେ । ତାଙ୍କର ବକ୍ଷସ୍ଥଳରେ କୌସ୍ତୁଭ ମଣି ଶୋଭାୟମାନ ହେଉଥିଲା । ତା ଉପରେ ଶ୍ରୀବତ୍ସର ଚିହ୍ନ ଥିଲା । ତାହା କିନ୍ତୁ ବିଶାଳ ବନମାଳାରେ ଆବୃତ୍ତ ଥିଲା । ତାଙ୍କର ଏପାଖ ସେପାଖରେ ସନକାଦି, ମୁନି ଋଷି, ନନ୍ଦ ସୁନନ୍ଦ ଆଦି ପାର୍ଷଦ ତଥା ଶଙ୍ଖ ଚକ୍ରାଦି ଆୟୁଧ ମୂର୍ତ୍ତିମାନ୍ ହୋଇ ସମୁପସ୍ଥିତ ଥିଲେ । ଏ ସମସ୍ତ ଛଡ଼ା ପୁଷ୍ଟି, ଶ୍ରୀ, କୀର୍ତ୍ତି ଆଉ ଅଜା ଏହି ଚାରି ଶକ୍ତି ତଥା ସିଦ୍ଧିଗଣ ଅନବରତ ତାଙ୍କର ସେବାରେ ସଂଲଗ୍ନ ଥିଲେ ।

ଭଗବାନ୍ ବାସୁଦେବ ନିଜର ଆତ୍ମରୂପ ସେହି ଭୂମା ପୁରୁଷଙ୍କୁ ବନ୍ଦନା କଲେ, ଭଗବାନଙ୍କୁ ଦେଖି ଭୟରେ କାତର ହୋଇଯାଇଥିବା ଅର୍ଜୁନ ବି ତାଙ୍କର ଅଭିବାଦନ କଲେ । ସେହି ବିଶ୍ୱ-ବନ୍ଦିତ ବିଶ୍ୱମ୍ଭରଙ୍କ ନିକଟରେ ଏହି ଦୁହେଁ ଅଞ୍ଜଳିବଦ୍ଧ ଭାବରେ ଅତି ଶିଷ୍ଟାଚାର ସହିତ ଠିଆହୋଇ ରହିଲେ । ଦୁହେଁ ହାତଯୋଡ଼ି ଠିଆ ହୋଇଥିବା ଦେଖି ସମସ୍ତ ଲୋକପାଳଙ୍କ ଦ୍ୱାରା ପୂଜିତ, ସର୍ବ ବ୍ୟାପକ, ସମସ୍ତଙ୍କର ସ୍ୱାମୀ ସେହି ପୁରୁଷୋତ୍ତମ ପ୍ରଭୁ ମନ୍ଦ ମନ୍ଦ ହାସ୍ୟ ପ୍ରକାଶକରି ମେଘ ଗମ୍ଭୀର ସ୍ୱରରେ କହିଲେ,'' ତୁମେ ଦୁହେଁ ମୋତେ ଦର୍ଶନ କରିବାକୁ ଆସିଥିବା ଏକ ଅତି ମଙ୍ଗଳ କଥା । ତୁମେ ଦୁହେଁ ବଦରୀବନରେ ତପସ୍ୟା କରୁଥିବା ନର-ନାରାୟଣ ଋଷି । ତୁମେ ଦୁହେଁ ମୋ କଳାରୁ ଧର୍ମ ରକ୍ଷା କରିବାପାଇଁ ଅବନୀରେ ଅବତରିତ ହୋଇଛ । ତୁମେ ନର ରୂପରେ ଉତ୍ପନ୍ନ ହୋଇଥିବା ଅନେକ ଅସୁରଙ୍କୁ ସଂହାର କରିଛ । ଏବେ ମୁଁ ଚାହେଁ, ଅବଶିଷ୍ଟ ଯେଉଁ ଅସୁରମାନେ ରହିଯାଇଛନ୍ତି, ସେମାନଙ୍କୁ ଅତିଶୀଘ୍ର ସଂହାର କରି ତୁମେ ଦୁହେଁ ମୋ ପାଖକୁ ଫେରି ଆସ । ତୁମ ଦୁହିଁଙ୍କ ପାଇଁ ଯଦିଓ କିଛି କର୍ତ୍ତବ୍ୟ ନାହିଁ, ତଥାପି ଲୋକରକ୍ଷଣ ନିମିତ୍ତ, ତଥା ଜଗତର ସ୍ଥିତି ଅପରିବର୍ତ୍ତିତ ରଖିବା ପାଇଁ ଧର୍ମର ଆଚରଣ କର । ତୁମ ଦୁହିଁଙ୍କୁ ଦେଖିବା ପାଇଁ ମୋର ଇଚ୍ଛା ହେଲା, ଆଉ ସେଇଥି ପାଇଁ ତୁମ ବ୍ରହ୍ମାଣ୍ଡରୁ ମୁଁ ବିପ୍ରବାଳକଙ୍କୁ ହରଣ କରି ନେଇ ଆସିଛି । ତୁମ ଦୁହିଁଙ୍କୁ ଏବେ ଦେଖିଲି, ତୁମେ ଏହି ବ୍ରାହ୍ମଣ କୁମାରଙ୍କୁ ସାଙ୍ଗରେ ନେଇ ପାର, ପୃଥିବୀରେ ତୁମେ ଦୁହେଁ ଆଉ ଅଧିକ ଦିନ ରହିବା ଆବଶ୍ୟକ ନାହିଁ । ଅବିଳମ୍ବେ ତୁମେ ଦୁହେଁ ଏଠାକୁ ଫେରି ଆସ ।'' ଏତିକି କହି ସେହି ଭୂମା ପୁରୁଷ ନୀରବ ହୋଇଗଲେ ।

ଆନନ୍ଦକନ୍ଦ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ମୁଣ୍ଡ ନୂଆଇଁ ଆଜ୍ଞା ଶିରୋଧାର୍ଯ୍ୟ କରି କହିଲେ, ''ଅତି ଉତ୍ତମ । ଆମେ ଏହାହିଁ କରିବୁ । ଏଥର ଆମେ ଯାଉଛୁ ।''

ଭୂମା ଭଗବାନ୍ କହିଲେ, ''ହଁ । ଏଥର ତୁମେ ଯାଇ ପାର ।''

ଏପରି କଥା ଶୁଣି ଦୁହେଁ ଅତି ଶ୍ରଦ୍ଧାର ସହିତ ସେହି ପୂର୍ଣ୍ଣକାମ ପ୍ରଭୁଙ୍କ ପାଦପଦ୍ମରେ ପ୍ରଣାମ କଲେ, ଆଉ ବ୍ରାହ୍ମଣଙ୍କର ଦଶ ପୁତ୍ରଙ୍କୁ ସଙ୍ଗରେ ଧରି ଅତି ପ୍ରସନ୍ନତାର ସହିତ ଯାଇଥିବା

ମାର୍ଗରେ ପ୍ରତ୍ୟାବର୍ତ୍ତନ କଲେ । ଠିକ୍ ସେହିଭଳି ସୁଦର୍ଶନ ଚକ୍ରର ଆଲୋକ ସାହାଯ୍ୟରେ ଘୋର ଅନ୍ଧକାରମୟ ପ୍ରଦେଶ ଅତିକ୍ରମ କରି, ସମୁଦ୍ର, ଦ୍ୱୀପ ଆଉ ମର୍ଯ୍ୟାଦା ପର୍ବତ ଲଘଂନ କରି ଦ୍ୱାରକାକୁ ଫେରି ଆସି ଦୁହେଁ ବ୍ରାହ୍ମଣ ଘରକୁ ଗଲେ ଓ ଭଗବାନ୍ କହିଲେ- ''ହେ ବିପ୍ରବର ! ଅର୍ଜ୍ଜୁନ ଆପଣଙ୍କର କେବଳ ଗୋଟିଏ ପୁଅକୁ ରକ୍ଷା କରିବା ପାଇଁ ପ୍ରତିଜ୍ଞା କରିଥିଲେ । କିନ୍ତୁ ଏବେ ସେ ଆପଣଙ୍କର ସମସ୍ତ ମୃତ-ପୁତ୍ରଙ୍କୁ ଫେରାଇ ଆଣିଛନ୍ତି । ଆପଣ ଆପଣଙ୍କ ଦଶ ପୁତ୍ରଙ୍କୁ ଗ୍ରହଣ କରନ୍ତୁ ।'' ବ୍ରାହ୍ମଣ ଦେଖିଲେ ତାଙ୍କର ଦଶଟିଯାକ ପୁଅ ବର୍ଷେ ଲେଖାଏଁ ସାନ କ୍ରମରେ ସେଠାରେ ଉପସ୍ଥିତ ହୋଇଛନ୍ତି । ନିଜର ଦଶଜଣଯାକ ପୁଅଙ୍କୁ ପାଇ ବ୍ରାହ୍ମଣ-ବ୍ରାହ୍ମଣୀ ଅତି ସନ୍ତୁଷ୍ଟ ହୋଇଗଲେ । ସେମାନେ ଶ୍ରୀକୃଷ୍ଣ ଆଉ ଅର୍ଜ୍ଜୁନଙ୍କୁ ଅନେକ ଆଶୀର୍ବାଦ କଲେ । ଆଉ ନିଜର ଅଶିଷ୍ଟ ବ୍ୟବହାର ପାଇଁ କ୍ଷମା ଯାଚନା ମଧ୍ୟ କଲେ ।

ମହର୍ଷି ସୂତ କହୁଛନ୍ତି,''ହେ ମୁନିଗଣ ! ଏହି ଘଟଣା ପରେ ଏବେ ଅର୍ଜ୍ଜୁନଙ୍କର ଆଖି ଖୋଲିଗଲା । ଆଜି ସୁଦ୍ଧା ନିଜକୁ ବିଶ୍ୱ ବିଜୟୀ ବୋଲି ମନେକରି ନିଜର ବଳ, ପୁରୁଷାର୍ଥ ତଥା ଅସ୍ତ୍ର ଶସ୍ତ୍ରର ଚାତୁର୍ଯ୍ୟ ଉପରେ ଯେଉଁ ଅଭିମାନ କରୁଥିଲେ, ସେ ସମସ୍ତ ଅଭିମାନ ଏବେ ଚୂରମାର ହୋଇଗଲା । ଏଥର ସେ ଜାଣିଗଲେ ଯେ ପ୍ରାଣୀଙ୍କଠାରେ ଯେତେ ପୁରୁଷାର୍ଥ **ଅଛି, ପରାକ୍ରମ ଅଛି, ସେ ସମସ୍ତ ହେଉଛି ଏହି କ୍ରୀଡ଼ାପ୍ରିୟ ଭଗବାନ ଶ୍ରୀକୃଷ୍ଣଙ୍କର କୃପାର ହିଁ ପରିଣାମ ।''**

ମହର୍ଷି ଶୌନକ ପଚାରିଲେ,'' ହେ ମହର୍ଷି ସୂତ ! ଏହି ଘଟଣା ଆମକୁ ତ ବଡ଼ ଆଶ୍ଚର୍ଯ୍ୟାନ୍ୱିତ କରୁଛି । ଆମେ ତ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ହିଁ ପରିପୂର୍ଣ୍ଣାବତାର ସ୍ୱୟଂ ସାକ୍ଷାତ୍ ଶ୍ରୀହରି ବୋଲି ଜାଣିଥିଲୁ । ଏହି ଭୂମା ପୁରୁଷଙ୍କ ସମ୍ମୁଖରେ ଭଗବାନ୍ ତାଙ୍କର ଏକ କଳାବତାର ବୋଲି ପ୍ରମାଣିତ ହେଉଛନ୍ତି । ଏହି ଭୂମା ପୁରୁଷ ପୁଣି କିଏ ?''

ଏହା ଶୁଣି ମହର୍ଷି ସୂତ ହସିବାରେ ଲାଗିଲେ ଆଉ କହିଲେ, '' ମହାରାଜ ! ଆପଣ **ଏହି ଛଳିଆ କୃଷ୍ଣଙ୍କ ମାୟାରେ ପଶନ୍ତୁ ନାହିଁ । କରିକରାଉଥିବା ହେଉଛନ୍ତି ଏହି ଏକ ଶ୍ୟାମସୁନ୍ଦର । ଇଏ ବଡ଼ ମାୟାବୀ । ଏ ହିଁ ଅଂଶ, ଏ ହିଁ କଳା, ଯେ ହିଁ ଭୂମା, ଆଉ ଇଏ ହିଁ ବିଶ୍ୱମ୍ଭର ।** ଯେତେବେଳେ ଯାହା ଚାହାଁନ୍ତି, ସେତେବେଳେ ସେହି ରୂପ ଧାରଣ କରନ୍ତି । ଗୋବର୍ଦ୍ଧନ ପୂଜା ସମୟରେ ଗୋଟିଏ ରୂପରେ ତ ଗୋବର୍ଦ୍ଧନ ପର୍ବତ ଉପରେ ଗୋବର୍ଦ୍ଧନରୂପରେ ବସିଗଲେ, ଦ୍ୱିତୀୟ ରୂପରେ ସ୍ୱୟଂ ହାତ ଯୋଡ଼ି ତାଙ୍କୁ ସ୍ତୁତି କରିବାରେ ଲାଗିଲେ । ପର ବ୍ରହ୍ମ ଭୂମା, ବିଷ୍ଣୁ ତଥା ନର-ନାରାୟଣ ଏ ସମସ୍ତ ଏହାଙ୍କର ଶ୍ରୀଅଙ୍ଗରେ ହିଁ ସନ୍ନିହିତ । ଯେତେବେଳେ ଯେପରି ଚାହାନ୍ତି ସେତେବେଳେ ସେହି ରୂପ ଧାରଣ କରନ୍ତି । ସେହି ଭୂମା ପୁରୁଷ ଯାଙ୍କଠାରୁ ପୃଥକ୍ ନୁହନ୍ତି । ଇଏ ନିଜେ ହିଁ ସେହି ରୂପ ତିଆରିକରି ନିଜର ଲୀଳା ସମ୍ବରଣର ସୂଚନା ଅର୍ଜ୍ଜୁନଙ୍କୁ ଦେଉଥିଲେ ।

"ଏହି ଭଳି ଭଗବାନ୍ ବ୍ରଜ, ଦ୍ୱାରକା ଓ ମଥୁରାରେ ରହି ଅନେକ କ୍ରୀଡ଼ା କଲେ, ପ୍ରକାର-ପ୍ରକାରର ପୌରୁଷ ଦେଖାଇଲେ, ଅନେକ ବିବାହ କଲେ, ଅନେକ ସନ୍ତାନ ଉତ୍ପନ୍ନ କଲେ, ଆତ୍ମ କ୍ରୀଡ଼ା ତଥା ଆତ୍ମରତି ହେଉଥିଲେ ବି ସମ୍ପୂର୍ଣ୍ଣ ଗ୍ରାମ୍ୟ ବିଷୟକୁ ଭୋଗ କଲେ, ଧର୍ମର ଆଚରଣ କଲେ, ଦାନ କଲେ, ଧର୍ମ କରିବାକୁ ଯାଇ ଅନେକ ବାଂପୀ, କୂପ, ପୁଷ୍କରିଣୀ କରାଇଲେ ତଥା ଅନେକ ଯଜ୍ଞାନୁଷ୍ଠାନ ମଧ୍ୟ କଲେ । ସେ ଇନ୍ଦ୍ରଙ୍କ ଭଳି କୃପା ବୃଷ୍ଟି କଲେ , କଳ୍ପବୃକ୍ଷଙ୍କ ଭଳି ଚତୁର୍ବର୍ଣ୍ଣର ସକଳ ଇଚ୍ଛା ପୂରଣ କଲେ, ସମସ୍ତଙ୍କୁ ସୁଖ ଓ ଆନନ୍ଦ ଦେଲେ । ସେ ସମସ୍ତଙ୍କୁ ସମ୍ମାନ ପ୍ରଦାନ କରିଛନ୍ତି, ଯିଏ ଧର୍ମ ବିରୋଧୀ ଅଧାର୍ମିକ ରାଜା ଥିଲେ ସେମାନଙ୍କ ଭିତରୁ ଅନେକଙ୍କୁ ନିଜେ ମାରିଛନ୍ତି, ଅନେକଙ୍କୁ ବଳଦେବ ଓ ଅର୍ଜୁନଙ୍କ ହାତରେ ମରାଇଲେ । ଦୁର୍ଯ୍ୟୋଧନାଦି ଅଧାର୍ମିକ ରାଜାଙ୍କୁ ମରାଇ ଧର୍ମରାଜ ଯୁଧିଷ୍ଠିରଙ୍କୁ ଚକ୍ରବର୍ତ୍ତୀ ସମ୍ରାଟ କରି ପୃଥିବୀରେ ପୁନର୍ବାର ଧର୍ମ ସଂସ୍ଥାପନ କଲେ । ଯେତେବେଳେ ତାଙ୍କର ସମସ୍ତ କାମ ସରିଗଲା, ସେତେବେଳେ ସ୍ୱ-ଧାମକୁ ପ୍ରସ୍ଥାନ କରିବାପାଇଁ ଉଦ୍ୟତ ହେଲେ । ସ୍ୱ-ଧାମକୁ ପ୍ରସ୍ଥାନ କରିବାର ସୂଚନା ନିଜର ପ୍ରାଣପ୍ରିୟାଙ୍କୁ ନ ଜଣାଇବା ପୂର୍ବରୁହିଁ ହୋଇଯାଇଥିଲା । ତା'ର ପ୍ରଭାବରେ ଜଡ଼ ତଥା ଉନ୍ମତ୍ତଙ୍କ ଭଳି ସେମାନେ ଯେପରି ପ୍ରଳାପ କଲେ ତାହାର କିଛି ସୂଚନା ମୁଁ ଏହାପରେ କହିବି । ଆପଣମାନେ ସମାହିତ ଚିତ୍ତରେ ସେହି ପ୍ରଳାପର ବର୍ଣ୍ଣନା ଶୁଣନ୍ତୁ ।

## ଛପ୍ପୟ

*କରିକେଂ ଦଣ୍ଡ ପ୍ରନାମ ଦ୍ୱାରକା ଦୋଉ ଆୟେ ।*
*ଦ୍ୱିଜକେ ଦଶ ହୂ ତନୟ ଦୟେ ଦୋଉ ହରଷାୟେ ।।*
*ସମୁଝେ ଅରଜୁନ ଭେଦ କରନହାରେ ସବ ହରି ହୈ ।*
*କୋଇ କରି ନହିଁ ସକୈ କଛୁ କାରେ ସବ କରି ହୈ ।।*
*ୟୋଂ ଲୀଳା ସଂବରଣ କୋ, ଯଦୁନନ୍ଦନ ନିଶ୍ଚୟ କର୍ୟୋ ।*
*ଭାବମୟୀ ହରି ଭାମିନିନି, କୋ ଆପୁହି ହୀୟୋ ଭର୍ୟୋ ।।*



# ଶ୍ରୀକୃଷ୍ଣ ପତ୍ନୀମାନଙ୍କ ପ୍ରଳାପ

କୃଷ୍ଣସ୍ୟୈବଂ ବିହରତୋ ଗତ୍ୟାଲାପେକ୍ଷିତସ୍ମିତୈଃ ।
ନର୍ମକ୍ଷ୍ୱେଲିପରିଷ୍ୱଙ୍ଗୈଃ ସ୍ତ୍ରୀଣାଂ କିଲ ହୃତାଧିୟଃ ॥
ଉଚୁର୍ମୁକୁନ୍ଦୈକଧିୟୋଽଗିର ଉନ୍ମତ୍ତବଜ୍ଜଡମ୍ ।
ଚିନ୍ତୟନ୍ତ୍ୟୋଽରବିନ୍ଦାକ୍ଷଂ ତାନି ମେ ଗଦତଃ ଶୃଣୁ ॥☆

(ଶ୍ରୀ ଭା: ୧୦ମ ସ୍କନ୍ଧ ୧୩ ଅ. ୧୪ ଶ୍ଳୋକ)

**ଛପ୍ପୟ**

*ଭାଗ୍ୟବତୀ ହରିପ୍ରିୟା ରିଝାବେଂ ହରି କୁଁ ନିତ ପ୍ରତି ।*
*ରହେଂ ସୁଖୀ ସବ ସଦା ସୁମିରି ଶ୍ରୀହରି ଚିତବତ ଗତି ॥*
*କମଲନୟନ ସୁଖ ଦୟୋ ସରସତା ମହ ସବ ପାଗୀଂ ।*
*ଅବ ସବ କୁଁ ଅତି ବିରହମୟୀ ଲୀଲା ତେ ଲାଗୀଂ ॥*
*କୁରରୀ, ଚକବୀ, ନୀରନିଧି, ଚନ୍ଦ୍ର, ମଲୟ ମାରୁତ, ସରିତ ।*
*କୋକିଲ, ଭୂଧର, ସଜଲଘନ, କହହିଁ ସବନି ଲଖି କଛୁ ଦୁଖିତ ॥*

ଯାହା ହେବାକୁ ଥାଏ ତାହାର ସୂଚନା ଆଗରୁ ମିଳିଯାଏ । କୌଣସି ମହାପୁରୁଷ ଆସିବାକୁ ଥିଲେ ତା ପୂର୍ବରୁ ଶ୍ରୀ ସେ ସ୍ଥାନକୁ ଆସିଯାଇଥାନ୍ତି । କାରଣ ସେଠାରେ ସେ ସଂକଳ୍ପ ପୂର୍ବରୁ ପହଞ୍ଚି ଯାଇଥାନ୍ତି । ଠିକ୍ ସେହିଭଳି ଉତ୍ସବ ପରେ ସେଠାକାର ଶୋଭା ଆଉ ରହେନାହିଁ, ଶ୍ରୀ ଚାଲିଯାଥାନ୍ତି । ଆମେ ମୁଖରେ କହିବା ପୂର୍ବରୁ ଯେଉଁ ସଂକଳ୍ପ ମନରେ କରୁ ସେ ସମସ୍ତ ମଧ୍ୟ ବାୟୁ ମଣ୍ଡଳରେ ଖେଳିଯାଏ, ଆଉ ସୂକ୍ଷ୍ମ ଚିତ୍ତର ଲୋକମାନଙ୍କୁ ଏହାର ଆଭାସ ମିଳିଯାଏ । ଯୋଗୀମାନେ ତ ମନରେ ବସି ବସି କଥାବାର୍ତ୍ତା କରୁଥାନ୍ତି, କିନ୍ତୁ ସେମାନେ ବି ସେମାନଙ୍କର ଶ୍ରେଷ୍ଠଙ୍କ ମନୋଗତ ଭାବକୁ ବୁଝିନେଇଥାନ୍ତି । ଅନ୍ୟଙ୍କ ପାଖରେ ଭାବ ହୁଏତ ଲୁଚିଯାଇ ପାରେ, ମାତ୍ର ପ୍ରେମୀ ସମ୍ମୁଖରେ ତାହା ଛପି ରହି ପାରେ ନାହିଁ ।

---

☆ କନ୍ୟାଏ ନିଜପୁରେ ଯାଇ । କୃଷ୍ଣ ବଦନେ ମନ ଥୋଇ ॥
ନିମିଷେ ନ ଦେଖି ମୁରାରି । ଜୀବନ ନପାରନ୍ତି ଧରି ॥
ଚିନ୍ତନ୍ତି ସ୍ୱଗୃହେ ତରୁଣୀ । ଜଡ଼ ଉନ୍ମତ୍ତ ପ୍ରାୟ ବାଣୀ ॥
ଯେମନ୍ତ କଲେ ବିପରୀତ । କହିବା ଶୁଣ ପରୀକ୍ଷିତ ॥
(ଭାଗବତ : ଜଗନ୍ନାଥ ଦାସ ; ୧୦ ମ ସ୍କ. ୯୬ ଅ.)

ମହର୍ଷି ସୂତ କହୁଛନ୍ତି, '' ହେ ମୁନିଗଣ ! ଭଗବାନଙ୍କର ଅନେକ ଅବତାର ତ ହୋଇଛି, କିନ୍ତୁ ଏହି କୃଷ୍ଣାବତାର ଯେପରି ଆକର୍ଷକ ସେପରି ଅନ୍ୟ କୌଣସି ଅବତାର ହୋଇନାହିଁ । କେତେଯେ ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଏହି ଅବତାରରେ ପ୍ରକଟ ହୋଇଯାଇଛି, ତାହାର କଳ୍ପନା ସ୍ୱୟଂ ଶ୍ରୀକୃଷ୍ଣଙ୍କର ବି ନଥିଲା । ଏହି ରୂପକୁ ଯିଏ ବି ଦେଖିଛି, ସେ କୃତକୃତ୍ୟ ହୋଇଯାଇଛି । ଏହାପରେ ତା ଚିତ୍ତରେ ଅନ୍ୟ ସୌନ୍ଦର୍ଯ୍ୟ ବସି ପାରିନାହିଁ । ଯେଉଁ କୃଷ୍ଣଙ୍କୁ ଦର୍ଶନ କରିବା ପାଇଁ ଭୂମା ପୁରୁଷଙ୍କୁ ବି ଚୋରି କରିବାକୁ ପଡ଼ିଥିଲା, ତାଙ୍କ ସମ୍ବନ୍ଧରେ ଆଉ ଅଧିକ କ'ଣ କହିବା- ଭୂମା ପୁରୁଷଙ୍କର ବ୍ରାହ୍ମଣର ସନ୍ତାନମାନଙ୍କର ବି ଆବଶ୍ୟକତା ଥିଲା । ସେ ତ କେବଳ କୃଷ୍ଣଙ୍କୁ ଦର୍ଶନ କରିବାକୁ ଚାହିଁଥିଲେ । ଏତିକି ମାତ୍ର ଇଚ୍ଛା କରି ସେ ବ୍ରାହ୍ମଣଙ୍କ ପୁଅଙ୍କୁ ଚୋରାଇ ନେଇଥିଲେ । ସେ ଜାଣିଥିଲେ, ଭଗବାନ ନିଶ୍ଚୟ ସେଇ ପିଲାଙ୍କୁ ନେବାକୁ ଆସିବେ ଓ ଆମର ଦର୍ଶନ ବି ହୋଇଯିବ । କ୍ଷଣକ ମାତ୍ର ଦର୍ଶନରେ ଭୂମା ପୁରୁଷ ପ୍ରସନ୍ନ ହୋଇଗଲେ । କୃଷ୍ଣଙ୍କ ସ୍ତ୍ରୀମାନେ, ଯେଉଁମାନେ ଦିନରାତି ଭଗବାନଙ୍କ ସହିତ ରହୁଥିଲେ, ଅଳ୍ପ ବହୁତ ସେବା କରୁଥିଲେ, ସେମାନଙ୍କ କଥା ଆଉ କହିବା କ'ଣ ! ଭଗବାନ ତ ନିଜ ହୃଦୟର ପ୍ରେମର ସ୍ରୋତ ସେପରି ବଡ଼ ଭାଗ୍ୟବାନଙ୍କ ନିମନ୍ତେ ଉନ୍ମୁକ୍ତ କରିଦେଲେ । କେତେ ସୁଖରେ, କେତେ ଉଲ୍ଲାସରେ ଦ୍ୱାରାବତୀରେ ରହି ସେହି ଭାଗ୍ୟବତୀ ଭାମିନୀଗଣଙ୍କ ସହିତ ଭଗବାନ ଲଳିତ ଲୀଳା କରି କରାଇଥିଲେ । ସେହି କୁଶସ୍ଥଳୀ ଦ୍ୱାରାବତୀ ବାସ୍ତବିକ ତ୍ରିଭୁବନରେ ଯଶସ୍ୱୀ ହୋଇଯାଇଥିଲା, ଯେଉଁଠାରେ ରହି ଶ୍ରୀନିବାସ ସମସ୍ତଙ୍କୁ ସୁଖୀ ରଖିଥିଲେ ।

ଦ୍ୱାରାବତୀର ସୁନ୍ଦର ସୁସଜ୍ଜିତ ରାଜପଥରେ ମଦୋନ୍ମତ୍ତ ହସ୍ତୀଗଣଙ୍କ ମଦ ବାଷ୍ପ ବିଚ୍ଛୁରିତ ହେଉଥିଲା, ଯାହାର ସୁଗନ୍ଧରେ ହସ୍ତିନୀଙ୍କର ଧୈର୍ଯ୍ୟଚ୍ୟୁତ ହୋଇଯାଉଥିଲା । ସେହି ରାଜପଥରେ ବସ୍ତ୍ରାଭୂଷଣ ସୁସଜ୍ଜିତ ସେନା ପଙ୍‌କ୍ତି ପଙ୍‌କ୍ତି ହୋଇ ଇତସ୍ତତଃ ବିଚରଣ କରୁଥିଲେ । ରାଜପଥ ଥିଲା ସୁବିଶାଳ, ସୁବିସ୍ତୃତ, ସଦା ଲୋକାରଣ୍ୟ ଓ ଅସଂଖ୍ୟ ସୁସଜ୍ଜିତ ଅଶ୍ୱାରୋହୀ ସୈନିକଙ୍କ ଦ୍ୱାରା ସୁଶୋଭିତ । ସେହି ରାଜପଥରେ ସବୁବେଳେ ଦେଖିବାକୁ ମିଳୁଥିଲା ସୁବର୍ଣ୍ଣ ବିଜଡ଼ିତ ବିଶାଳ ବିଶାଳ ରଥ । ପଥର ଦୁଇପାର୍ଶ୍ୱରେ ଲାଗିଥିବା ଫଳପୁଷ୍ପ ପରିପୂର୍ଣ୍ଣ ବୃକ୍ଷରାଶି ଏହା ଶୋଭା ଦ୍ୱିଗୁଣିତ ବଢ଼ାଇ ଦେଉଥିଲା । ଦ୍ୱାରାବତୀପୁରୀରେ ଯେତେ ରାଜବଂଶୀୟ ଭବନ ଥିଲା, ପ୍ରତ୍ୟେକରେ ଥିଲା କ୍ଷୁଦ୍ର କ୍ଷୁଦ୍ର ଉପବନ । ନଗର ମଧ୍ୟସ୍ଥଳୀ - ମାନଙ୍କରେ ଉଦ୍ୟାନ, ଉପବନ ଓ ଫୁଲବଗିଚା ଶୋଭାବର୍ଦ୍ଧନ କରୁଥିଲା । ଆଉ ସେ ସମସ୍ତରେ ବାରମାସ ଯାକ ପୁଷ୍ପ ଭରପୂର ହୋଇ ରହୁଥିଲା । ସେହି ପ୍ରସ୍ଫୁଟିତ ପୁଷ୍ପର ମଧୁ ଲୋଭରେ ଭ୍ରମର ଅନବରତ ଗୁଞ୍ଜରଣ କରୁଥିଲେ । ମଧୁମକ୍ଷିକା ତହିଁ ମଧୁପାନକରି ଇତସ୍ତତଃ ବିଚରଣ କରୁଥିଲେ । ରଙ୍ଗବେରଙ୍ଗର ପ୍ରଜାପତି ପୁଷ୍ପଉପରେ ବସି ଏପରି ପ୍ରତୀତ ହେଉଥିଲେ,

ମନେହେଉଥିଲା ସତେ ଯେପରି ପୁଷ୍ପଗୁଡ଼ିକ ମୁକୁଟ ପରିଧାନ କରିଛନ୍ତି । ଆମ୍ର, ଜାମ୍ବୁ, ବୀଜପୂର, ସୀତାଫଳ, ଅମୃତଭଣ୍ଡା ତଥା ଅନ୍ୟାନ୍ୟ ବୃକ୍ଷ ଉପରେ ବସିଥିବା ଶୁକ, ପିକ, ପାରା, କପୋତ ତଥା ଅନ୍ୟାନ୍ୟ ଖଗବୃନ୍ଦ ନିଜ ନିଜର କମନୀୟ କଣ୍ଠରେ କଳରବ କରି ଚତୁର୍ଦ୍ଦିଗକୁ ମୁଖରିତ କରିବାରେ ଲାଗିଥିଲେ ।

ଦ୍ୱାରକାପୁରୀର ସୌନ୍ଦର୍ଯ୍ୟ, ବିଭବ ତଥା ସମୃଦ୍ଧିର ବର୍ଣ୍ଣନା ପୁଣି କେହି କବି କରିପାରନ୍ତି କି ! ଏଠାରେ ସମସ୍ତ ଲୋକପାଳ ସେମାନଙ୍କ ବିଭୂତି ସନ୍ନିହିତ କରିଦେଇଥିଲେ । ବିଶ୍ୱକର୍ମା ଏହାକୁ ଅତି ମନଯୋଗ ସହକାରେ କରିଥିଲେ । ଯଦୁବଂଶୀ ରାଜକୁମାରଙ୍କର ଭବନଗୁଡ଼ିକ ଅତି ସୁନ୍ଦର ଦେଖାଯାଉଥିଲା । ଯାଦବମାନଙ୍କ ଭବନ ପରିସରରେ ଉପବନ ଓ ରଙ୍ଗଭୂମି ଥିଲା । ସେହି ରଙ୍ଗଭୂମିରେ ନବଯୌବନ କାନ୍ତିରେ କାନ୍ତିମତୀ ଅତି ସୁନ୍ଦର ସୁମନୋହର କୁମାରୀମାନେ କର୍ଣ୍ଣରେ କମନୀୟ କନକକୁଣ୍ଡଳ ଧାରଣ କରି ବିଦ୍ୟୁତ୍ ସମ ଦ୍ୟୁତି ଉଦ୍‌ଭାସିତ କରି କରି ଏକାନ୍ତରେ ନିଜ ନିଜ ମଧ୍ୟରେ କନ୍ଦୁକ କ୍ରୀଡ଼ା କରୁଥିଲେ, ତଥା ଅନ୍ୟଅନେକ ମନୋରଞ୍ଜକ କ୍ରୀଡ଼ା ଉପଭୋଗ କରୁଥିଲେ । ଏପରି ପରମ ପୁଣ୍ୟମୟୀ ଦ୍ୱାରାବତୀରେ ଅବସ୍ଥାନ କରି ଦ୍ୱାରକାନାଥ ଶ୍ରୀ ଶ୍ୟାମସୁନ୍ଦର ପ୍ରତ୍ୟେକଙ୍କୁ ପରମ ଆହ୍ଲାଦ ପ୍ରଦାନ କରୁଥିଲେ, ପ୍ରତ୍ୟେକଙ୍କ ମନୋବାଞ୍ଛା ପୂରଣ କରୁଥିଲେ । ସେ ଥିଲେ ଷୋହଳ ସହସ୍ର ଶହେ ଆଠ ଜଣ ପତ୍ନୀଙ୍କର ଏକମାତ୍ର ପତି । ତେବେ ବି ସେ ସେମାନଙ୍କର ପରମ ଐଶ୍ୱର୍ଯ୍ୟ ସମ୍ପନ୍ନ ପ୍ରତ୍ୟେକଙ୍କ ଘରେ ପୃଥକ୍ ପୃଥକ୍ ରୂପ ରଖି ନିରନ୍ତର ନିବାସ କରି; ରାଣୀମାନଙ୍କ ଉଆସରେ ରହୁଥିବା ସମସ୍ତ ଦାସ ଦାସୀ ତଥା ସ୍ୱାମିନୀଗଣଙ୍କୁ ସୁଖ ପ୍ରଦାନ କରି, ପ୍ରତ୍ୟେକଙ୍କ ମନକୁ ଆକର୍ଷଣ କରି ରଖିଥିଲେ । ତାଙ୍କ ପାଖରେ ତ ଭୋଗ ସାମଗ୍ରୀର କିଛି ଅଭାବ ନଥିଲା, ଓ ସେ ସମସ୍ତଙ୍କ ସହିତ ସମାନ ବ୍ୟବହାର କରୁଥିଲେ । ପ୍ରତ୍ୟେକ ଭବନ ଲମ୍ବା-ଚୌଡ଼ାରେ ଥିଲା ଏକାଭଳି । ସମସ୍ତ ଥିଲା ସୁଖ ସାମଗ୍ରୀ ସମ୍ପନ୍ନ, ସ୍ୱଚ୍ଛ, ସୁନ୍ଦର ତଥା ପ୍ରତ୍ୟେକ ଋତୁରେ ଆନନ୍ଦ ପ୍ରଦାନକାରୀ ଓ ସୁଖପ୍ରଦ । ପ୍ରତ୍ୟେକ ଭବନରେ ସ୍ୱଚ୍ଛବାୟୁ ସେବନାର୍ଥ ଉଦ୍ୟାନ ଥିଲା, ପ୍ରତ୍ୟେକରେ ସୁନ୍ଦର ସ୍ୱଚ୍ଛ ସଲିଳ ସରୋବର ଥିଲା, ଯେଉଁଥିରେ ନୀଳାମ୍ବୁଜ, ପଦ୍ମ, କହ୍ଲାର, କୁମୁଦ ତଥା ବିବିଧ ଜାତିର କମଳ ପୁଷ୍ପ ପ୍ରସ୍ଫୁଟିତ ହେଉଥିଲା । ଏହି ପୁଷ୍ପଗୁଡ଼ିକର ପରାଗର ସୁଗନ୍ଧ ସର୍ବତ୍ର ବିଚ୍ଛୁରିତ ହେଉଥିବାରୁ ସର୍ବତ୍ର ସୁବାସିତ ହେଉଥିଲା । ସେ ସମସ୍ତ କ୍ଷୁଦ୍ର ଜଳାଶୟରେ ହଂସ, ସାରସ, ବକୁଳ ଆଦି ଜଳଜନ୍ତୁ ସ୍ୱଚ୍ଛନ୍ଦରେ ବିହାର ତଥା କୂଜନ କରୁଥିଲେ । ଏ ସମସ୍ତ କ୍ଷୁଦ୍ର ଜଳାଶୟ ବ୍ୟତୀତ ବୃହଦାକାର ସରୋବର ବି ଥିଲା, ଯେଉଁଥିରେ ଶ୍ୟାମସୁନ୍ଦର ଜଳକେଳି କରୁଥିଲେ, ଭୟଶୂନ୍ୟ ଭାବରେ ତାଙ୍କର ପ୍ରେୟସୀ ତାଙ୍କୁ ଧରି ପାଣିରେ ବୁଡ଼ାଇ ଦେଉଥିଲେ, ସେ ମଧ୍ୟ ତାଙ୍କୁ ବୁଡ଼ାଇ ଦେଉଥିଲେ, ଯାହାର କେଶର ସଂସର୍ଗରେ ଶ୍ୟାମସୁନ୍ଦର ହରିତ୍‌ବର୍ଣ୍ଣ ପ୍ରତୀତ ହେଉଥିଲେ । ସେତେବେଳେ ତାଙ୍କର 'ହରି' ନାମ ସାର୍ଥକ ହେଉଥିବା ଭଳି ମନେହେଉଥିଲା ।

ନିଜର ପ୍ରିୟାଙ୍କ ଆଲିଙ୍ଗନରେ ଉଲ୍ଲସିତ ହୋଇ ସେ ଯେତେବେଳେ ଜଳକେଳି କରୁଥାନ୍ତି, ସେତେବେଳେ ବିନା ବାଧାରେ ଅନ୍ତଃପୁରକୁ ସୂତ, ମାଗଧ, ବନ୍ଦୀଜନ ଆସି ତାଙ୍କର ସ୍ତୁତି କରୁଥାନ୍ତି; ତଥା ନଟ-ନର୍ତ୍ତକୀ ଓ ଗନ୍ଧର୍ବଗଣ ଆସି ମୃଦଙ୍ଗ, ପଣବ ଓ ଆନକ ଆଦି ବାଦ୍ୟ ବଜାଇ, ବୀଣା ଆଦିରେ ସୁଲଳିତ ତାଳ ମୂର୍ଚ୍ଛନା ଛାଡ଼ି, ପ୍ରସନ୍ନତା ପୂର୍ବକ ଯଶଗାନ କରୁଥାନ୍ତି । ଏପରି କରିବା ଦ୍ୱାରା ସେମାନେ ଶ୍ୟାମସୁନ୍ଦର ତଥା ତାଙ୍କ ପ୍ରେୟସୀଙ୍କ ଠାରୁ ଚିତ୍ରବିଚିତ୍ର ବସ୍ତୁ ପାରିତୋଷିକ ରୂପେ ପାଉଥିଲେ । ବସନ୍ତର ଆଗମନରେ ଯେତେବେଳେ ଆମ୍ର ମଞ୍ଜରୀର ପୂଜା ହୁଏ ସେତେବେଳେ ପ୍ରିୟାମାନେ ତାଙ୍କ ସହିତ ହୋରି ଖେଳନ୍ତି । ସେମାନେ, ପ୍ରାୟତଃ ସମସ୍ତେ ନିଜ ନିଜର ସୁକୁମାର କର ପଲ୍ଲବରେ ରଙ୍ଗୀନ ଜଳପୂର୍ଣ୍ଣ ପିଚକାରୀ ଧରି, ଏବଂ ଚାରିପଟରୁ ଘେରି ଶ୍ୟାମସୁନ୍ଦରଙ୍କୁ ଓଦା କରିଦେଉଥିଲେ । ସେତେବେଳେ ସେ ବି ଆଉ ସମ୍ଭାଳି ରହି ନପାରି, ପୀତାମ୍ବରକୁ ଅଣ୍ଟାରେ ଗଣ୍ଠି ବାନ୍ଧି, ହାତରେ ପିଚକାରୀ ଧରି ସହସା ରଙ୍ଗମଞ୍ଚ ଉପରକୁ ନଟ ଡେଇଁପଡ଼ିବା ଭଳି ଉତରି ଆସି ସୁକୁମାରୀ ଲଳନାଙ୍କୁ ରଙ୍ଗଜଳରେ ଆର୍ଦ୍ର କରି ଦିଅନ୍ତି । ସେମାନଙ୍କ ଶୋଭା ବିଚିତ୍ର ପ୍ରକାରର ହୋଇଯାଏ, ସର୍ବାଙ୍ଗରେ ଅପୂର୍ବ ରୋମାଞ୍ଚ ହୁଏ, ଶୀତ ହେତୁ ସେମାନେ ଥର ଥର କମ୍ପିବାରେ ଲାଗନ୍ତି, ସେତେବେଳେ ସାହସ କରି ସେମାନେ ଶ୍ୟାମସୁନ୍ଦରଙ୍କ ସହିତ ଯୋଖି ହୋଇଯାଆନ୍ତି, ସୁବର୍ଣ୍ଣଲତା ସଦୃଶ ଗୁଡ଼େଇ ହୋଇଯାଆନ୍ତି, ଆଉ ବଳପୂର୍ବକ ତାଙ୍କ ହାତରୁ ପିଚକାରୀ ଛଡ଼ାଇ ନେବାରେ ଲାଗନ୍ତି । ସେତେବେଳେ ଜଣାଯାଉଥାଏ, ସତେ ଯେପରି ଶ୍ୟାମଘନରେ ବିଜୁଳି ଦମକୁ ଅଛି । ଏପରି ଛଡ଼ାଛଡ଼ି ଓ ଭିଡ଼ା ଓଟରା ସମୟରେ ଉଭୟଙ୍କର ମୁଖରେ ହାସ୍ୟରେଖା ଖେଳିଯାଉଥିଲା । ଉଭୟଙ୍କ ଅଙ୍ଗରେ ରୋମାଞ୍ଚ ସୃଷ୍ଟି ହେଉଥିଲା, ଉଭୟଙ୍କ ଶରୀରରୁ ସ୍ୱେଦବିନ୍ଦୁ ନିସୃତ ହେବାରେ ଲାଗୁଥିଲା, ସେତେବେଳକାର ଶୋଭା ଥିଲା ପ୍ରକୃତରେ ଅନୁପମ ।

କୁବେର ଯେଉଁଭଳି ଯକ୍ଷିଣୀଙ୍କ ସହିତ କ୍ରୀଡ଼ାକରେ, ଗଜରାଜ ଯେଉଁଭଳି ହସ୍ତିନୀଙ୍କ ସହିତ କ୍ରୀଡ଼ା କରେ, ମୃଗ ଯେଉଁଭଳି ମୃଗୁଣୀଙ୍କ ସହିତ କ୍ରୀଡ଼ାକରେ, ଯଦୁନନ୍ଦନ ସେହିଭଳି ନିଜ ପ୍ରିୟାମାନଙ୍କ ସହତି ନିର୍ଭୟରେ କ୍ରୀଡ଼ା କରୁଥାନ୍ତି । ପିଚକାରୀର ରଙ୍ଗ ପାଣିରେ ସେମାନେ ତାଙ୍କୁ ବାରମ୍ବାର ଓଦା କରୁଥିଲେ । ଏହିପରି କ୍ରୀଡ଼ାରେ ଉଭୟଙ୍କର ସାମାନ୍ୟ ମାତ୍ର ସଂକୋଚ ବି ନ ଥିଲା । ନିର୍ଭୟରେ ମନଖୋଲା ହୋରି ସେମାନେ ଖେଳୁଥିଲେ । କ୍ରୀଡ଼ାର ପରିସମାପ୍ତିରେ ଭଗବାନ ତାଙ୍କର ଆର୍ଦ୍ର ବସ୍ତ୍ରକୁ ଗୀତଗାଉଥିବା ଓ ବାଜା ବଜାଉଥିବା ନଟ ନର୍ତ୍ତକୀଙ୍କୁ ଦେଇ ଦେଉଥିଲେ । ରାଣୀମାନେ ସେମାନଙ୍କ ବସ୍ତ୍ରକୁ ନଟୀ ଓ ନର୍ତ୍ତକୀଙ୍କୁ ଦେଇଦେଉଥିଲେ । ଏହା ତ ଥିଲା ସେମାନଙ୍କ ଆଜୀବିକା, ଏତିକି ମାତ୍ର ଆଶାକରି ତ ସେମାନେ ମନୋରଞ୍ଜନ କରୁଥିଲେ !

ଭଗବାନ୍ ସେମାନଙ୍କୁ ଏପରି ସୁଖ ପ୍ରଦାନ କରୁଥିଲେ ଯେ ସେମାନେ ସଂସାର ବିଷୟରେ ବିସ୍ମରିତ ହୋଇଯାଉଥିଲେ । ଲୀଳାପୂର୍ବକ ସେମାନଙ୍କ ସହିତ ଏପରି ଅଣ୍ଟା ବାଙ୍କି ବାଙ୍କି ଚାଲୁଥିଲେ ଯେ ସେମାନେ ଏହାଦେଖି ଆତ୍ମହରା ହୋଇଯାଉଥିଲେ । ଏପରି ଖତେଇ ଖତେଇ, ପୁଣି ମଧୁର ବାର୍ତ୍ତାଳାପ ଅତି ଆତ୍ମୀୟତାର ସହିତ କରୁଥିଲେ ଯେ ସେମାନଙ୍କର ଚିତ୍ତ ଦ୍ରବିତ ହୋଇଯାଉଥିଲା । ଆଉ ସେହି ତରଳିକୃତ ପ୍ରେମରେ ସେମାନେ ପ୍ରବାହିତ ହୋଇଯାଉଥିଲେ । ଭଗବାନ ଏପରି ଅନୁରାଗ ଭରା ଠାଣିରେ ସେମାନଙ୍କ ଆଡ଼କୁ ବାଙ୍କ ଚାହାଣୀ ଦେଉଥିଲେ, ମନ୍ଦ ମନ୍ଦ ହାସ୍ୟଛଟାରେ ସେମାନଙ୍କୁ ଦେଖୁଥିଲେ ଯେ ସେମାନଙ୍କର ସକଳ ପ୍ରକାର ଧୈର୍ଯ୍ୟ ଚୂରମାର ହୋଇଯାଉଥିଲା । ଆଉ ଶ୍ୟାମସୁନ୍ଦରଙ୍କ ବ୍ୟତୀତ ଅନ୍ୟ କଥା ଚିନ୍ତା କରିବାକୁ ସେମାନେ ପୂରାପୂରି ଅସମର୍ଥ-ଭଳି ହୋଇ ଯାଉଥିଲେ । କେବଳ ତାଙ୍କର ଭାବରେ ଭାବିତ ହୋଇ ତନ୍ମୟ ହୋଇ ଯାଉଥିଲେ ।

ଭଗବାନ୍ ଏପରି ଓଠଚାପି ଚାପି କଥା କହୁଥିଲେ, ଏପରି କୌତୁକମୟ ହାସ୍ୟବିଳାସ କରୁଥିଲେ ଯେ ତାହା ଶୁଣି ବନିତାମାନେ ବିକଶିତ ହୋଇଯାଉଥିଲେ । ଯେତେବେଳେ ସେ ସେହି ଭାଗ୍ୟବତୀ ଦେବୀମାନଙ୍କୁ ସ୍ନେହପୂର୍ବକ ହୃଦୟରେ ଚାପି ନେଉଥିଲେ, ସେତେବେଳେ ସେମାନଙ୍କର ତନ୍ମୟତାର ସୀମା ରହୁନଥିଲା । ବେଳେ ବେଳେ ଭଗବାନ୍ ସେମାନଙ୍କୁ ସାଙ୍ଗରେ ଧରି ଦୂରରେ ଥିବା ବଣକୁ, ପର୍ବତ ଶିଖରକୁ, ନଦୀ କୂଳକୁ ନେଇଯାଉଥିଲେ, ଆଉ ସେହି ସେହି ସ୍ଥାନରେ ବିହାର କରୁଥିଲେ । ଏଣେ କେତେ ଦିନ ହେବ ଏହି କୃଷ୍ଣପ୍ରିୟାମାନଙ୍କୁ ଏକ ପ୍ରକାର ବ୍ୟାଧି ଗ୍ରାସ କରିଥିବା ଭଳି ଜଣାପଡୁଥିଲା । ସେହି ବ୍ୟାଧି ଏପରି ଅସାଧ ଥିଲା ଯେ ତାହାର ନା କୌଣସି ଚିକିତ୍ସା ଥିଲା ନା ଔଷଧି । ଶୁଖିଲାଟାରେ ବସି ବସି ସେମାନେ ଏଣ୍ଟୁତେଣ୍ଟୁ ବକର ବକର ହେଉଥାନ୍ତି । ସେମାନଙ୍କୁ ଲାଗୁଥାଏ, ସତେ ଯେପରି ଶ୍ୟାମସୁନ୍ଦର ସେମାନଙ୍କୁ ଛାଡ଼ି ଚାଲିଯିବାକୁ ବସିଛନ୍ତି । ଯଦିଓ ସେମାନେ ଶ୍ୟାମସୁନ୍ଦରଙ୍କର ଅଙ୍କରେ ହିଁ ଥାଆନ୍ତି, ତେବେ ଭ୍ରମ ତ ଭ୍ରମ ହିଁ ହୋଇଥାଏ ନା ! ସେମାନଙ୍କର ଭ୍ରମ ହେଉଥାଏ, ଆଉ ସେମାନେ କାହାକୁ ଲକ୍ଷ୍ୟକରି ଜଡ଼ ଉନ୍ମାଦ ଭଳି ପ୍ରଳାପ କରିବାରେ ଲାଗନ୍ତି । ସେମାନେ ଏପରି କଥାବାର୍ତ୍ତା ହୁଅନ୍ତି ଯାହାର ନା ଆଦି ଥାଏ ନା ଅନ୍ତ । ହେ ମୁନିଗଣ ! ଆପଣମାନେ ଶୁଣିବାକୁ ଚାହିଁଲେ ସେହି ଅପୂର୍ବ ସୁନ୍ଦର ସୁନ୍ଦର କେତେକ କଥା କହିବି ।''

ତତ୍‌କ୍ଷଣାତ୍ ମହର୍ଷି ଶୌନକ କହିଲେ, ''ଅବଶ୍ୟ କୁହନ୍ତୁ ମହାଭାଗ ! ପ୍ରେମର ପନ୍ଥ ତ ଅପୂର୍ବ । ବର୍ତ୍ତମାନର ସବୁକଥା ଅପୂର୍ବ ଲାଗୁଛି । ପ୍ରେମ ଶବ୍ଦର ଅର୍ଥ ତ ସହଜେ ବୁଝି ହୁଏନାହିଁ, ଏହା ବୁଦ୍ଧି ସାହାଯ୍ୟରେ ବୁଝି ହୁଏ ନାହିଁ, ଏହାକୁ ବୁଝିବା ପାଇଁ ହୃଦୟ ଆବଶ୍ୟକ ହୋଇଥାଏ । ହୃଦୟ ବି ଏପରି ହୋଇଥିବ, ଯାହା ପ୍ରେମରେ ପାକଳ ହୋଇଥିବ, ଅନୁରାଗରେ ରଙ୍ଗୀନ

ହୋଇଥିବ, ରତିରେ ଆର୍ଦ୍ର ହୋଇଥିବ, ଶ୍ରଦ୍ଧାରେ ସ୍ନିଗ୍ଧ ହୋଇଥିବ, ଭକ୍ତିରେ ଭାବିତ ହୋଇଥିବ, ପ୍ରୀତିରେ ଓତପ୍ରୋତ ହୋଇଥିବ, ଆଉ ଅତି ସ୍ନେହ ବିଜଡ଼ିତ ହୋଇଥିବ । ହେ ମହର୍ଷି ସୂତ ! ଆମର ହୃଦୟ ତ ଏପରି ହୋଇନାହିଁ । ମହାଭାଗ ! ଆମେମାନେ ବଡ଼ ହତଭାଗା । କଠୋର ତପ କରି କରି ଆମର ହୃଦୟ ଅତି କଠୋର ହୋଇଯାଇଛି । କୃଷ୍ଣପ୍ରିୟାମାନଙ୍କର ପ୍ରେମ-ପ୍ରଳାପ ଶୁଣିବା ପାଇଁ ଆମେ ଅଧିକାରୀ ତ ହୋଇନାହୁଁ, ତେବେ ଆମେ ଆପଣଙ୍କୁ ଏଇଥିପାଇଁ ପ୍ରାର୍ଥନା କରୁଛୁ ଯେ ଆପଣଙ୍କ ଠାରୁ ଏହା ଶୁଣିବା ଦ୍ୱାରା କିଛି ମାତ୍ରାରେ ହୁଏତ ଆମର ହୃଦୟ ତରଳି ଯିବ, ଏହାର କଠିନତା କିଛି ଅଂଶରେ ଦୂର ହେବ । ଏଣୁ, ଏହି ପ୍ରସଙ୍ଗକୁ ଆପଣ ନିଶ୍ଚୟ ଶୁଣାନ୍ତୁ ।''

ମହର୍ଷି ସୂତ କହିଲେ, ''ମହର୍ଷିସେ ! ଆପଣ ଆପଣଙ୍କ କଥା କ'ଣ କହୁଛନ୍ତି, ଏହି କଥା ବର୍ଣ୍ଣନା କରିବାକୁ ମୋ' ଠାରେ ବି ସାମର୍ଥ୍ୟ ନାହିଁ । ଆପଣ ତ ହେଉଛନ୍ତି ଅନୁରାଗର ମୂର୍ତ୍ତି । ଆପଣଙ୍କର ସାନିଧ ଲାଭ କରି ମୁଁ କହିପାରିବା ହୁଏତ ସମ୍ଭବ ହୋଇପାରେ । ହଉ ! ଏହି **'ମହିଷୀ ଗୀତ'**ର କେତେପଦ ଶୁଣନ୍ତୁ ।

କୃଷ୍ଣ-ପତ୍ନୀମାନଙ୍କ ହୃଦୟ ଭଗବାନଙ୍କର ଭାବୀ ବିୟୋଗ ଜନିତ ଚିନ୍ତାରେ ଉଦ୍‌ବେଳିତ ହୋଇଯାଉଥିଲା । ଶ୍ୟାମସୁନ୍ଦର ସେମାନଙ୍କୁ ସତେ ଯେପରି ଛାଡ଼ି ଚାଲିଯାଇଛନ୍ତି- ଏପରି ସେମାନେ ଅନୁଭବ କରିବାରେ ଲାଗିଲେ । ଶ୍ୟାମଙ୍କ ବିନା ଏହି ସଂସାର ସେମାନଙ୍କୁ ଖାଲି ଖାଲି ଲାଗୁଥାଏ । ସେମାନଙ୍କୁ ଜଣାଯାଉଥାଏ, ଶ୍ୟାମଙ୍କ ବିହୁନେ ସତେ ଯେପରି ସଂସାର କାନ୍ଦୁଛି । ଏବେ ସେମାନେ ଯାହାକୁ ଦେଖୁଛନ୍ତି ତାକୁ ଶ୍ୟାମଙ୍କ ବିୟୋଗ ବାର୍ତ୍ତା ପଚାରୁଛନ୍ତି । ରାତିରେ ସେମାନେ ଦେଖିଲେ କୁରୀର ପକ୍ଷୀ ଅତି କରୁଣ ସ୍ୱରରେ ବିଳାପ କରି କରି ଯାଉଛି । ତାକୁ ଲକ୍ଷ୍ୟ କରି ଜଣେ ମହିଷୀ ଗାଇବାରେ ଲାଗିଲେ-

**-୧-**

ହେ କୁରରୀ ତୁ ରାତିଟାରେ ବିଳାପ କାହିଁକି କରୁଛୁ ?

କୁରରୀ ତୁ ଆମ୍ଭ ବାଣୀ ଶୁଣ । କିମ୍ପା ଉନିଦ୍ର ତୋ ନୟନ ॥
ଏ ରାତ୍ରକାଳେ ସର୍ବଜନ । ନିଦ୍ରାମୋହିତେ ଅଚେତନ ॥
ଆମ୍ଭ ଜୀବନ ଗୋପୀନାଥ । ଦେଖ ନିଶ୍ଚିତେ ନିଦ୍ରାଗତ ॥
ତାର ନିବିଡ଼ ଆଲିଙ୍ଗନ । ତେଣେ ଯନ୍ତ୍ରିତ ଆମ୍ଭ ମନ ॥
ଲୋଚନେ ନିଦ୍ରା ନ ମାଡ଼ଇ । ତୁ ଯେ ଆମ୍ଭର ପ୍ରାୟ ହୋଇ ॥
ଦେଖୁଛୁ କଟାକ୍ଷ ନୟନ । ତେଣୁଁ ଚଞ୍ଚଳ ତୋର ମନ ॥☆

☆ ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ ୯୬ ଅଧ୍ୟାୟ

ଏହି ସମୟରେ ସେମାନେ ଚକ୍ରବାକୀକୁ ଦେଖିବାକୁ ପାଇଲେ । ଚକ୍ରବାକୀ ରାତିରେ ଚକ୍ରବାକ ସହିତ ରହିପାରେ ନାହିଁ । ସେ ଅଭିଶାପ ପାଇଛି । ସୂର୍ଯ୍ୟ ଅସ୍ତ ହୋଇଯିବା କ୍ଷଣି ଚକ୍ରବାକ ଚକ୍ରବାକୀ ପୃଥକ ପୃଥକ ହୋଇଯାଆନ୍ତି । ପତି ଗୋଟିଏ କୂଳରେ ରହେ ଓ ପତ୍ନୀ ଆର ପାରିକୁ ଚାଲିଯାଏ । ସୂର୍ଯ୍ୟୋଦୟ ହୋଇଯିବା କ୍ଷଣି ପତି-ପତ୍ନୀ ପୁଣି ମିଳିତ ହୋଇଯାଆନ୍ତି । ରାତିରେ ପତି ବିୟୋଗପୀଡ଼ିତା ଚକ୍ରବାକୀ ନୀରବରେ ବସି ଅଶ୍ରୁ ଗଡ଼ାଉଥାଏ । ତାକୁ ଲକ୍ଷ୍ୟକରି ଜଣେ ମହିଷୀ ଗାଇବାରେ ଲାଗିଲେ-

**-୨-**

ହେ ଚକ୍ରବାକି !
ଏ ରାତ୍ରକାଳେ ସ୍ୱାମୀ ସଙ୍ଗ । ନ ଲଭି ଦୁଃଖିତ ତୋ ଅଙ୍ଗ ॥
ଅତି କାରୁଣ୍ୟେ କିମ୍ବା କାହ୍ନୁ । ଦେଖ ଆମ୍ଭର ପ୍ରାଣ ବନ୍ଧୁ ॥
ନିଦ୍ରିତେ ନ ପାଇଲୁ ସଙ୍ଗ । ଯେମନ୍ତେ ତୋର ସଙ୍ଗଭଙ୍ଗ ॥
କିମ୍ବାଇ ଆମ୍ଭ ମୁଖ ଚାହିଁ । କି ଅବା ତେଣେ ତୋଷ ହେଉ ॥
ଆମ୍ଭେ ଯେ ଗୋବିନ୍ଦର ଦାସୀ । ତୋ ପାଦପଦ୍ମର ତୁଳସୀ ॥
କବରୀ ଭାର ସଜ କରି । କଣ୍ଠେ ଜୀବନ ଅଛୁ ଧରି ॥
ସେମାନ ଇଚ୍ଛା କରୁ ଯେବେ । ଦେବୁ ଯେ ତୋତେ ପ୍ରିୟ ଭାବେ ॥
କବରୀ ଭାର ସଜ କର । ସେବ ତୋହର ନିଜ ବର ॥☆

ଏହାପରେ ସେମାନେ ହର-ହର ଶବ୍ଦ କରୁଥିବା ଅପାର ସମୁଦ୍ରକୁ ସମ୍ମୁଖରେ ଦେଖିଲେ । ସମୁଦ୍ରତ ନୀରବଚ୍ଛିନ୍ନ ଶବ୍ଦ କରିବାରେ ଲାଗିଥାଏ । ଦିନ ରାତି, କେତେବେଳେ ବି ବିଶ୍ରାମ ନିଏ ନାହିଁ । ଜଣେ ମହିଷୀ ତାକୁ ଲକ୍ଷ୍ୟ କରି ଗାଇଲେ-

**- ୩ -**

ହେ ସାଗର ! କିମ୍ବା ଗରଜୁ ନିଶି ବାସର !
ହେ ନଦୀ କାନ୍ତ ହେ ସମୁଦ୍ର । ତୁ କିମ୍ବା ଏ ରାତ୍ରେ ଉନ୍ନିଦ୍ର ॥
ନିଦ୍ରା ନ ଯାଇ ନାଦ କରୁ । ତୁ କୃଷ୍ଣକଥା କି ସ୍ମରୁ ॥
ତାର ନୟନ ବାଣେ ଛନ୍ନ । ଯେମନ୍ତ ଆମ୍ଭର ଜୀବନ ॥
ସେ ଦୋଷ ତୋତେ କି ବାଧିଲା । ନିଶ୍ଚେ ଜାଣିଲୁ କୃଷ୍ଣଲୀଳା ॥ ☆

ଏଥର ସମସ୍ତଙ୍କର କୃଷ୍ଣପକ୍ଷର ମଳିନ ଚନ୍ଦ୍ରଙ୍କ ଉପରେ ପଡ଼ିଲା । କୃଷ୍ଣ ପକ୍ଷର ଜହ୍ନ ପ୍ରତିଦିନ କ୍ଷୀଣ କ୍ଷୀଣ ହେଉଥିବାରୁ ମଳିନ ଦେଖାଯାଉ ଥାଏ । ମହିଷୀଗଣ ଯେତେବେଳେ କୃଷ୍ଣପକ୍ଷର ଚନ୍ଦ୍ରକୁ ମଳିନ ହୋଇଯାଉଥିବା ଦେଖିଲେ, ସେମାନେ ଭାବିଲେ କୃଷ୍ଣଙ୍କର ପକ୍ଷ ଦେଉଥିବାରୁ ଆମେମାନେ ମଳିନ କାହିଁକି ଦେଖାନଯିବା । କୃଷ୍ଣଙ୍କ ପକ୍ଷ ହିଁ ମଣିଷଙ୍କ ପାଇଁ

---

☆ ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ ୯୬ ଅଧ୍ୟାୟ

ଖରାପ । ଏହି ଭାବକୁ ପ୍ରକାଶ କରିବାକୁ ଯାଇ ଜଣେ ମହିଷୀ କୃଷ୍ଣପକ୍ଷର ଚନ୍ଦ୍ରଙ୍କୁ ଲକ୍ଷ୍ୟକରି ଗାଇଲେ ।

-୪-

ପୁଣି ସେ ଚନ୍ଦ୍ରକୁ ଅନାଇଁ । ବୋଲନ୍ତି ପ୍ରିୟଭାବ ବହି ॥
କୁମୁଦବନ୍ଧୁ ତୁ ବୋଲାଉ । ମୃଗଲାଞ୍ଛନ ହୃଦେ ବହୁ ॥
ପୂର୍ବେ ଅର୍ଜ୍ଜିଲା କର୍ମ ଭୋଗ । ଏଣୁ ତୋ ଦେହେ କ୍ଷୟ ରୋଗ ॥
ନିଜ କର୍ମେ କ୍ଷୀଣ ହେଉ । ତୁ କିମ୍ବା ରାତ୍ରେ ଉଦେ ନୋହୁ ॥
ଆମ୍ଭେ ଯେ କୃଷ୍ଣର ତରୁଣୀ । ତାର ମୋହନ କଥା ଶୁଣି ॥
ଆତ୍ମା ନ ସୁମରି ଯେମନ୍ତେ । ତେମନ୍ତେ ଦେଖଇ ଯେ ତୋତେ ॥
ତୋର ଗୋବିନ୍ଦ ଭାବ ମନ । ତେଣୁ କି ହୋଇଲୁ ମଉନ ॥ ☆

ଏହାପରେ କୃଷ୍ଣ-ପତ୍ନୀମାନଙ୍କ ଦୃଷ୍ଟି ସୁନ୍ଦର ସୁଖଦ ମଳୟାନିଳ ଉପରେ ପଡ଼ିଲା । ମଳୟାନିଳ ବହୁଥିଲା, ଯାହା ସକଳ ପ୍ରାଣୀଙ୍କ ମଧ୍ୟରେ କାମୋଦ୍ଦୀପନା ପ୍ରବାହ କରାଉଥିଲା । ସେହି ମଳୟ ମାରୁତକୁ ଲକ୍ଷ୍ୟ କରି ଜଣେ ମହିଷୀ ଗାଇ ଉଠିଲେ -

- ୫ -

ମଳୟାନିଳ ଦେଖି ଭ୍ରମେ । ବିଶ୍ୱାସେ ବୋଲନ୍ତି ପବନେ ॥
ଶୁଣି ତୁ କୃଷ୍ଣ ବାକ୍ୟବନ୍ଧ । ଭୁବନେ ବହୁ ମନ୍ଦ ମନ୍ଦ ॥
କୃଷ୍ଣଲୀଳାରେ କରୁ ଆଶା । ଯେ ଭାବେ ଆମ୍ଭର ଭରସା ॥ ☆

କୃଷ୍ଣ ଭାବରେ ଭାବିତ ସେହି ଭାମିନୀଗଣ ନୀରବଛିନ୍ନ ଭାବରେ ଆକାଶକୁ ଚାହିଁ ରହିଥିଲେ । ଏପରି ସମୟରେ ମେଘ ଘୋଟି ଯାଇଥିବା ଦେଖିବାକୁ ପାଇଲେ ଓ ଧୀରେ ଧୀରେ ବର୍ଷା ବି ଆରମ୍ଭ ହୋଇଗଲା । ଏହାକୁ ଲକ୍ଷକରି ଜଣେ ମହିଷୀ ଗାନ କଲେ -

- ୬ -

ଆମ୍ଭକୁ ଚାହିଁ ମେଘମାଳା । ଛଳେ କହନ୍ତି କୃଷ୍ଣଲୀଳା ॥
ବୋଲନ୍ତି ମେଘକୁ ଅନାଇଁ । କୃଷ୍ଣର ମିତ୍ର ଅଟୁ ତୁହି ॥
ନିଶ୍ଚେ ତୁ କରୁ କୃଷ୍ଣେ ଧ୍ୟାନ । ଯା ହୃଦେ ଶ୍ରୀବତ୍ସର ଚିହ୍ନ ॥
ଆମ୍ଭର ପ୍ରାୟ ପ୍ରେମବନ୍ଧେ । ଚିନ୍ତା ତୁ କରୁ କୃଷ୍ଣପାଦେ ॥
ହୃଦେ ନିବିଡ଼ ପ୍ରେମଭରେ । ଆମ୍ଭେ ଯେମନ୍ତ ଚକ୍ଷୁଦ୍ୱାରେ ॥
ନିତ୍ୟେ ଲୋତକ ଲୁଚେ ସିଞ୍ଚୁ । ତୋତେ ତେମନ୍ତେ ପ୍ରାୟ ପାଞ୍ଚୁ ॥

☆ ଭାଗବତ: ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ, ୯୬ ଅଧ୍ୟାୟ ॥

| | | | |
|---|---|---|---|
| ତୋ ହୃଦେ କୃଷ୍ଣପ୍ରେମ ଭରା | । | ତେଣୁ ତୁ ସିଞ୍ଚୁ ଜଳଧାରା | ॥ |
| ସୁମରି ପୁଣପୁଣ ସୁଖ | । | ତାଙ୍କ ପ୍ରସଙ୍ଗ ମହାଦୁଃଖ | ॥ ☆ |

ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଭାବୀ ବିରହ ଦୁଃଖ ଏପରି ଭାବନା କରୁ କରୁ ସକାଳ ହୋଇ ଆସିଲା । ଅରୁଣୋଦୟ ସମୟରେ ଆମ୍ର ବକୁଳରେ ବସି କୋକିଳ ତାର କମନୀୟ କଣ୍ଠରେ କୁହୁ-କୁହୁ ଗାନ କରିବାରେ ଲାଗିଲା । ତାର ସୁମଧୁର ବାଣୀ ଶୁଣି ସେମାନଙ୍କର ଭ୍ରମ ହୋଇଗଲା ଯେ ଶ୍ରୀକୃଷ୍ଣ ହିଁ ଆମକୁ 'କେଉଁଠି ଅଛ' 'କେଉଁଠି ଅଛ' ବୋଲି ଡାକ ପକାଉଛନ୍ତି । ତେଣୁ ସେମାନେ ଚମକି ପଡ଼ିଲେ । କୃଷ୍ଣପ୍ରିୟାଙ୍କ ମଧ୍ୟରୁ ଜଣେ କୋକିଳକୁ ଦେଖିନେଲେ । ସେ ତାକୁ ଲକ୍ଷ୍ୟ କରି କହିଲେ -

- ୭ -

| | | | |
|---|---|---|---|
| କୋକିଳନାଦ କର୍ଣ୍ଣେ ଶୁଣି | । | ବୋଲନ୍ତି କୃଷ୍ଣର ତରୁଣୀ | ॥ |
| ଶୁଣ କୋକିଳ ଆମ୍ଭ ବାଣୀ | । | ଆମ୍ଭେ ତୋହର ଭାବଜାଣି | ॥ |
| ତେଣୁ ତୁ ଦୁଃଖୀ ଆମ୍ଭ ଦୁଃଖେ | । | କୋମଳବାଣୀ କହୁ ମୁଖେ | ॥ |
| କିସ କରିବୁ କହ ତୋର | । | ତୁ ଆମ୍ଭ ଜୀବନ ସୋଦର | ॥ ☆ |

କ୍ରମେ ଆକାଶ ଆଲୋକିତ ହୋଇଆସିଲା । ଦୂରରେ ରୈବତ ପର୍ବତ ଦେଖାଗଲା । ପର୍ବତ ଶାନ୍ତ ଭାବରେ ଅଚଳ ରହିଥିଲା । ନିଶ୍ଚଳ ଭାବରେ ପାହାଡ଼କୁ ଦେଖି ସେମାନଙ୍କ ଭିତରୁ ଜଣେ ମହିଷୀ ତାକୁ ଲକ୍ଷ୍ୟକରି ଗାଇବାରେ ଲାଗିଲେ -

- ୮ -

| | | | |
|---|---|---|---|
| ପର୍ବତ ଶୃଙ୍ଗ ଚାହିଁ ପୁଣି | । | ବୋଲନ୍ତି କୃଷ୍ଣର ତରୁଣୀ | ॥ |
| ତୁ ମହିଧର ବଡ଼ ଧନ୍ୟ | । | ନ ଚଳୁ ନ ବୋଲୁ ବଚନ | ॥ |
| ଉଦାର ବୁଦ୍ଧି ତୋର ଜାଣି | । | ଗୁପତେ ଚିନ୍ତୁ ଚକ୍ରପାଣି | ॥ |
| ଆମ୍ଭେ ଗୋବିନ୍ଦପାଦ ଯେହ୍ନେ | । | କୁଚେ ଲଗାଉ ସାବଧାନେ | ॥ |
| ତୁହି ତେମନ୍ତ କରୁ ଆଶ | । | ତେଣୁ ତୁ ଆମ୍ଭର ବିଶ୍ୱାସ | ॥ ☆ |

ସେହି ପର୍ବତରୁ ବହି ଆସୁଥିବା ଏକ ଅଙ୍କାବଙ୍କା ଶୁଷ୍କ କ୍ଷୁଦ୍ର ନଦୀକୁ ଦେଖି ଜଣେ ମହିଷୀ କହୁଥିଲେ-

- ୯ -

| | | | |
|---|---|---|---|
| ପ୍ରିୟ ବିଯୋଗେ ସଖି ତୋର | । | ଶୁଖିଲା ବେନି ତଟୁଁ ନୀର | ॥ |
| କମଳ ଉପହାର କରୁ | । | ସ୍ୱାମୀର ସଙ୍ଗ ତୁ ସୁମରୁ | ॥ |

☆ ଭାଗବତ: ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ, ୯୬ ଅଧ୍ୟାୟ ॥

ଦେଖ ଆମ୍ଭର ମନ ଛନ୍ନ । ନ ଦେଖି କୃଷ୍ଣର ବଦନ ॥
ଦୁଃଖ ହୃଦୟେ ଦିନ ବଞ୍ଚୁ । ଆମ୍ଭର ପ୍ରାୟ ତୋତେ ପାଞ୍ଚୁ ॥ ☆

ଏହିପରି ଗାନ କରୁଥିବା ସମୟରେ ସମୁଦ୍ରକୂଳ ଆଡୁ ଧୀର ମନ୍ଥର ଗତିରେ ଗୋଟିଏ ହଂସ ଉଡ଼ିଆସୁଥିବା ଦେଖାଗଲା । ହଂସକୁ ସମସ୍ତେ ଶ୍ୟାମଙ୍କର ଦୂତବୋଲି ମନେକଲେ । ସମସ୍ତେ ଅନୁଭବ କରିବାରେ ଲାଗିଲେ ଯେ - ସମ୍ଭବତଃ ଶ୍ୟାମ ଆମ ପାଖକୁ କିଛି ସୁଖଦ ସମ୍ବାଦ ପଠାଇଥିବେ ! ଏଣୁ ତାକୁ ସମ୍ବୋଧିତ କରି ଜଣେ ମହିଷୀ ଗାଇ'ଉଠିଲେ -

-୧୦-

ଭଲେ ଅଇଲୁ ହଂସ ପଥେ । ଆମ୍ଭର ପ୍ରିୟ ଘେନି ଚିତ୍ତେ ॥
ଆସ ତୁ କ୍ଷୀର କର ପାନ । ଆମ୍ଭ ସମୀପେ ତୋ ଆସନ ॥
ବସି ତୁ କହ କୃଷ୍ଣ କଥା । ତୋ ତହିଁ ବିଶ୍ୱାସ ବ୍ୟବସ୍ଥା ॥
ଜାଣିଲୁ ଦୂତ ବୋଲି ତୋତେ । ଶ୍ରମ ପାଇଲୁ ଆସି ପଥେ ॥
ଭଲେ କି ଛନ୍ତି ଦାମୋଦର । କହ ତୁ କପଟ ନ କର ॥
କପଟ ହୃଦୟ ତାହାର । ଚଞ୍ଚଳ ସୁହୃଦ ବେଭାର ॥
ଆମ୍ଭର ଭାବ କି ସୁମରେ । ଏ ମାୟା ସଂସାର ସାଗରେ ॥
କିବା କରିବୁ ଯିବୁ କାହିଁ । ତୋ ତହୁଁ ଆନଗତି ନାହିଁ ॥
ଅମୃତ ବଚନ ତାହାର । ଶୁଣି ଶ୍ରବଣ ସୁଖକର ॥
ସକାମ କରେ ଆମ୍ଭ ମନ । ତା ଭାବ ଛାଡ଼ିବୁ କେସନ ॥ ☆

ମହର୍ଷି ସୂତ କହୁଛନ୍ତି, ''ହେ ମୁନିଗଣ ! ଏହିପରି କୃଷ୍ଣ-ପ୍ରିୟାମାନେ ଅନେକ ପ୍ରକାର ଗୀତ ଗାନକରି, ଅନେକ ଭାବରେ ବିହ୍ୱଳିତା ହୋଇ ଭଗବାନଙ୍କର ଭାବୀ ବିରହର ଭାବ ବ୍ୟକ୍ତ କରିବାରେ ଲାଗିଲେ । ସେମାନେ ଅନବରତ ସେହି ଯୋଗେଶ୍ୱରଙ୍କର ବି ଈଶ୍ୱର, ସେହି ଅଖିଳାତ୍ମା ଅଚ୍ୟୁତଙ୍କଠାରେ ନିଜର ମନ ନିବେଶିତ କରି ରଖିଥିଲେ । ଅହର୍ନିଶି ତାଙ୍କୁହିଁ ଅନନ୍ୟ ପ୍ରେମଭାବରେ ଚିନ୍ତନ କରିବାରେ ଲାଗିଥିଲେ । ସେହି ଏକ ନିଷ୍ଠା ହେତୁ ଅନ୍ତ ସମୟରେ ସେମାନେ ପରମପଦର ଅଧିକାରୀ ହୋଇପାରିଥିଲେ ।

''ଦେଖନ୍ତୁତ ! ଭଗବାନଙ୍କର ବିଶ୍ୱବିମୋହକ ସୁଯଶ ଏପରି ଆକର୍ଷଣୀୟ ଯେ ଥରେ ମାତ୍ର ଶ୍ରଦ୍ଧାର ସହିତ ଯିଏ ଶୁଣିପକାଏ,ତା'ର ମନ ସହସା ତାଙ୍କ ଆଡ଼କୁ ଆକର୍ଷିତ ହୋଇଯାଏ । କାରଣ ଶ୍ରୀକୃଷ୍ଣଙ୍କର ଯେତେ ଚରିତ୍ର ଅଛି ସମସ୍ତ ହେଉଛି ପ୍ରେମମୟ ଓ ସରସ । ପୁରୁଷଙ୍କ ଅପେକ୍ଷା ସ୍ତ୍ରୀମାନଙ୍କର ହୃଦୟ ଅଧିକ ସରସ ହୋଇଥାଏ । ଏଣୁ ଶ୍ରୀକୃଷ୍ଣଙ୍କ ଲୀଳା ପ୍ରତି ସେମାନଙ୍କର ଅନୁରାଗ ସ୍ୱାଭାବିକ ଅଧିକ ହୋଇଥାଏ । ଭଗବାନଙ୍କର ଚରିତ୍ର ସ୍ତ୍ରୀମାନଙ୍କ

☆ ଭାଗବତ: ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ, ୯୬ ଅଧ୍ୟାୟ ॥

ଚିତ୍ତକୁ ବଳାତ୍କାରରେ ତାଙ୍କ ଆଡ଼କୁ ଶୀଘ୍ର ଆକୃଷ୍ଟ କରିନିଏ । ଶ୍ରବଣକାରୀର ଯେତେବେଳେ ଏପରି ଦଶା, ତେବେ ଯେଉଁମାନେ ଶ୍ୟାମସୁନ୍ଦରଙ୍କୁ ଦର୍ଶନ କରିଥିବେ; ଦିନେ ନୁହେଁ ଅନେକ ବର୍ଷ ଧରି ତାଙ୍କୁ ଦେଖିଥିବେ, କେବଳ ଦେଖି ନ ଥିବେ, ଶଯ୍ୟା, ଶୟନ, ଭୋଜନ, ଆଉ ଗମନ ସମୟରେ ଯେଉଁମାନେ ଅନବରତ ସାଙ୍ଗରେ ରହିଥିବେ, ପତି-ପ୍ରେମରେ ଚରଣବନ୍ଦନ, ସେବନ ତଥା ପଦପ୍ରକ୍ଷାଳନ ଆଦି କୃତ୍ୟ କରିଥିବେ, ସେପରି ବଡ଼ଭାଗ୍ୟବତୀଙ୍କ ବିଷୟ କିଛି କ'ଣ କେବେ କହି ହୁଏ ? ସେମାନଙ୍କୁ ଭଗବାନଙ୍କର ସମ୍ମିଳନରେ କେଡ଼େ ସୁଖ ହେଉଥିବ ଆଉ ବିୟୋଗରେ କେଡ଼େ ଦୁଃଖ ସତେ ହେଉ ନ ଥିବ ! ଏହା କ'ଣ ବାକ୍ୟରେ କହି ହୁଏ, ନା ଲେଖି ହୁଏ ! ଏହା ତ ଅନୁଭବର କଥା ।

''ହେ ମୁନିଗଣ ! ଭଗବାନ ଗୃହସ୍ଥାଶ୍ରମରେ ରହି ଏପରି ଲୀଳା କରିଥିଲେ । ଲୋକଙ୍କ ସମ୍ମୁଖରେ ଏକ ଆଦର୍ଶ ଉପସ୍ଥାପନ କରିଥିଲେ ଯେ, ତ୍ରିବର୍ଗ ପ୍ରାପ୍ତି ନିମନ୍ତେ ଗୃହସ୍ଥ ଧର୍ମ ହେଉଛି ପରମ ହିତକାରୀ । ଗୃହରେ ରହି ହିଁ ଧର୍ମ, ଅର୍ଥ ଆଉ କାମ ସଂପାଦନ ହୋଇ ପାରେ । ଭଗବାନଙ୍କର ଜଣେ ନୁହେଁ, ଦୁଇ ଜଣ ନୁହେଁ, ଦଶ କୋଡ଼ିଏ ବା ହଜାରେ ରାଣୀ ନ ଥିଲେ, ପୂରା ଷୋହଳ ସହସ୍ର ଏକ ଶତ ଆଠ ଜଣ ରାଣୀ, ପୁଣି ପ୍ରତ୍ୟେକ ରାଣୀ ଶ୍ୟାମସୁନ୍ଦରଙ୍କ ସହିତ ପରମ ସନ୍ତୁଷ୍ଟରେ ଥିଲେ । ତାଙ୍କୁ ଅତି ସ୍ନେହ କରୁଥିଲେ । ସେମାନଙ୍କ ସାଙ୍ଗରେ ରହି ଭଗବାନ୍ ଲୋକାଚାର ଲୀଳା କରିଥିଲେ । ସେମାନଙ୍କୁ ଏତେ ସୁଖ ଏପରି ପ୍ରଦାନ କଲେ ଯେ ସେମାନେ କ୍ଷଣକ ପାଇଁ ବି ଭଗବାନଙ୍କୁ ଭୁଲିପାରୁ ନ ଥିଲେ । ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଚରିତ୍ର ଯତ୍କିଞ୍ଚିତ୍ ମୁଁ ଆପଣଙ୍କୁ କହିଲି । ଏତିକି ହିଁ କହିବାକୁ ମୁଁ କ୍ଷମସମ୍ପନ୍ନ । ମୁଁ ଆପଣମାନଙ୍କ ଆଗରେ ଚନ୍ଦ୍ରବଂଶର ବର୍ଣ୍ଣନା କରୁଥିଲି । ସେମାନଙ୍କ ଭିତରେ ଯଯାତିଙ୍କର ଯଦୁ ଦ୍ରୁହ୍ୟୁ, ତୁର୍ବସୁ, ଅନୁ ଆଉ ପୁରୁ ଏହି ପାଞ୍ଚ ପୁତ୍ରଙ୍କ ବର୍ଣ୍ଣନା କରୁ କରୁ ଯଦୁବଂଶରେ ବସୁଦେବଙ୍କ ପର୍ଯ୍ୟନ୍ତ ଆସିଲି । ବସୁଦେବଙ୍କର ୧୩ ଜଣ ପତ୍ନୀଙ୍କ ବଂଶ ବର୍ଣ୍ଣନା ପରେ ଦେବକୀଙ୍କ ଗର୍ଭରେ ଯେଉଁଭଳି ଭଗବାନଙ୍କର ଅବତାର ହେଲା ତାହା କହିଛି । ଯଦି ଆପଣମାନେ ଇଚ୍ଛା କରନ୍ତି ତେବେ ଭଗବାନଙ୍କ ପରବର୍ତ୍ତୀ ବଂଶାବଳୀର ବୃତ୍ତାନ୍ତ କହିବି ।''

ମହର୍ଷି ଶୌନକ କହିଲେ, ''ହେ ମହର୍ଷି ସୂତ ! ବଂଶାବଳୀକୁ ଆମେ କଟୁ ଔଷଧ ଭଳି ଚୁପଚାପ ପିଇ ଦେଉଛୁ, କାରଣ ପରିଣାମ ତ ନିଶ୍ଚୟ ଶୁଭଙ୍କରୀ ହେବ । ଏହି ବଂଶଚରିତ୍ରରେ ନିଶ୍ଚୟ କେଉଁଠି କେଉଁଠି ଭଗବଦ୍ ଭକ୍ତି ବା ଭଗବାନଙ୍କର ଅବତାର ପ୍ରସଙ୍ଗ ଆସିବ । ଏବେ କିନ୍ତୁ ଆପଣ ଆମକୁ କେବଳ ଭଗବାନଙ୍କର କଥା ହିଁ ଶୁଣାନ୍ତୁ ।''

ମହର୍ଷି ସୂତ କହିଲେ, ''ତାହା ହେଲେ ହେ ମହର୍ଷି, ଠିକ୍ ଅଛି । ଯାଦବଙ୍କର ଯେପରି

ବିନାଶ ହୋଇଥିଲା, ତାହା ଶୁଣାଇବି । କଥାପ୍ରସଙ୍ଗରେ କ୍ରମିକତା ରକ୍ଷା କରିବାକୁ ଯାଇ ମୁଁ ପ୍ରଥମେ ଯଦୁବଂଶର କେତେକ କଥା ବର୍ଣ୍ଣନା କରିବି ।''

## ଛପ୍ପୟ

ଗାବେଂ ମହିଷୀ ଗୀତ କବହୁଁ ନହିଁ ଶ୍ୟାମ ଭୁଲାବେଂ।
ତିନିକେ ଭଗିନୀ ଇନ୍ଦ୍ର, ଶମ୍ଭୁ, ଅଜ ସକଲ ସରାବେଂ।।
ଜଗପତି କୁଁ ପତି ପାଇ ଭୟେ ତିନିକ ସୁତ ଦଶ-ଦଶ ।
ସବମେ ଶ୍ରୀ ପ୍ରଦ୍ୟୁମ୍ନ ଜ୍ୟେଷ୍ଠ ଜିନକୋ ବ୍ୟାପୋ ଯଶ ।।
ତିନିକେ ଶ୍ରୀଅନିରୁଦ୍ଧଜୀ, ଶୂରବୀର କର ସୁତ ଭୟୋ ।
ବଜ୍ର ଭୟେ ତିନିକେ ତନୟ, ଯଦୁକୁଳ କ୍ଷୟ ତେଂ ବଚି ଚାୟେ ।।



# ଶ୍ରୀକୃଷ୍ଣ ଚରିତର ଉପସଂହାର

ଜୟତି ଜନନିବାସୋ ଦେବକୀଜନ୍ମବାଦୋ
ଯଦୁବରପର୍ଷଦ୍‌ସ୍ୱୈର୍ଦୋର୍ଭିରସ୍ୟନ୍ନଧର୍ମମ୍ ।
ସ୍ଥିରଚର ବୃଜିନଘ୍ନଃ ସୁସ୍ମିତଶ୍ରୀମୁଖେନ
ବ୍ରଜପୁରବନିତାନାଂ ବର୍ଧୟନ୍ କାମଦେବମ୍ ।।
(ଶ୍ରୀ ଭା: ୧୦ମ ସ୍କନ୍ଧ ୬୦ ଅ.୪୮ ଶ୍ଳୋକ)

**ଛପ୍‌ପୟ**

*ବଜ୍ର-ତନୟ ପ୍ରତିବାହୁ, ସୁବାହୁ ସୁତ ହୁ ତିନିକେ ।*
*ଶାନ୍ତସେନ ତିନି ପୁତ୍ର ଭୟେ ଶତସେନହୁ ଉନିକେ ।।*
*ଯାଦବ କୋଟି ଅସଂଖ୍ୟ ସବନିକୀ ସଂଖ୍ୟା ନାହୀଂ ।*
*ଯୋଂ ଯଦୁକୁଲ ପୁନି ବଢ଼୍ୟୋ ଛୀନ କଲିଯୁଗ କେ ମାହୀଂ ।।*
*ଜବ ସବ ସୁରଗନ, ଧେନ, ଦ୍ୱିଜ, ଅଧରମ ତେ ହୈକେ ଦୁଖିତ ।*
*ହରି ହିଗ ଜାମେଂ ଦୀନ ହ୍ୱୈ, ହୋହିଁ ଅବତରିତ ତବ ଅଜିତ ।।*

ଅନନ୍ତକୀର୍ତ୍ତୀ ଭଗବାନ୍‌ଙ୍କର ନାମ ଅନନ୍ତ, ଜନ୍ମ ଅନନ୍ତ, କର୍ମ ଅନନ୍ତ, ଚରିତ୍ର ଅନନ୍ତ, ପୁତ୍ର ଅନନ୍ତ - କେତେ କହିବା, ଅନନ୍ତଙ୍କର ସବୁ କଥା ଅନନ୍ତ । ପ୍ରକୃତି ନିମିତ୍ତ ଭୂତଗୁଡ଼ିକର ଅନ୍ତ ନାହିଁ । ସମୁଦ୍ରରେ କେତେ ଜଳକଣା ଅଛି, ପୃଥିବୀର ଧୂଳିରେ କେତେ ରଜକଣା ଅଛି, ତେଜରେ କେତେ କିରଣ ଅଛି, ଆକାଶରେ କେତେ ତାରାଗଣ ଅଛନ୍ତି- ଯେତେବେଳେ ଏ ସମସ୍ତର ଯଥାର୍ଥ ଗଣନା ହୋଇପାରେ ନାହିଁ; ସେତେବେଳେ ଅନାଦି ଅନନ୍ତ ଅଚ୍ୟୁତଙ୍କର କାର୍ଯ୍ୟର ଗଣନା କରିବା ଅସମ୍ଭବ କଥା । ସେହି ଭଗବାନ୍‌ଙ୍କ ବିଷୟରେ ଯେତେ କହିଲେ ବି ତାହା ଊଣା ହୋଇଥାଏ; ଆଉ ଯେତିକି କୁହାଯାଇ ପାରେ ତାହା ଯଥେଷ୍ଟ ହିଁ ହୋଇଥାଏ । ଆମେ ଜନ୍ମିତ ଓ ମରଣଶୀଳ ପ୍ରାଣୀଙ୍କ ଦୃଷ୍ଟିରେ ଯାହାର ଆରମ୍ଭ ହୋଇଥାଏ ତା'ର ଅନ୍ତ ନିଶ୍ଚିତ ହୋଇଥାଏ। ଭଗବାନ-ଚରିତ୍ର ଆରମ୍ଭ ହୋଇଛି, ଏହାର ଅନ୍ତ, ସମାପ୍ତି ବି କରିବାକୁ ପଡ଼ିବ ।

ମହର୍ଷି ସୂତ କହୁଛନ୍ତି, "ହେ ମୁନିଗଣ ! ଯଦୁବଂଶରେ ମହାରାଜ ଦେବମୀଢ଼ଙ୍କ ପୁତ୍ର ହେଲେ ଶୂର । ରାଜା ଶୂରଙ୍କର ମାରିଷା ନାମକ ପତ୍ନୀଙ୍କ ଠାରୁ ଦଶପୁତ୍ର ଉତ୍ପନ୍ନ ହେଲେ । ସେମାନଙ୍କ ଭିତରେ ବସୁଦେବ ଥିଲେ ଜ୍ୟେଷ୍ଠ ଓ ଶ୍ରେଷ୍ଠ । ଏହି ବସୁଦେବଙ୍କର ସାନରାଣୀ ଦେବକୀଙ୍କ ଗର୍ଭରେ ଭଗବାନ ବାସୁଦେବଙ୍କର ଅବତାର ହୋଇଥିଲା । ଭଗବାନ୍ ବାସୁଦେବଙ୍କର ଷୋହଳ ହଜାର ଏକଶହ ଆଠ ଜଣ ରାଣୀ ହେଲେ । ଏମାନେ ସମସ୍ତେ ଦଶ ଦଶ ପୁତ୍ର ଓ ଗୋଟିଏ ଲେଖାଏଁ କନ୍ୟା ଜନ୍ମ କଲେ । ଏମାନଙ୍କ ଭିତରେ ରୁକ୍ମଣୀ ଆଦି ଅଷ୍ଟ ପାଟମହିଷୀ ଥିଲେ । ଏମାନଙ୍କର ସନ୍ତତିଙ୍କ କଥା ମୁଁ ପୂର୍ବେ କହିଛି । ସମୁଦାୟ ଏକ ଲକ୍ଷ ଏକଷଠୀ ହଜାର ଅଶୀ ପୁତ୍ରଙ୍କ ମଧ୍ୟରୁ ଅଠରଜଣ ମହାରଥୀ ଥିଲେ । ଯଦୁକୁଳରେ ଏମାନଙ୍କର ଯଶ ଖୁବ୍ ଥିଲା । ଏମାନେ ଥିଲେ ମହାନ୍ ଶୂରବୀର, ଉଦାର ତଥା ପ୍ରସିଦ୍ଧ । ଏମାନଙ୍କର ନାମ ହେଉଛି - ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ଦୀପ୍ତିମାନ, ଭାନୁ, ଶାମ୍ବ, ମଧୁ, ବୃହଦ୍‌ଭାନୁ, ଚିତ୍ରଭାନୁ, ବୃକ, ଅରୁଣ, ପୁଷ୍କର, ଦେବବାହୁ, ଶ୍ରୁତଦେବ, ସୁନନ୍ଦନ, ଚିତ୍ରବାହୁ, ବିରୂପ, କବି ଆଉ ନ୍ୟଗ୍ରୋଧ । ଯଦିଓ ଏମାନେ ସମସ୍ତେ ମହାରଥୀ ଥିଲେ, ଏମାନଙ୍କ ଭିତରେ କିନ୍ତୁ ଶ୍ରେଷ୍ଠ ଥିଲେ ପ୍ରଦ୍ୟୁମ୍ନ । ପ୍ରଦ୍ୟୁମ୍ନ ଥିଲେ ଶ୍ରେଷ୍ଠ ବଳୀୟାର ଏବଂ ପ୍ରଭାବଶାଳୀ ।

ପ୍ରଦ୍ୟୁମ୍ନଙ୍କର ବିବାହ ତାଙ୍କର ମାତାଙ୍କ ଇଚ୍ଛାନୁସାରେ ମାମୁଁ ରୁକ୍ମୀଙ୍କ କନ୍ୟାଙ୍କ ସହିତ ହୋଇଥିଲା । ଏହାଙ୍କ ଗର୍ଭରୁ ଅନିରୁଦ୍ଧ ଜନ୍ମ ହୋଇଥିଲେ । ଅନିରୁଦ୍ଧଙ୍କ ପ୍ରସଙ୍ଗରେ କୁହାଯାଏ ଯେ ଯାଙ୍କ ଦେହରେ ଦଶ ସହସ୍ର ହାତୀର ବଳଥିଲା । ଇଏ ହେଉଛନ୍ତି ଭଗବାନଙ୍କର ପୌତ୍ର । ଇଏ ବି ରୁକ୍ମୀଙ୍କ ପୌତ୍ରୀଙ୍କୁ ବିବାହ କରିଥିଲେ । ଅନିରୁଦ୍ଧଙ୍କର ଦ୍ୱିତୀୟ ବିବାହ ବାଣାସୁରର କନ୍ୟା ଉଷାଙ୍କ ସହିତ ହୋଇଥିଲା । ଜ୍ୟୋଷ୍ଠାରାଣୀଙ୍କ ଗର୍ଭରେ ଅନିରୁଦ୍ଧଙ୍କ ପୁତ୍ର ବଜ୍ର ଜନ୍ମ ହୋଇଥିଲେ । ବିପ୍ରଶାପରେ ଯେତେବେଳେ ଯଦୁକୁଳର କ୍ଷୟ ହୋଇଗଲା, ସେତେବେଳେ ଯଦୁକୁଳର ବୀଜ ରୂପରେ କେବଳ ବଜ୍ର ହିଁ ଅବଶିଷ୍ଟ ରହିଯାଇଥିଲେ । ଭଗବାନଙ୍କ ସ୍ୱଧାମ ଗମନ ପରେ ଦ୍ୱାରାବତୀ ନଗରୀ ତ ସମୁଦ୍ରରେ ବୁଡ଼ିଗଲା, ଅର୍ଜୁନ ବଜ୍ରଙ୍କୁ ହସ୍ତିନାପୁରକୁ ନେଇ ଆସିଥିଲେ । ପରେ ବଜ୍ରଙ୍କୁ ବ୍ରଜମଣ୍ଡଳର ରାଜା କରିଦେଇଥିଲେ । ସେତେବେଳେ ବ୍ରଜ ମଣ୍ଡଳର ସମସ୍ତ ଚିହ୍ନବର୍ଣ୍ଣ ଲୋପ ପାଇଯାଇଥିଲା । ବଜ୍ର ରାଜା ହେବାପରେ ସେ ସମସ୍ତର ପୁନଃ ପ୍ରତିଷ୍ଠା କଲେ । ମନ୍ଦିର ଉଦ୍ଧାର କଲେ, କୁଣ୍ଡ ଖନନ କଲେ, ଜନପଦ ବସାଇଲେ, ଭଗବାନଙ୍କର ଲୀଳାସ୍ଥଳୀ ଗୁଡ଼ିକର ପୁନରୁସ୍ଥାପନ କଲେ । ଏହି ବଜ୍ରଙ୍କ ଦ୍ୱାରା ଯଦୁକୁଳର ବୃଦ୍ଧି ହେଲା ।

ମହାରାଜ ବଜ୍ରଙ୍କର ପୁଅଙ୍କ ନାମ ପ୍ରତିବାହୁ । ତାଙ୍କଠାରୁ ସୁବାହୁ, ସୁବାହୁଙ୍କଠାରୁ ଶାନ୍ତସେନ ଆଉ ଶାନ୍ତସେନଙ୍କ ଠାରୁ ଶତସେନ ନାମକ ପୁତ୍ର ହେଲେ । ଏହାଙ୍କ ପରେ ଯଦୁକୁଳରେ ସେପରି ପ୍ରସିଦ୍ଧ ରାଜା କେହି ହୋଇନାହାନ୍ତି । ଅନ୍ୟମାନେ ଅଳ୍ପବୀର୍ଯ୍ୟ ଓ କ୍ଷୀଣ ଆୟୁର ହୋଇଥିଲେ । ଶତସେନଙ୍କ ପର୍ଯ୍ୟନ୍ତ ଏହି କୁଳରେ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରଭାବରୁ କେହି ଦୀନ-ହୀନ ଭାଗ୍ୟହୀନ ହୋଇନଥିଲେ କି କାହାର ସନ୍ତାନ ଅଳ୍ପ ହୋଇନଥିଲେ । ପ୍ରତ୍ୟେକଙ୍କର ଅନେକ ପୁତ୍ର ହୋଇଥିଲେ । ଯଦୁକୁଳର ସମସ୍ତ ରାଜା ବ୍ରାହ୍ମଣ-ଭକ୍ତ ଓ ଶ୍ରଦ୍ଧାଳୁ ଥିଲେ ।

ମହର୍ଷି ଶୌନକ ପଚାରିଲେ, ‘‘ହେ ମହର୍ଷି ସୂତ ! ଯାଦବଙ୍କ ସଂଖ୍ୟା ସମୁଦାୟ କେତେ ଥିଲା ?’’

ମହର୍ଷି ସୂତ କହିଲେ, ‘‘ମହାରାଜ୍ ! ଯାଦବଙ୍କ ସଂଖ୍ୟା ଜାଣି କ'ଣ ପାଇବେ ? ଯାଦବ ଏତେ ସଂଖ୍ୟକ ଥିଲେ ଯେ ସେମାନଙ୍କ ସଂଖ୍ୟା ଦଶ ସହସ୍ର ବର୍ଷରେ ସୁଦ୍ଧା ବି କଳନା କରିହେବ ନାହିଁ । ସେମାନେ ବହୁତ ଥିଲେ, ଏତିକି କହିଲେ ଯଥେଷ୍ଟ ହେବ । ଯଦୁକୁଳରେ ପିଲାଙ୍କୁ ପଢ଼ାଇବା ପାଇଁ ହଜାର ହଜାର, ଲକ୍ଷ ଲକ୍ଷ ଶିକ୍ଷକ ନିଯୁକ୍ତ ହୋଇଥିଲେ । ଏପରି ସ୍ଥଳରେ ପୂରା ଯାଦବଙ୍କର ଏକମାତ୍ର ସମ୍ରାଟ ରୂପେ ଉଗ୍ରସେନ ରହି ସୁଧର୍ମା ସଭା ପରିଚାଳନା କରୁଥିଲେ ।’’

ମହର୍ଷି ଶୌନକ ପଚାରିଲେ, ‘‘ହେ ମହର୍ଷି ସୂତ ! ଏହି ଅସୁରମାନେ ଏତେ ବଳ ପରାକ୍ରମ ପାଇଲେ କେଉଁଠାରୁ ?’’

ମହର୍ଷି ସୂତ କହିଲେ, ‘‘ଆସିବ ଆଉ କେଉଁଠାରୁ ହେ ଭଗବନ୍ ! ସବୁ ତାଙ୍କ ଦ୍ୱାରା ପ୍ରଦତ୍ତ ବଳ । ଦେବାସୁର ସଂଗ୍ରାମରେ ଯେଉଁ ଦୈତ୍ୟମାନେ ମରିଥିଲେ, ଏମାନେ ସମସ୍ତେ ଦ୍ୱାପରର ଶେଷଭାଗରେ ମଣିଷ ରୂପେ ଉତ୍ପନ୍ନ ହୋଇଯାଇଥିଲେ । ଏମାନେ ସମସ୍ତେ ଜନ୍ମରୁ ଥିଲେ ଶୂରବୀର, ପରାକ୍ରମୀ ତଥା ଭଗବଦ୍‌ଦ୍ୱେଷୀ । ଏମାନେ ସମସ୍ତେ ଅହଙ୍କାରରେ ପ୍ରଜାଙ୍କୁ ପୀଡ଼ା ଦେଉଥିଲେ । ଏହି ଅସୁରମାନଙ୍କର ଅବସାନ କରିବାପାଇଁ ହିଁ ଭଗବାନ ଯଦୁବଂଶରେ ଅବତାର ଧାରଣ କଲେ । ସେତେବେଳେ ଯାଦବଙ୍କର ଏକଶହ ମୁଖ୍ୟ କୁଳ ଥିଲା ।ଏମାନଙ୍କ ମଧ୍ୟରେ ଶ୍ୟାମସୁନ୍ଦର ଶକ୍ତିଶାଳୀ, ସର୍ବଗୁଣସମ୍ପନ୍ନ ତଥା ସର୍ବମାନ୍ୟ ଥିଲେ । ଯେଉଁ ଯାଦବମାନେ ଭଗବାନଙ୍କର ଅନୁକୂଳ ଥିଲେ, ତାଙ୍କର ଇଚ୍ଛାନୁସାରେ ବ୍ୟବହାର କରୁଥିଲେ, ଚଳୁଥିଲେ, ସେମାନଙ୍କର ଆଶାତୀତ ବୃଦ୍ଧି ହେଲା । ପ୍ରାୟତଃ ସମସ୍ତ ଯାଦବ ଭଗବାନ୍

କୃଷ୍ଣଚନ୍ଦ୍ରଙ୍କଠାରେ ଏପରି ଦତ୍ତଚିତ୍ତ ରହିଥିଲେ ଯେ ସେମାନଙ୍କୁ ଅସନ, ବସନ, ଶୟନ, ଆସନ, ଭ୍ରମଣ, ସଂଳାପ, କ୍ରୀଡ଼ା ତଥା ସ୍ନାନାଦି କୃତ୍ୟର ବି ଧ୍ୟାନ ରହୁନଥିଲା ।

"ହେ ମୁନିଗଣ ! ଯଦୁକୁଳରେ ଅବତୀର୍ଣ୍ଣ ହୋଇ ଯାଦବେନ୍ଦ୍ର ନିଜର ଅପୂର୍ବ ସୁନ୍ଦର କଥାର ବିସ୍ତାର କଲେ । ସମସ୍ତଙ୍କୁ ପବିତ୍ର କରୁଥିବା ଗଙ୍ଗାଙ୍କଠାରୁ ବି ଅଧିକ ନିଜ କଥାର ମହତ୍ତ୍ୱ ବୃଦ୍ଧି କରିଦେଲେ । ଭଗବାନଙ୍କୁ ଯେଉଁମାନେ ଶତ୍ରୁଭାବରେ ଦର୍ଶନ କରୁଥିଲେ, ଅଥବା ମିତ୍ରଭାବରେ, ଯେଉଁମାନେ ତାଙ୍କର ପୂଜା କରୁଥିଲେ, ଅଥବା ଶତ୍ରୁ ବୋଲି ଭାବି ତାଙ୍କ ହାତରେ ମରିଥିଲେ, ଉଭୟଙ୍କର ଚିରକାଳ ପାଇଁ ସଂସାର ବନ୍ଧନ କଟିଯାଇଥିଲା । ଯାହାଙ୍କର ନାମ କୀର୍ତ୍ତନ ମାତ୍ରକେ, ଅଥବା ସେହି ସୁମଧୁର ମଙ୍ଗଳମୟ ନାମ ଶୁଣିବା ମାତ୍ରକେ ସମସ୍ତ ଅମଙ୍ଗଳର ନାଶ ହୋଇଯାଏ, ସେହି ସୁଦର୍ଶନ ଚକ୍ରଧାରୀ କାଳରୂପ କୃଷ୍ଣଙ୍କ ପାଇଁ ଭୂ-ଭାର କ୍ଷୀଣ କରିବା କି ବଡ଼ କଥା ! ଏହା ତ ଅତି ସାଧାରଣ କଥା । ଏପରି ଯାଦବେନ୍ଦ୍ରଙ୍କ ପାଦପଦ୍ମରେ ଆମେ ବାରମ୍ବାର ପ୍ରଣାମ କରି ତାଙ୍କର ଚାରୁ ଚରିତ୍ରକୁ ସମାପ୍ତ କରୁଛୁ ।"

ମହର୍ଷି ଶୌନକ ପଚାରିଲେ, "ହେ ମହର୍ଷି ସୂତ ! ଆପଣ ପୂର୍ବେ କହିଥିଲେ, ବଜ୍ର ବ୍ରାହ୍ମଣଙ୍କ ଅଭିଶାପରେ ଦଗ୍ଧ ନ ହୋଇ ରକ୍ଷା ପାଇଯାଇଥିଲା, ଅନ୍ୟ ସମସ୍ତ ଯାଦବଙ୍କର ଅନ୍ତ ହୋଇଯାଇଥିଲା, ତାହାହେଲେ ବ୍ରାହ୍ମଣ ଯାଦବଙ୍କୁ ଅଭିଶାପ କାହିଁକି ଦେଇଥିଲେ ? ଯଦୁକୁଳର କ୍ଷୟର କାରଣ କ'ଣ? କୃପାକରି ଏହି କଥା ବି ଆମକୁ କୁହନ୍ତୁ ।"

ମହର୍ଷି ସୂତ କହିଲେ, "ମହାରାଜ ! ଏତେ ସୁନ୍ଦର ସୁନ୍ଦର କଥା ମୁଁ ଆପଣମାନଙ୍କୁ କହିଲି, ଏବେ ମୋତେ ଯଦୁକୁଳର ବିନାଶର ଦୁଃଖଦାୟୀ କଥା ଶୁଣାଇବାକୁ ପଡ଼ିବ ! ମହାରାଜ ! ଏହି କଥାବାଚକଙ୍କ କାର୍ଯ୍ୟ ଅତି କଠୋର । କଥା କହିବା ପୂର୍ବରୁ ହୃଦୟକୁ ବଜ୍ର ଭଳି କଠିନ କରିବାକୁ ପଡ଼େ । ହଉ, ଠିକ୍ ଅଛି, ଏବେ ମୁଁ ଆପଣମାନଙ୍କୁ ସେହି କଥା କହୁଛି ଯେଉଁଥିରେ ଯାଦବଙ୍କୁ ବିପ୍ରଶାପ ପ୍ରସଙ୍ଗ ଅଛି । ଏହି ପ୍ରସଙ୍ଗରେ ମୁଁ କିଛି ଜ୍ଞାନଚର୍ଚ୍ଚା କରିବି । ଉଦ୍ଧବ ଆଉ ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଦିବ୍ୟଜ୍ଞାନମୟ ସମ୍ବାଦ ବି କହିବି । ଆପଣମାନେ ସମସ୍ତେ ଏହି ପରମ ପୁଣ୍ୟମୟ ଆଖ୍ୟାନକୁ ଶ୍ରଦ୍ଧାଭକ୍ତି ଆଉ ଅନୁରାଗର ସହିତ ଶ୍ରବଣ କରନ୍ତୁ । ଏହି ପ୍ରସଙ୍ଗ ଅତି ଗୂଢ଼ ।

## ଛପ୍ପୟ

ସବ ସାରନିକୋ ସାର ଶ୍ୟାମ ଗୁନ ସୁନେ ସୁନାବେ ।
ହ୍ୱୈକେଂ ତନ୍ମୟ ସତତ ନାମ ହରି ଚରିତନି ଗାବେଂ ॥
ସୁଖଦ ସରସ ଶୁଭ ଚରିତ ଜଗତ୍ ଦୁଖ ଦୂର ଭଗାବେଂ ।
ସୁନତ ସୁନତ ହରି କଥା କୃଷ୍ଣ ହିୟ ମାହିଁ ସମାବେଂ ॥
ପାବନ ପରମ ଚରିତ୍ର ଜେ, ନେମ ପ୍ରେମ ତେଂ ଗାୟଁଗେ ।
ତେ ପହୁଚହିଁ ପ୍ରଭୁ ପଦନି ମହଁ, ପୁଣ୍ୟ ପରମ୍ ପଦ ପାୟଁଗେ ॥



**(ଏହା ପରର ପ୍ରସଙ୍ଗ ପରବର୍ତ୍ତୀ ଖଣ୍ଡରେ ବର୍ଣ୍ଣିତ)**